ବେବି ହାଲ୍‌ଦାରଙ୍କ

# ଈଷତ୍ ରୂପାନ୍ତର



ଅନୁବାଦଃ

ଅଂଜଳି ଆଚାର୍ଯ୍ୟ
ପ୍ରୀତୀଶ ଆଚାର୍ଯ୍ୟ

# ଈଷତ୍ ରୂପାନ୍ତର

ମୂଳ ରଚନା :

ବେବି ହାଲ୍‌ଦାର

ରୂପାନ୍ତର :

ଅଂଜଳି ଆଚାର୍ଯ୍ୟ

ପ୍ରୀତୀଶ ଆଚାର୍ଯ୍ୟ



**ଈଷତ୍ ରୂପାନ୍ତର**
ମୂଳ ରଚନା: **ବେବି ହାଲ୍‌ଦାର**
ରୂପାନ୍ତର: **ଅଞ୍ଜଳି ଆଚାର୍ଯ୍ୟ,**
**ପ୍ରୀତୀଶ ଆଚାର୍ଯ୍ୟ**

ପ୍ରକାଶକ : ଆମ ଓଡ଼ିଶା
୪ ଆର୍ ୧/୨, ୟୁନିଟ୍-୩
ଭୁବନେଶ୍ୱର-୭୫୧୦୦୧

ମୁଦ୍ରଣ : ଶ୍ରୀରାମ ସ୍କ୍ରିନ୍ ପ୍ରିଣ୍ଟିଂ
ଭୁବନେଶ୍ୱର-୭୫୧୦୦୭

ପ୍ରଥମ ସଂସ୍କରଣ : ଜାନୁଆରି, ୨୦୧୪



ପ୍ରଚ୍ଛଦ : ମହେଶ୍ୱର ମହାରଣା

ମୂଲ୍ୟ : ଟ.୮୦/-

**Ishat Rupantara**
Original: Beby Haldar
Translator: Anjali Acharya,
Pritish Acharya

Publisher : Aama Odisha
4R 1/2, Unit-3,
Bhubaneswar-751001
e-mail : aamaodisha@gmail.com

Printed at : Sriram Screen Printing
Bhubaneswar-751007

1st edition : January, 2014



Cover : Maheswar Maharana

Price : Rs.80/-

ISBN: 978-81-89436-74-2

# ଅନୁବାଦକୀୟ

୨୦୦୨ରେ ବେବି ହାଲ୍‌ଦାର୍‌ଙ୍କ ପ୍ରଥମ ବଙ୍ଗଳା ଉପନ୍ୟାସ 'ଆଲୋ ଆନ୍ଧାରି' ପ୍ରଥମେ ହିନ୍ଦୀରେ ଅନୂଦିତ ହୋଇ ରୋଷନାଇ ପ୍ରକାଶନ, କାଞ୍ଚରାପଡ଼ା, କଲିକତାରୁ ପ୍ରକାଶ ପାଇଲା । ଅନୁବାଦକ ଥିଲେ ପ୍ରଫେସର ପ୍ରବୋଧ କୁମାର ଶ୍ରୀବାସ୍ତବ । ସାଗର ବିଶ୍ୱବିଦ୍ୟାଳୟ, ମଧ୍ୟପ୍ରଦେଶରୁ ନୃ-ତତ୍ତ୍ୱରେ ଦୀର୍ଘ ବର୍ଷର ଅଧ୍ୟାପନା ପରେ ଅବସରକାଳୀନ ଜୀବନ କଟାଇବାକୁ ସେ ଦିଲ୍ଲୀ ନିକଟସ୍ଥ ଗୁରଗାଓଁରେ ରହନ୍ତି । ସେଇଠି ସେ ଆବିଷ୍କାର କରିଥିଲେ ବେବି ହାଲ୍‌ଦାରଙ୍କୁ ଘରର ଚାକରାଣୀ (ବଙ୍ଗଳାରେ 'କାଯେର୍ ମେୟେ', ହିନ୍ଦୀରେ 'କାମବାଲୀ ଔରତ୍' ଓ ମରାଠୀରେ 'ବାଈ') ଭାବରେ । ସପ୍ତମ ଶ୍ରେଣୀରୁ ପାଠ ଛାଡ଼ି, ୧୨/୧୩ ବର୍ଷ ବୟସରେ ବାହା ହୋଇ, ୧୮ ବର୍ଷ ବେଳକୁ ତିନୋଟି ଛୁଆର ସେ ମାଆ; ସ୍ୱାମୀପରିତ୍ୟକ୍ତା । ପେଟ ପୋଷିବାପାଇଁ ପଶ୍ଚିମବଙ୍ଗର ଦୁର୍ଗାପୁରରୁ ଛୁଆଙ୍କୁ ନେଇ ଦିଲ୍ଲୀଯାଏ ଟ୍ରେନ୍‌ରେ ଚଢ଼ି ଚାଲିଆସିଛି । ପ୍ରଥମେ ଫରିଦାବାଦରେ କିଛିଦିନ ରହି ଗୁରଗାଓଁରେ ପ୍ରବୋଧ କୁମାରଙ୍କ ଘରେ କାମ କରୁଛି । ନୃ-ତତ୍ତ୍ୱବିଦ୍ ପ୍ରବୋଧ କୁମାର ଝିଅଟି ଭିତରେ ଜିଜ୍ଞାସା ଦେଖିପାରିଛନ୍ତି । ଯେଉଁ ତନ୍ମୟ ଭାବ ନେଇ ସେ ବୁଝିପାରୁନଥିବା ହିନ୍ଦୀ ଓ ଇଂରାଜୀରେ ଲିଖିତ ପୁସ୍ତକଗୁଡ଼ିକର ପୃଷ୍ଠା ଓଲଟାଏ, ବହିଗୁଡ଼ିକରୁ ଧୂଳି ଝାଡ଼ିବା ବେଳେ ଫଟୋଗୁଡ଼ିକୁ ଦେଖେ, ତହିଁରୁ ପ୍ରବୋଧ କୁମାରଙ୍କୁ ତା' ଭିତରେ ଭରି ରହିଥିବା ସୃଜନଶୀଳତାକୁ ଦେଖିବାର ଅବସର ମିଳିଛି । ତାଙ୍କରି ପ୍ରଚେଷ୍ଟାରେ ବେବି ନୂଆ କରି ବଙ୍ଗଳା ପଢ଼ିଛି; ଚର୍‌ଚର୍ କରି ହସ୍ତାକ୍ଷର ଲେଖିବା ଆରମ୍ଭ କରିଛି । ପ୍ରବୋଧ କୁମାର ହୋଇଛନ୍ତି ତା'ର 'ତାତୁସ୍' ଅର୍ଥାତ୍ 'ବାପା' । ପ୍ରବୋଧ କୁମାରଙ୍କ ପତ୍ନୀ ପୋଲାଣ୍ଡର ଝିଅ । ପୋଲିସ୍ ଭାଷାରେ ବାପାଙ୍କୁ କହନ୍ତି ତାତୁସ୍ (ତାତ୍‌ରୁ ଆନୀତ) । ପ୍ରବୋଧ କୁମାର କଲିକତାରେ ରହୁଥିବା ତାଙ୍କର ବନ୍ଧୁ ଅଶୋକ ସାକ୍‌ସେରିଆଙ୍କୁ ବେବିର ହାତଲେଖା ପଠାଇଛନ୍ତି । ଅଶୋକଜୀ ହିନ୍ଦୀଭାଷୀ, ମାତ୍ର କଲିକତାର ଅଧିବାସୀ ହେବା ପ୍ରକ୍ରିୟାରେ ବଙ୍ଗଳାରେ ବି ପୋଖତ । ବେବିର ଲେଖାକୁ ଦେଖି ନିଜର ମତ ଅଭିମତ ଦେଇଛନ୍ତି; ସଂଶୋଧନ କରିଛନ୍ତି । ବେବିର ସେ ହୋଇଛନ୍ତି 'ଜେଠୁ' ବା ବଡ଼ବାପା । ତିନୋଟି ଛୁଆର ମା', ଘରର ଚାକରାଣୀ ବେବି ହାଲ୍‌ଦାରକୁ ଉଭୟ 'ତାତୁସ୍' ଓ 'ଜେଠୁ' ମିଶି କୁନି ଝିଅ ପରି ପାଠ ପଢ଼ାଇଛନ୍ତି । ତା' ଭିତରର ସର୍ଜନକାରକୁ ଚିହ୍ନିବାର ଅବସର ଦେଇଛନ୍ତି । ଜନ୍ମ ନେଇଛି ଏକ ଲେଖିକାର ଆତ୍ମକାହାଣୀମୂଳକ ଉପନ୍ୟାସ 'ଆଲୋ-ଆନ୍ଧାରି' । ପୁସ୍ତକର ପ୍ରକାଶକ ହୋଇଛନ୍ତି ସଂଜୟ ଭାରତୀ । ପେସାଦାରି ପ୍ରକାଶନ ତାଙ୍କର ବୃତ୍ତି ନୁହେଁ । ହିନ୍ଦୀ ଓ ବଙ୍ଗଳା ସାହିତ୍ୟରେ ତାଙ୍କର ରୁଚି ଅଛି; ଚାକିରି କରନ୍ତି କାଞ୍ଚରାପଡ଼ା ରେଲ୍‌ୱେ ୱାର୍କସପ୍‌ରେ । ଚତୁର୍ଥ ଶ୍ରେଣୀ କର୍ମଚାରୀ । ସାଧାରଣ ଫିଟର ଚାକିରି । ଭଲ ବହି ପ୍ରକାଶିତ ହେଉ; କମ୍ ଦାମ୍‌ରେ ପାଠକ ହାତରେ ପହଞ୍ଚୁ- ଏଇଟା ତାଙ୍କ ପ୍ରକାଶନ ସଂସ୍ଥାର ଉଦ୍ଦେଶ୍ୟ । ନିଜ ପ୍ରୋଭିଡେଣ୍ଟ ଫଣ୍ଡରୁ

ଟଙ୍କା ଋଣ କରି ସେ ବହି ପ୍ରକାଶ କରନ୍ତି । କେବେ ଆର୍ଥିକ ଲାଭ କରିନଥିବା ଏହି ପ୍ରକାଶନ ସଂସ୍ଥାର ନାଁ 'ରୋଷନାଇ ପ୍ରକାଶନ' । ପେପରବେକ୍‌ରେ 'ଆଲୋ ଆନ୍ଧାରି' ୨୦୦୩ରେ ଯେତେବେଳେ ପ୍ରକାଶିତ ହୋଇଛି, ତା'ର ଦାମ୍ ରହିଛି ୩୫ ଟଙ୍କା । ସୁନ୍ଦର ପରିପାଟୀ, ଅଥଚ ଶସ୍ତା ଅନେକ । 'ତାତୁସ୍', 'ଜେଠୁ' ଓ 'ସଂଜୟ' ହୋଇଛନ୍ତି ବେବିର ଉଭୟ ଉପନ୍ୟାସର ଜଣେ ଜଣେ ପରିଚିତ ଚରିତ୍ର । ପୁଣି, ଅନ୍ୟ ଦୃଷ୍ଟିରୁ ଦେଖିଲେ ବେବି ହାଲ୍‌ଦାର୍ ନାମକ ଜଣେ ଚାକରାଣୀକୁ ସ୍ରଷ୍ଟା ଓ ଲେଖିକା ରୂପରେ ଆଜି ଯେଉଁ ପରିଚିତି ମିଳିଛି ତା' ପଛରେ ରହିଛି ସେମାନଙ୍କର ପ୍ରତ୍ୟକ୍ଷ ଭୂମିକା ।

ହିନ୍ଦୀରେ ଅନୂଦିତ ହେବା ପରେ 'ଆଲୋ ଆନ୍ଧାରି' ବହୁ ଲୋକଙ୍କର ନଜରକୁ ଆସିଛି । ଜଣେ ଚାକରାଣୀ ତା' ନିଜ ଭାଷାରେ ଆତ୍ମକାହାଣୀ ଲେଖିଛି । କୌଣସି ମଧ୍ୟବର୍ଗ ବା ଉଚ୍ଚ ମଧ୍ୟବର୍ଗର ଲେଖକ ଚାକରାଣୀର ବା ବୁଦ୍ଧିଜୀବୀର ଭାଷାରେ କହିଲେ 'ସବ୍‌ଅଲଟର୍ଣ୍ଣ'ର ମନକଥା କହିବାର ଜିମା ନେଇ ନାହାନ୍ତି । ପଢ଼ିଲା ବେଳେ ଲାଗୁଛି, ଜଣେ ପୋଖତ ଲେଖିକାର ଲେଖାରୁ ଏହା କୌଣସି ଗୁଣରେ କମ୍ ନୁହେଁ । ଅତି ସହଜ ଓ ସ୍ୱାଭାବିକ ଭାବରେ ତହିଁରେ ନାରୀର ସଂଘର୍ଷ, 'ତଳ' ବର୍ଗର କଷ୍ଟ, ସହରୀ ଜୀବନର ଏକାକୀପଣ ସବୁ କିଛି ଖୁନ୍ଦି ହୋଇ ରହିଛି । ତହିଁରେ ନା କେହି 'ହିରୋ', ନା କେହି 'ଭିଲିଆନ୍' । ଏଭଳିକି ନିଜ ପତି, ଯିଏ ତାକୁ ପରିତ୍ୟାଗ କରିଛି ଓ ଠେଲାଗାଡ଼ି ଭିଡ଼ି ଗୁଜୁରାଣ ମେଣ୍ଟାଉଛି, ତା' ପ୍ରତି ମଧ୍ୟ ଅସୂୟା ଭାବ ନାହିଁ । ବସ୍ତୁନିଷ୍ଠ ଭାବରେ କୁହା ଏହି କାହାଣୀ, ମହତ୍ତ୍ୱ ତା'ର କେବେ ଊଣା ହେବ ନାହିଁ । 'ଆଲୋ-ଆନ୍ଧାରି' ଇଂରାଜୀ, ଇଟାଲିଆନ୍, ସ୍ପେନିସ୍, ଜର୍ମାନ୍, ଫ୍ରେଞ୍ଚ୍, ଜାପାନିଜ୍, କନ୍ନଡ଼, ତେଲୁଗୁ, ମରାଠି, ମାଲାୟଲମ୍, ଓଡ଼ିଆ ଆଦି କେତେ ଯେ ଭାଷାରେ ପ୍ରକାଶିତ ହୋଇଛି, ତାହା ଆଉ କହିବାର ନୁହେଁ । ବେବିକୁ ଲେଖିକାର ପରିଚିତି ସାଙ୍ଗକୁ 'ରୟାଲ୍‌ଟି' ମଧ୍ୟ ମିଳିଛି । ସେ ସେମିନାରରେ ଭାଗନେବାପାଇଁ ବିଦେଶ ଭ୍ରମଣ ବି କରିଛି ଆୟୋଜକଙ୍କ ଖର୍ଚ୍ଚରେ । ମିଳିଥିବା ରୟାଲ୍‌ଟିରୁ (ମୋଟ ୩୦ ଲକ୍ଷ ଟଙ୍କା ପ୍ରାୟ) ସେ କାଣ୍ଠରାପଡ଼ାରେ ଜମି କିଣି ଘରଟିଏ ଏବେ ତିଆରି କରୁଛି । ସାଙ୍ଗରେ 'ତାତୁସ୍' ପ୍ରବୋଧ କୁମାରଙ୍କ ଘରେ କାମ ବି କରୁଛି । 'ଚାକରାଣୀ' ବଦଳରେ ତା'ପାଇଁ ନୂଆ ଶବ୍ଦ ଅଭିଧାନ ଗଢ଼ିଛି- ହାଉସ୍ କିପର ବା ଗୃହ ସଂଯୋଜିକା । ଦରମା ନେଇ 'ତାତୁସ୍' ବା 'ବାପା'ଙ୍କର ଘରକାମ କରିବା ତା'ର ଦାୟିତ୍ୱ, ବୃତ୍ତି । ସେହି ଦରମାରେ ସେ ତାର ପରିବାର ପାଳିଛି ।

'ଚାକରାଣୀ'ରୁ 'ହାଉସ୍ କିପର', ଜଣେ ପତି ପରିତ୍ୟକ୍ତାରୁ ସମାଜରେ 'ପରିଚିତା' ହେବାରେ ତା' ଭିତରେ ଯେଉଁ ଈଷତ୍ ରୂପାନ୍ତର ହୋଇଛି, ତାକୁ ଭିତ୍ତିକରି ସେ ଲେଖିଛି- 'ଈଷତ ରୂପାନ୍ତର', ତାର ଦ୍ୱିତୀୟ ଉପନ୍ୟାସ; ଏହି ଲେଖା ତା'ର ଆତ୍ମକାହାଣୀମୂଳକ । ହିନ୍ଦୀ ଓ ବଙ୍ଗଳାରେ ଏହା ପ୍ରକାଶିତ ହୋଇ ସାରିଛି, ୨୦୧୦ରେ । ଏବେ ଇଂରାଜୀରେ ବି ପ୍ରକାଶିତ ହେଉଛି ।

ଅନୁବାଦକୁ ଯିବା ପୂର୍ବରୁ ପ୍ରବୋଧ କୁମାର ଓ ଅଶୋକ ସାକ୍‌ସେରିଆଙ୍କ ସଂପର୍କରେ ଦୁଇ ପଦ । ପ୍ରଖ୍ୟାତ ହିନ୍ଦୀ କଥାକାର ପ୍ରେମଚାନ୍ଦଙ୍କର ଝିଅନାତି ହେଲେ ପ୍ରବୋଧ କୁମାର । ନିଜେ

ଗପ ଓ ଉପନ୍ୟାସ ଲେଖନ୍ତି । ହିନ୍ଦୀରେ ସେ ଏକ ଜଣାଶୁଣା ନାଁ । ଅଶୋକଜୀ ହେଉଛନ୍ତି କଲିକତାର ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ଓ ଭାରତୀୟ ଭାଷା ପରିଷଦର ଅନ୍ୟତମ ପ୍ରତିଷ୍ଠାତା ସୀତାରାମ ସାକସେରିଆଙ୍କ ଜ୍ୟେଷ୍ଠପୁତ୍ର । ସମାଜବାଦୀ ଆନ୍ଦୋଳନ ଓ ସାହିତ୍ୟରୁଚି ତାଙ୍କର ନିଶା । ବାହା ହୋଇ ନାହାନ୍ତି । ହିନ୍ଦୀରେ ଜଣେ ପ୍ରସିଦ୍ଧ ଗାଳ୍ପିକ ଓ ପ୍ରାବନ୍ଧିକ ସେ । ମାତ୍ର ଅଧିକ ସମୟ ତାଙ୍କର ଯାଏ ଅନ୍ୟମାନଙ୍କୁ ସାହିତ୍ୟିକ କରି ଗଢ଼ିବାରେ । ପ୍ରତ୍ୟେକ ମଣିଷ ସୃଷ୍ଟିଶୀଳ ଏବଂ ଅବସର ପାଇଲେ ସମସ୍ତେ ଖୁବ୍ ଉଚ୍ଚମାନର ସାହିତ୍ୟ ସୃଷ୍ଟି କରିପାରିବେ । ସୃଜନଶୀଳତାକୁ ନିଜ ଭିତରେ ଉପଲବ୍ଧି କଲା ପରେ ମଣିଷ କଟୁତା, ଦ୍ୱେଷ ଓ ଘୃଣା ସ୍ଥାନରେ ମାନବିକତା ଓ ସଂବେଦନଶୀଳତାକୁ ସ୍ୱାଭାବିକ ଭାବରେ ମହତ୍ତ୍ୱ ଦେବ । ସେହି ପ୍ରକ୍ରିୟାରେ ସମାଜରେ ସ୍ନେହ, ପ୍ରେମର ଧାରା ପ୍ରବାହିତ ହେବ । ଏହି ଜୀବନଧର୍ମକୁ ପାଳନ କରିବାପାଇଁ ସେ ଯେମିତି ପ୍ରତିଶ୍ରୁତିବଦ୍ଧ । ଏହା ପୂର୍ବରୁ ତାଙ୍କ ଘରେ ରହି ରୋଷେଇ କାମ କରୁଥିବା ବାଲେଶ୍ୱର ରାୟଙ୍କ ହାତରେ ସେ ଲେଖା ଲେଖାଇଛନ୍ତି; ବାଲେଶ୍ୱର ରାୟଙ୍କ ସ୍ତ୍ରୀ ସୁଶୀଳା ରାୟ, ଯିଏ ନିରକ୍ଷର, ଅଶୋକଜୀଙ୍କ ପ୍ରେରଣା ଓ ସାହଚର୍ଯ୍ୟ ପାଇ'ଏକ ଅନପଢ଼ କୀ କାହାନୀ' ନାମରେ ନିଜ ଆତ୍ମକାହାଣୀ ଲେଖିଛନ୍ତି, ଯାହା 'ରୋଷନାଇ ପ୍ରକାଶନ' ଦ୍ୱାରା ପ୍ରକାଶିତ ଓ ହିନ୍ଦୀ ଭାଷାରେ ବହୁପଠିତ ।

ବ୍ୟକ୍ତିଗତ ଭାବରେ ମୋର ଓ ଆମ ପରିବାରର ଅଶୋକଜୀ, ପ୍ରବୋଧ କୁମାର, ସଂଜୟ ଭାରତୀ ଆଦିଙ୍କ ସହ ଆତ୍ମିକ ସମ୍ବନ୍ଧ ରହିଛି । ସେହି ସୂତ୍ରରେ 'ଈଷତ୍ ରୂପାନ୍ତର'ର ଅନୁବାଦପାଇଁ ଯୋଜନା ହୋଇଛି । ୧୯୮୪ରୁ ଅଶୋକଜୀଙ୍କ ସହିତ ମୋର ପରିଚୟ । ପରିଚୟର ମାଧ୍ୟମ ହେଉଛନ୍ତି ସମାଜବାଦୀ ନେତା କିଶନ ପଟ୍ଟନାୟକ ଓ ସମାଜବାଦୀ ବିଚାର। ସେହିଦିନଠାରୁ ମତେ ଯେତେବେଳେ ବି ସୁଯୋଗ ମିଳିଛି, ମୁଁ ଅଶୋକଜୀଙ୍କ ପାଖକୁ ଯାଇଛି, ତାଙ୍କୁ ଭେଟିଛି ଓ ତାଙ୍କ ସାଙ୍ଗରେ ରହିଛି । ସେହି ପ୍ରକ୍ରିୟାରେ ତାଙ୍କର ଏହି ବନ୍ଧୁମାନଙ୍କୁ, ଯଥା- ବେବି, ପ୍ରବୋଧ କୁମାର ଓ ସଂଜୟ ଭାରତୀଙ୍କୁ ଚିହ୍ନିଛି । ମୋର ବାହାଘର ପରେ ପତ୍ନୀ ଅଂଜଳି, ମୋର ଛୁଆମାନେ ଓ ବାପା, ମା ବି ଅଶୋକଜୀଙ୍କ ସହ ସଂପର୍କିତ । ଆମମାନଙ୍କର ବ୍ୟକ୍ତିତ୍ୱ ଗଠନରେ ତାଙ୍କର କେତେ ଯେ ଦାନ, ତାହା ଲେଖି ହେବନି ।

୨୦୦୪ରେ 'ଆଲୋ ଆନ୍ଧାରି' ବଙ୍ଗଳାରେ ପ୍ରକାଶିତ ହୋଇଛି । ତା' ପୂର୍ବରୁ ପ୍ରଥମେ ଅନୂଦିତ ହୋଇ ହିନ୍ଦୀରେ ୨୦୦୨ରେ ପ୍ରକାଶିତ ହୋଇଛି । କଲିକତାରେ ଅଶୋକଜୀଙ୍କୁ ଭେଟିବା ଅବସରରେ ବହିଟିଏ ମୁଁ ଆଣିଥିଲି । ସେତେବେଳକୁ ବହିଟିକୁ ପ୍ରସିଦ୍ଧି ମିଳିବା ଆରମ୍ଭ ହୋଇ ନଥାଏ । ବହିଟିକୁ ପଢ଼ିଲା ପରେ 'ସମ୍ବାଦ' ପୃଷ୍ଠାରେ 'ବେବି ହାଲ୍‌ଦାରର ଆତ୍ମକାହାଣୀ' ଶୀର୍ଷକରେ ଲେଖାଟିଏ ଲେଖିଲି । ଲେଖାଟିକୁ ପଢ଼ି ଜଣେ ବନ୍ଧୁ ମତ ଦେଲେ ''ଆଫ୍ରିକାରେ ଯା ଠାରୁ ଅଧିକ ସବ୍-ଅଲଟର୍ଣ୍ଣ'ମାନେ ଆତ୍ମକାହାଣୀ ଲେଖିଛନ୍ତି । ସେ ସବୁର ଅବତାରଣା କରି ନିବନ୍ଧଟିକୁ ଲେଖାଯାଇଥିଲେ ତୁମ ଆଲୋଚନା ଅଧିକ ପରିପୁଷ୍ଟ ହୋଇପାରିଥାନ୍ତା । '' ଆଉ କେତେକ ପାଠକ କେତେ ପ୍ରକାର ମତ ଦେଇଥିଲେ । ସବୁରି ମଧ୍ୟରେ ଜଣେ ପାଠିକା ଲେଖାଟିକୁ

ପଢ଼ି ଅତି ସରଳ ଶବ୍ଦରେ କହିଲେ, ମୂଳ ବଙ୍ଗଳାରେ ବହିଟିକୁ ସେ ପଢ଼ିବାକୁ ଚାହାନ୍ତି । ସଂଜୟ ଭାରତୀଙ୍କୁ ଜଣାଇବାରୁ ସେ ବହିର ବଙ୍ଗଳା ସଂସ୍କରଣଟିଏ ପଠାଇଲେ । ବହିଟିକୁ ପଢ଼ିଲା ପରେ ପାଠିକା ଜଣକ କହିଲେ, ଅନୁମତି ମିଳିଲେ, ସେ ଅନୁବାଦ କରନ୍ତେ । ବେବିଠାରୁ ଅନୁମତି ଆସିଲା । ବହିଟିର ଅନୁବାଦ ହେଲା । 'ଓଡ଼ିଶା ବୁକ୍ ଏମ୍ପୋରିଅମ୍'ର ମାଲିକ ଶିବାଶିଷ କର ମୋର ବନ୍ଧୁ । ପାଣ୍ଡୁଲିପିଟିକୁ ପ୍ରକାଶ କରିବାକୁ ହଁ କଲେ । ସେହି ପ୍ରକ୍ରିୟାରେ ସେହି ପାଠିକା ବୀଣାପାଣି ମହାପାତ୍ରଙ୍କ ଅନୁବାଦରେ 'ଆଲୋ-ଆନ୍ଧାରି' ୨୦୦୭ରେ ପ୍ରକାଶିତ ହେଲା । ଏତେବେଳକୁ ବେବିକୁ ଖୁବ୍ ପ୍ରସିଦ୍ଧି ମିଳିସାରିଥାଏ । ତା' ସତ୍ତ୍ୱେ ଓଡ଼ିଆରେ ଅନୁବାଦ ଓ ପ୍ରକାଶନ କଥା ଶୁଣି ସେ ଭାରି ଖୁସି ହେଲା ।

୨୦୧୦ରେ 'ରୋଷନାଇ ପ୍ରକାଶନ' ପକ୍ଷରୁ 'ଈଷତ୍ ରୂପାନ୍ତର' ନାମକ ବେବି ହାଲ୍‌ଦାରର ଏହି ଦ୍ୱିତୀୟ ଉପନ୍ୟାସଟି ପ୍ରକାଶିତ ହେବା ପରେ ମୁଁ ତାକୁ ପଢ଼ିଲି । ଖୁବ୍ ଭଲ ଲାଗିଲା । ଅନୁବାଦ କରିବାପାଇଁ ପ୍ରତିଶ୍ରୁତି ଦେଇପାରିଲିନି । କାରଣ ତା' ପାଇଁ ମତେ ସମୟ ମିଳି ନପାରେ । ପୁଣି, ପ୍ରକାଶକ କିଏ ଖୋଜିବ ! ମୋର ପତ୍ନୀ ଅଂଜଳି ଆଚାର୍ଯ୍ୟ ମଧ୍ୟ ପଢ଼ିଲେ । ସେ ମଧ୍ୟ ବହିଟିକୁ ଖୁବ୍ ପସନ୍ଦ କଲେ । ଭାଷା ଏତେ ସହଜ ଯେ ଅନୁବାଦପାଇଁ କଷ୍ଟ ହେବନି ବୋଲି ସେ ମତ ଦେଲେ । ତେଣିକି ଅଂଜଳି ଲାଗିପଡ଼ି ମାତ୍ର ୨୫ ଦିନରେ ନିଜ ଘର କାମ ଭିତରେ ପାଣ୍ଡୁଲିପିଟିଏ ପ୍ରସ୍ତୁତ କଲେ । ସେ ନିଜ ଅନୁବାଦର ଗୁଣାତ୍ମକ ମାନକୁ ନେଇ ସନ୍ଦେହରେ ଥିଲେ । ଏହା ତାଙ୍କର ପ୍ରଥମ କାମ । ମୁଁ ତାକୁ ମୋର ସାଧ୍ୟମତେ ସୁଧାରିଦେବାକୁ ପ୍ରତିଶ୍ରୁତି ଦେଲି । ସେହି ପ୍ରକ୍ରିୟାରେ ମୁଁ ବି ଅନୁବାଦରେ ଯୋଡ଼ି ହୋଇଗଲି । ସେହି ବଳରେ ତାଙ୍କର ଅନୁବାଦ କାମ ମଧ୍ୟ ଜୋର୍ ଧରିଲା । ସେ ଯଦି ଅନୁବାଦ କରିନଥାନ୍ତେ, ମୁଁ ବା ପାଣ୍ଡୁଲିପିଟିକୁ ସଜାଡ଼ି ଥାଆନ୍ତି କେଉଁଠି ? ମୁଁ ସଜାଡ଼ିବାର ପ୍ରତିଶ୍ରୁତି ଦେଇନଥିଲେ ସେ ବା ଅନୁବାଦ କାମକୁ ଆଗକୁ ବଢ଼ାଇ ଥାଆନ୍ତେ କେମିତି ? ଏହି ପରସ୍ପର ପରିପୂରକତାରୁ ଅନୁବାଦଟି ସଂପୂର୍ଣ୍ଣ ହେଲା । 'ବିଜୟା'ର ସଂପାଦକ ଓ ମୋର ଅନୁଜ ପ୍ରତିମ କେଦାର ମିଶ୍ରଙ୍କୁ ଥରେ 'ଈଷତ୍ ରୂପାନ୍ତର'ର ଅନୁବାଦ କଥା କହିବାରୁ ସେ ନିଜ ପତ୍ରିକାରେ ଏହାକୁ ଧାରାବାହିକ ଭାବରେ ପ୍ରକାଶ କରିବାକୁ ରାଜି ହେଲେ । ପାଠକୀୟ ପ୍ରତିକ୍ରିୟା ଖୁବ୍ ସକାରାତ୍ମକ । ବହି ଆକାରରେ ପ୍ରକାଶନପାଇଁ ପ୍ରସ୍ତାବ ଦେବାରୁ 'ଆମ ଓଡ଼ିଶା'ର ଅଧ୍ୟକ୍ଷ ସୌମ୍ୟରଂଜନ ପଟ୍ଟନାୟକ ଓ ପ୍ରକାଶନ ସଂପାଦକ ଅସିତ ମହାନ୍ତି ଆଗ୍ରହ ପ୍ରକାଶ କଲେ । ସମସ୍ତଙ୍କୁ ମୋର ଆନ୍ତରିକ କୃତଜ୍ଞତା ।

ସବୁ ନାଟକର ପଛରେ ଏକ ନାଟକ ରହିଥାଏ । ପ୍ରଚ୍ଛଦପଟର ସେହି ନାଟକ ବି ମଞ୍ଚନ ହେଉଥିବା ନାଟକ ଅପେକ୍ଷା କମ୍ ଆମୋଦଦାୟୀ ନୁହେଁ । 'ଈଷତ୍ ରୂପାନ୍ତର'ର ଅନୁବାଦ ପଛରେ ରହିଥିବା କାହାଣୀଟିକୁ କହିଲା ପରେ ଅନୁବାଦଟିକୁ ଆରମ୍ଭ କଲେ ପାଠକଙ୍କୁ ଗୁଡ଼ାଏ ପ୍ରଶ୍ନର ଉତ୍ତର ମିଳିଯିବ । ଅକୁହା କଥା କହି ହୋଇଯିବ । ସେହି କାରଣରୁ ଏହି ଅନୁବାଦକୀୟ ।

**ପ୍ରୀତୀଶ ଆଚାର୍ଯ୍ୟ**

# ॥ ୧ ॥

ଦୀର୍ଘ ଚାରିବର୍ଷ ପରେ ମୁଁ ଦୁର୍ଗାପୁର ଫେରୁଥିଲି । ଦୁର୍ଗାପୁରରୁ କଲିକତା ଯିବି । ସେଠି ଜେଠୁ ରହନ୍ତି । ମୋର ପ୍ରକାଶକ ସଂଜୟ ଭାରତୀଙ୍କ ସହ ବି ଦେଖା ହେବ । ତାତୁସ୍ ଦୁଇ ମାସ ଆଗରୁ ମୋ ପାଇଁ ରେଳ ଟିକଟ କିଣି ରଖିଦେଇଥିଲେ । ପଅରଦିନ ଟ୍ରେନ୍ ଧରିବାକୁ ହେବ । ଆଜି ହଠାତ୍ ଉପରୁ ତଳକୁ ସିଡ଼ିରେ ଓହ୍ଲାଇବା ବେଳେ ଗୋଡ଼ ମକଚି ଗଲା । ଅସହ୍ୟ ଯନ୍ତ୍ରଣା । ମତେ ଲାଗିଲା- ନା ଏବେ ଦୁର୍ଗାପୁର ଯାଇହେବ, ନା କଲିକତା । ତାତୁସ୍ ମୋର ଗୋଡ଼ ମକଚିଥିବା କଥା ଫୋନ୍‌ରେ ଜେଠୁ ଏବଂ ସଂଜୟ ଦା'ଙ୍କୁ ଜଣାଇ ଦେଇଛନ୍ତି - 'ବେବି ବୋଧହୁଏ ଯାଇପାରିବନି । ଗୋଡ଼ ମକଚିଯିବାରୁ ଚାଲିପାରୁନି' । ଘଟଣା ଦିନ ହିଁ ତାତୁସ୍ ମୋତେ ଡାକ୍ତରଙ୍କ ପାଖକୁ ନେଇଗଲେ । ଡାକ୍ତର ବାବୁ ଏକ୍ସରେ କଲା ପରେ ରିପୋର୍ଟ ଦେଖି କହିଲେ, 'ଚିନ୍ତାର କାରଣ ନାହିଁ । ମୁଁ ଯାହା କହୁଛି ସେମିତି କର, ଦୁଇ ଦିନରେ ସବୁ ଠିକ୍ ହୋଇଯିବ ।' ସତକୁ ସତ ଡାକ୍ତରଙ୍କ କହିବା ମୁତାବକ ଦୁଇ ଦିନରେ ଗୋଡ଼ ପ୍ରାୟ ଠିକ୍ ହୋଇଗଲା । ତାତୁସ୍ ତା'ପରେ ବି ମତେ ବାରମ୍ବାର ପଚାରୁଥାନ୍ତି- ଦେଖ୍, ଯାଇ ପାରିବୁ ତ ? ତୋ ସାଙ୍ଗରେ ତୋ ପିଲାମାନେ ବି ଥିବେ । ସବୁ କଥା ଚିନ୍ତାକର । ଯଦି ପାରିବୁନି, ଯାଆନା । ମୁଁ କହିଲି, ମୁଁ ଯିବି ।

ଆଜି ସନ୍ଧ୍ୟା ଚାରିଟାଦଶରେ ଟ୍ରେନ୍ ଅଛି । ଠିକ୍ ସମୟରେ ମୁଁ ପ୍ରସ୍ତୁତ ହୋଇଗଲି । ଦୁର୍ଗାପୁର ଯିବାରେ ମତେ ଯେତେ ଖୁସି ଲାଗୁ ନଥିଲା, ତା'ଠାରୁ ଅଧିକ ଖୁସି ଲାଗୁଥିଲା ଯେ କଲିକତାରେ ଜେଠୁ ଏବଂ ସଂଜୟ ଦା' ସହିତ ଭେଟ ହେବ। ତାତୁସ୍ ବାରମ୍ବାର କହିଛନ୍ତି ସାବଧାନିରେ ଯିବାକୁ ହେବ । ରିଜର୍ଭେସନ୍ ଟିକଟରେ ଆଗରୁ ମୁଁ କେବେ ଟ୍ରେନ୍ ଯାତ୍ରା କରିନି । ପିଲାଦିନେ ବାପାଙ୍କ ସାଙ୍ଗରେ ଡେଲହାଉସି ଆଦି କୁଆଡ଼େ କୁଆଡ଼େ ଯାଇଥିଲି । ଆଜି ନିଜ ପିଲାଙ୍କୁ ସାଙ୍ଗରେ ନେଇ ମତେ ଯିବାକୁ ପଡୁଛି । ମୁଁ ଯାଉଛି ସତ, ମାତ୍ର ତାତୁସ୍‌ଙ୍କ ପାଇଁ ମନରେ ସଦା ଚିନ୍ତା ଲାଗି ରହେ । ତାଙ୍କର ଖାଇବା ପିଇବା କ'ଣ ହେବ ? ଅର୍ଜୁନ ଦା' (ତାତୁସ୍‌ଙ୍କ ପୁଅ), ସୁଖଦିପ ଦା' ଆଦିଙ୍କ ପାଇଁ ମତେ ବେଶି ଚିନ୍ତା ଘାରେନା । ମୋର ରହିବା, ନ ରହିବାରେ

ସେମାନେ ପାର୍ଥକ୍ୟ ଦେଖି ପାରନ୍ତିନି । କେବଳ ଦଶଦିନପାଇଁ ଯାଉଛି । ତଥାପି ମନଟା ଭଲ ଲାଗୁନି । ମୋ ପାଇଁ ଏବଂ ମୋର ପିଲାଙ୍କ ପାଇଁ କ'ଣ ତାତୁସ୍ ବି କମ୍ ଚିନ୍ତିତ ? କହୁ ନଥିଲେ ସେ କିଛି । ମାତ୍ର ତାଙ୍କ ଚେହେରାରୁ ଉଦାସ ଭାବ ସ୍ପଷ୍ଟ ଜଣାପଡୁଥାଏ । ଲାଗୁଛି, ଆମମାନଙ୍କଠାରୁ ବି ସେ ବେଶି ଘାରି ହେଉଛନ୍ତି ।

ଗୁର୍‌ଗାଓଁରେ ଆମେ ରହୁଥିବା ଘରର ଅନତିଦୂରରେ ମୋର ଦାଦା (ବଡ଼ଭାଇ) ରହେ । କାଳେ ବାପାଙ୍କୁ କିଛି କହିବାପାଇଁ ଦାଦା ଇଚ୍ଛା କରୁଥିବ ମନେ କରି ମୁଁ ଟ୍ରେନ୍ ଧରିବା ପୂର୍ବରୁ ତାକୁ ଭେଟିବାକୁ ଗଲି । ଦାଦା କହିଲା, ବାପାଙ୍କୁ କହିବୁ ସେ ଥରେ ଆସିବେ ଏବଂ ସୋମାପାଇଁ ବରପାତ୍ରଟିଏ ଠିକଣା କରିବେ । ଭାଉଜ ମୋ ହାତରେ ସୋମାର ଫଟୋ ଆଉ ଫୋନ୍ ନମ୍ବର ଦେଇ କହିଲେ, ''ମୋର ମାମୁଙ୍କୁ ଏହି ଫଟୋ ଆଉ ଫୋନ୍ ନମ୍ବର ଦେଇ ଶୀଘ୍ର ମୋତେ ଫୋନ୍ କରିବାପାଇଁ କହିବ ।'' ଦାଦା ଘରେ ମୁଁ ଆଉ ବେଶି ସମୟ ରହିଲିନି । ଯେଉଁ ରିକ୍ସାରେ ଯାଇଥିଲି ସେଇଥିରେ ଫେରି ଆସିଲି । ଅର୍ଜୁନ ଦା'ଙ୍କୁ ପଚାରିଲି, ''ଜେଠୁଙ୍କୁ କିଛି କହିବାର ଥିଲା କି ?'' ସେ କହିଲେ, ''ତାଙ୍କ ପାଖକୁ ଚିଠି ଲେଖିବାର ଅଛି । ସମୟ ପାଇଲିନି । ତାଙ୍କୁ କହିବୁ, ମୁଁ ଚିଠି ଲେଖିବି ।'' ଘରୁ ବାହାରିବା ପୂର୍ବରୁ ଅର୍ଜୁନ ଦା' ତାତୁସ୍‌ଙ୍କ ହାତରେ ପାଞ୍ଚ ଶ' ଟଙ୍କାର ନୋଟ୍‌ଟିଏ ଦେଇ କହିଲେ, ବେବିକୁ ଦେଇଦେବ । ତାତୁସ୍ ମତେ କହିଲେ, ''ତୋ' ପାଖରେ ତ ପଇସା ଅଛି । ତୋର ଅର୍ଜୁନ ଦା' ଦେଇଥିବା ଟଙ୍କାରେ ତୁ ଟେକ୍ସି ମଗେଇ ନେ । ଷ୍ଟେସନ୍ ଯାଆ । ମୁଁ କହିଲି, ''ଆପଣ ଯାହା ଉଚିତ ମନେକରୁଛନ୍ତି ମୋପାଇଁ ସେଇୟା କରନ୍ତୁ ।''

ଫୋନ୍ କରିବାର ଅଧଘଣ୍ଟା ପରେ ଟେକ୍ସି ଆସି ଦୁଆରମୁହଁରେ ପହଞ୍ଚିଗଲା । ତାତୁସ୍ ଓ ଇଗୋର୍ ଆମମାନଙ୍କୁ ଛାଡ଼ିବାପାଇଁ ଷ୍ଟେସନ୍‌ଯାଏ ଆସିଥିଲେ । ବାଇଶ ବର୍ଷର ଟୋକା ଇଗୋର । ଶରୀରର ରଂଗ ଦୁଧ ପରି ଗୋରା । ମାତୃଭାଷା ପୋଲିସ୍ ଓ ଇଂରାଜୀ ବ୍ୟତୀତ ଅନ୍ୟ କୌଣସି ଭାଷା ତାକୁ ଜଣା ନାହିଁ । ମୋର ତା' ସହିତ ଠରାନରାରେ କଥାଭାଷା ହୁଏ । ବେଳେବେଳେ ମୁଁ ଚିନ୍ତା କରେ, ଭାରତର କୌଣସି ଭାଷା ନଜାଣି ଏ ଟୋକା ଭାରତ ବୁଲିବ କେମିତି ? ଟେକ୍ସିରୁ ଓହ୍ଲାଇ ତାତୁସ୍, ଇଗୋର ଆଉ ମୁଁ ପିଲାଙ୍କୁ ନେଇ ପ୍ଲାଟଫର୍ମକୁ ଗଲୁ । ମୋର ଦୁଇଟି ଯାକ ହାତରେ ବେଗ୍ ଥାଏ । ଇଗୋର ମୋ ହାତରୁ ଓଜନିଆ ବେଗ୍‌ଟି ନିଜେ ନେଇଗଲା । ମତେ ଲାଜ ମାଡ଼ିଲା । ତା' ସତ୍ତ୍ୱେ ତା' ହାତରେ ବେଗ୍‌ଟିକୁ ଦେବାକୁ ପଡ଼ିଲା । ଆମ ସିଟ୍ ନମ୍ବର ଦେଖି ଇଗୋର ସେଠି ଆମକୁ ବସାଇଦେଲା । ସୁଟ୍‌କେସ୍‌ରୁ ତାଲା ଚାବି ବାହାର କରି ସିଟ୍ ତଳେ ଥିବା କଡ଼ାରେ ଯୋଡ଼ି ସୁଟ୍‌କେସ୍‌କୁ ଚେନ୍‌ରେ ବାନ୍ଧିଦେଲା । ତେଣିକି ତାଲା ବନ୍ଦ କରି ସେ ଚାବି ମୋ ହାତକୁ ବଢ଼ାଇଦେଲା ।

ଟ୍ରେନ୍ ଛାଡ଼ିବାର ସମୟ ଯେତେ ପାଖେଇ ପାଖେଇ ଆସୁଥାଏ, ତାତୁସ୍ ସେତେସେତେ ଅଧିକ ଉଦାସ ଜଣାପଡୁଥାନ୍ତି । ତାଙ୍କ ମନର ଉଦାସ ଭାବ ଦେଖି ମତେ ବି ଉଦାସ ଲାଗୁଥାଏ । ମୁଁ ତଡ଼ିତ ବେଗରେ ଗାଡ଼ିରୁ ଥରେ ଓହ୍ଲାଇ ଯାଇ ତାଙ୍କ ପାଦଧୂଳି ନେଲି । ତାତୁସ୍ ମୋ ହାତରେ ଡାଏରୀଟିଏ ଦେଇ କହିଲେ, ''ତୁ ପ୍ରତିଦିନ ଏହି ଡାଏରୀ ଲେଖିବୁ । ଦୁର୍ଗାପୁର ଏବଂ କଲିକତାରେ

ଯାହା ଯେମିତି ଅନୁଭବ କରିବୁ, ସବୁ ଲେଖିବୁ ଡାଏରୀରେ । ମୁଁ ଖୁସିରେ ଡାଏରୀଟିକୁ ନିଜ ହାତରେ ଓଲଟପାଲଟ କରି କହିଲି, ''ବାପ୍‌ରେ ! ଏତେ ମୋଟା ଡାଏରୀକୁ ମୁଁ କ'ଣ ଲେଖି ସାରିପାରିବି ?'' ତାତୁସ୍ କହିଲେ, ''ସେଥିରେ କ'ଣ ଅଛି ? ତୁ ନିଶ୍ଚୟ ଲେଖିପାରିବୁ ।'' ଇଗୋର ମୋ ସାଙ୍ଗରେ ହାତ ମିଳାଇଲା । ତାତୁସ୍ ଆଉ ଥରେ ଚେତାବନୀ ଦେଇ କହିଲେ, ''ପିଲାଙ୍କୁ ଭଲ ଭାବେ ନେଇକି ଯିବୁ । କଲିକତା କେବେ ତୁ ଯାଇନୁ । ହୋସିଆର୍ ହୋଇ ରହିବୁ । ଦୁର୍ଗାପୁର ପହଞ୍ଚିଲା ପରେ ସଂଜୟଙ୍କୁ ଫୋନ୍ କରି ଜଣାଇଦେବୁ । '' ଟ୍ରେନ୍ ଛାଡ଼ିବା ଉପରେ ହେଲା । ମୋର ସାମନା ସିଟ୍‌ରେ ବସିଥିବା ସରୁ ନିଶ, ଗୋରା, ପତଳା, ଡେଙ୍ଗା ଏବଂ ଜିନ୍ ପିନ୍ଧିଥିବା ସହଯାତ୍ରୀ ଜଣଙ୍କୁ ତାତୁସ୍ ପଚାରିଲେ, ''ଆପଣ କେଉଁଯାଏ ଯିବେ ?'' ଭଦ୍ରବ୍ୟକ୍ତି ଉତ୍ତର ଦେଲେ, ''ହାବଡ଼ା'' । ତାତୁସ୍ କହିଲେ, ''ଏମାନଙ୍କୁ ଦୁର୍ଗାପୁର ଯିବାର ଅଛି । ଓହ୍ଲାଇବାରେ ଟିକେ ସାହାଯ୍ୟ କରିବେ ।'' ଭଦ୍ରବ୍ୟକ୍ତି ସମ୍ମତି ଦେଲେ । ଇଗୋର ପୁଣି ଥରେ ମୋର ଛୁଆଙ୍କ ସହିତ ହାତ ମିଳାଇଲା । ହାଏ ହାଏ, ବାଏ ବାଏ କଲା । ନିଜର ଧ୍ୟାନ ରଖିବାକୁ ମୁଁ ତାତୁସ୍‌ଙ୍କୁ କହିଲି । ଟ୍ରେନ୍ ଛାଡ଼ିବା ଆରମ୍ଭ କଲା । ମୁଁ ଶୀଘ୍ର ଛୁଆଙ୍କ ପାଖକୁ ଆସି ବସିଲି । ଏଥର ଇଗୋର ହାତଯୋଡ଼ି ମୋତେ ପ୍ରଣାମ କଲା । ତାଙ୍କର ସେଠି ହାତଯୋଡ଼ି ପ୍ରଣାମ କରିବାର ରୀତି ନାହିଁ । ବୋଧହୁଏ ସେ ହାତଯୋଡ଼ି ପ୍ରଣାମ କରିବା ଶିଖିନି । ଟ୍ରେନ୍‌ର ଗତି ଏବେ ତୀବ୍ର ହେଲାଣି । ଯେତେଦୂର ସଂଭବ ମୁଁ ଝରକାରୁ ସେମାନଙ୍କୁ ଦେଖିବାକୁ ପ୍ରୟାସ କଲି । ମୋର ପିଲାମାନେ ବି ସେମାନଙ୍କୁ ହାତ ହଲେଇ ଟା ଟା କଲେ ।

ଧୀରେ କରି ନିଜ ସିଟ୍‌ରେ ଯାଇ ବସିଲି । ପୁଅକୁ ପଚାରିଲି, ''ତୋର ମନେଅଛି, ଆମେ ଦିଲ୍ଲୀ କେମିତି ଆସିଥିଲେ ?'' ସେ ଆଙ୍ଗୁଠି ଦେଖାଇ କହିଲା, 'ଆମେ ସେଇ ଗେଟ୍ ପାଖରେ ବସିଥିଲେ ।'' ତା'ର ଆଙ୍ଗୁଠି ଦେଖାଇବା ଦେଖି ମୋର ଛଅ ବର୍ଷର ଝିଅ ପାଟିକରି କହିଲା, ''ଇ ମା, ମା' ପରା ଆଙ୍ଗୁଠି ଦେଖାଇ କଥାଭାଷା କରିବାକୁ ମନା କରିଥିଲା ।''

ଝିଅର କଥା ଶୁଣି ସାମନାରେ ବସିଥିବା ଜଣେ ଭଦ୍ରବ୍ୟକ୍ତି ହସିବାକୁ ଲାଗିଲେ । ଝିଅକୁ ପାଖକୁ ଡାକି ପଚାରିଲେ, ''ତୋ ନାଁ କ'ଣ ? ବାପାଙ୍କ ନାଁ କ'ଣ ? କୋଉ କ୍ଲାସ୍‌ରେ ପାଠପଢୁଛୁ ?'' ଝିଅ ତାଙ୍କ ପ୍ରଶ୍ନର ଚଟାପଟ ଉତ୍ତର ଦେଇଦେଲା । ଭଦ୍ରଲୋକଙ୍କ ସହ ତା'ର ଭଲ ବନ୍ଧୁତା ହେଇଗଲା । ତାକୁ ଖୁବ୍ ଶୀଘ୍ର ସବୁଠି ସାଙ୍ଗ ମିଳିଯାଆନ୍ତି । ତେଣୁ, ମତେ ଛାଡ଼ି ରହିବାରେ ତାକୁ କଷ୍ଟ ହୁଏନା । ଯେତେ ଶୀଘ୍ର ସେ ବନ୍ଧୁତା କରେ, ସେତେ ଶୀଘ୍ର ବନ୍ଧୁତା କାଟେ ମଧ୍ୟ । ସ୍କୁଲ୍‌ରୁ ଫେରି ପ୍ରତିଦିନ ସେ କହିବ, ଆଜି ଅମୁକ ସାଙ୍ଗରେ ତା'ର ଦୋସ୍ତି ହେଲା ଏବଂ ଅମୁକ ସାଙ୍ଗରେ ଦୋସ୍ତି କଟିଲା । ତା'ର ଜଣେ ସାଙ୍ଗ ଅଛି- ମନୀଷା । ରୋଜ ତା' କଥା କହେ । ମନୀଷା ବହୁତ ଭଲ ଝିଅ । ମନୀଷା ତା'ର ବାଳକୁ ବବ୍‌କଟ୍ କରିଛି । ଆଜି ମନୀଷା ଜିନ୍‌ସ ପେଣ୍ଟ ପିନ୍ଧି ସ୍କୁଲ୍ ଆସିଥିଲା । ଆଜି ମନୀଷା ଚୁଡ଼ି ପିନ୍ଧିଥିଲା । ମନୀଷା ମୁଣ୍ଡରେ ବିନ୍ଦି ଲଗାଇଥିଲା । ସ୍କୁଲ୍‌ରୁ ଫେରି ଖାଇଲାବେଳେ ଏସବୁ ଗପେ । ଦିନେ ହଠାତ୍ ଦେଖିଲାବେଳକୁ ତା' ଚେହେରା ଶୁଖିଯାଇଛି । ଖୁବ୍ ଉଦାସ ଜଣାପଡୁଛି । ପଚାରିଲି, ''କ'ଣରେ, କ'ଣ ହେଲା ଆଜି ?'' ସେ

ଚଟ୍‌କରି ଉତ୍ତର ଦେଲା, "ମନୀଷା ସାଙ୍ଗରେ ମୋର କଟି ହେଇଗଲା" ମୁଁ ପୁଣି ପଚାରିଲି, "କ'ଣ କେମିତି କଟି ହେଲା ?" ଝିଅ କହିଲା, "ମନୀଷା ଆଜି ମୋ ସାଙ୍ଗରେ ବସି ଟିଫିନ୍ ଖାଇଲା ନାହିଁ । ଶାରଦା ସାଙ୍ଗରେ ବସି ଖାଇଲା । ମତେ ଜଣାଇଲା ବି ନାହିଁ ।" ମୁଁ କହିଲି, "ଓହୋ ଏଇଥିପାଇଁ ତୋର କଟି ହୋଇଛି, କାଲି ମିଚି ହେଇଯିବ ।" ତାକୁ ଭୁଲେଇବା ଲାଗି ପଚାରିଲି, "ଆଚ୍ଛା, କହିଲୁ ତୁମର କଟି କେମିତି ହୁଏ ? ମିଚି କେମିତି ହୁଏ ?" ଝିଅ ଲାଜେଇଗଲା । ମୁଁ କହିଲି, "ଓହୋ, କରି ଦେଖା ନା ଥରେ ।" ସେ ସେମିତି ଲାଜେଇ ତା'ର ଭୋଜନି ହାତର କାଣି ଆଙ୍ଗୁଠିକୁ ଦାନ୍ତ ତଳେ ରଖି ଟକ୍‌କରି ବାହାର କରିଦେଇ କହିଲା, "ଏମିତି ।" ମୁଁ ପୁଣି ପଚାରିଲି, "ଆଉ ମିଚି କେମିତି ହୁଏ ?" ସେ ଆଗ ଭଳି ଲାଜେଇ ଲାଜେଇ ନିଜ ବାଁ ହାତର ମୁଠାରୁ ବୁଢ଼ା ଆଙ୍ଗୁଠିକୁ ବାହାର କଲା ଏବଂ ଦାନ୍ତ ତଳେ ରଖି ଟକ୍‌କରି ବାହାରକୁ କାଢ଼ି ଆଣି କହିଲା, 'ଏମିତି' । ଏତିକି ବେଳେ ମୁଁ ତାକୁ କହିଲି, "ଦେଖିଲୁ, କେମିତି ତତେ ମୁଁ ଭୁଲେଇ ଦେଲି ।" ତା' ପରେ ତାକୁ କୋଳକୁ ଟାଣି ଆଣିଲି ।

ଛାଡ଼, ମୋ କଥା ପଡ଼ିଥିଲା, ମୋ ଝିଅର ନୁହେଁ । ପିଲାଏ ଗାଡ଼ିରେ ଖୁସିରେ ବସିଥାନ୍ତି । ସେମାନଙ୍କ ଆନନ୍ଦର ସୀମା ନ ଥାଏ । କେବେ ଏହି ଝରକା ପାଖରେ ତ ଆଉ କେବେ ସେହି ଝରକା ପାଖରେ ବସୁଥାନ୍ତି । ମୁଁ ଖୋଲା ଝରକାରୁ ମୁଣ୍ଡ ବାହାରକରି ଶୂନ୍ୟ କ୍ଷେତକୁ ଦେଖୁଥାଏ । ପିଲାଏ 'ଅଙ୍କଲ ଅଙ୍କଲ' କହି ସହଯାତ୍ରୀଙ୍କ ସହ ହିନ୍ଦୀରେ ଗପୁଥାନ୍ତି । ପିଲାଙ୍କ ଖୁସି ଦେଖି ମତେ ବି ଖୁସି ଲାଗୁଥାଏ । ପିଲାଙ୍କ ସହ କେତେବେଳେ ହିନ୍ଦୀରେ ତ କେତେବେଳେ ବଙ୍ଗଳାରେ କଥାଭାଷା କରୁଥାଏଁ । ମୋର କଥା ଶୁଣି ଜଣେ ଭଦ୍ରଲୋକ ପଚାରିଲେ, "ଦିଦି, ଆପଣ କ'ଣ ବଙ୍ଗାଳୀ ?"

- ହଁ, ମୁଁ ବଙ୍ଗାଳୀ । ଆଉ ଆପଣ ?
- ମୁଁ ବି ବଙ୍ଗାଳୀ ।
- ଆପଣଙ୍କ ନାମ ?
- ସୁଖେନ୍ଦୁ କୁଣ୍ଡୁ ।

ଭଦ୍ରବ୍ୟକ୍ତି ଜଣକ ସାମାନ୍ୟ ନୀରବତା ପରେ ପୁଣି ପଚାରିଲେ, "ଦିଦି, ଆପଣ ଦିଲ୍ଲୀରେ କ'ଣ କାମ କରନ୍ତି ?"

- ହଁ ।
- କି ଚାକିରି ?
- ମୁଁ ହାଉସ୍ କିପର ଚାକିରି କରେ । ସଂଗରେ ଲେଖା ପଢ଼ାରେ ବି ରୁଚି ଥାଏ ।
- ତା'ହେଲେ, ଆପଣଙ୍କ ଘର ଦୁର୍ଗାପୁରରେ ?
- ହଁ ।
- ତା'ହେଲେ ଦିଲ୍ଲୀରେ ଆପଣଙ୍କ ପତି ବି ଆପଣଙ୍କ ସାଙ୍ଗରେ ରହନ୍ତି ?
- ନା, ଦିଲ୍ଲୀରେ ମୁଁ ପିଲାଙ୍କୁ ନେଇ ଏକା ରହେ ।

- ସେ ମଝିରେ ମଝିରେ ଆସନ୍ତି ?

- ନା, ତାଙ୍କର ଯିବା ଆସିବା ନାହିଁ ।

- ଆଦୌ ଆସନ୍ତି ନାହିଁ ?

- ଆଦୌ ଆସନ୍ତି ନାହିଁ, କ'ଣ ହଜବେଣ୍ଡଙ୍କ ବିନା ଏକାକୀ ରହିହେବନି ?

- ନା, ମୋର ପଚାରିବାର ଅର୍ଥ ସେଇଆ ନଥିଲା ।

ଏତିକି କହି ସୁଖେନ୍ଦୁ ନାମକ ସେହି ଭଦ୍ରବ୍ୟକ୍ତି ଚୁପ୍ ହୋଇଗଲେ ।

ଏ ପଟେ ମୋର ପିଲାଏ କିଛି କ'ଣ କରିବାପାଇଁ ଯେମିତି ଛଟପଟେଇ ଯାଉଥିଲେ । ମୁଁ ସେମାନଙ୍କୁ ଚୁପ୍ ରହିବାକୁ ପାଟିକଲି । ପୁଅ କହିଲା, ''ଲୁଡୁ ନେଇ ଆସିଥିଲେ କେତେ ଭଲ ହୋଇ ନଥାନ୍ତା ! ଟ୍ରେନ୍‌ରେ ବସି ଖେଳି ଥାଆନ୍ତେ ।'' ମୁଁ କହିଲି, ''କୌଣସି ବହିଫହି ସାଙ୍ଗରେ ଆଣିବାକୁ ମୁଁ କହୁଥିଲି । ସେଇଟା ତ କଲୁନି । ଏବେ କ'ଣ କରିବୁ ?''

ଟ୍ରେନ୍‌ରେ ଫେରିବାଲା ତ ଯାହାକୁ ଯେତେ । କ'ଣ ନା କ'ଣ ନେଇକି ଆସିଥାନ୍ତି । ଦଶ ଟଙ୍କାରେ ଚାରୋଟି ପେନ୍, ଚାବି ରିଂଗ୍, ଖାଇବା ଜିନିଷ, ଝାଲ୍ ମୁଢ଼ି, ସିଙ୍ଗଡ଼ା, ଚନାଚୁର୍ । ଏମିତି ଆହୁରି କେତେ କ'ଣ । ସବୁ ଜିନିଷର ନାଁ ମନେ ରହୁନି । ମିନିଟ୍‌କୁ ଚାରିଥର ଚା' ବାଲା ପାଟି କରୁଛି । ମନେ ପଡ଼ିଲା, ଆଜି ସନ୍ଧ୍ୟା ଚାରିଟାବେଳର ଚା' ପିଆ ତ ଏଯାଏ ହୋଇନି । ଅନ୍ଧାର ହେବାକୁ ବସିଲାଣି । ଚା' କପ୍‌ଟିଏ ନିଏ । ଗୋଟାଏ ଚା'ରେ ମନ ମାନିଲାନି । ଘରେ ତ କପ୍ ଭର୍ତ୍ତି ଚା ପିଏ । ଟ୍ରେନ୍‌ର ଏହି ଟିକିଏ ଚା'ରେ ବା ମନ ମାନିବ କେମିତି ? ସେଇଥିପାଇଁ ଆହୁରି ଚା' ପିଇବାକୁ ଇଚ୍ଛା ହେଉଛି । ଟ୍ରେନ୍‌ରେ ଭିକ ମାଗିବାକୁ ଜଣକ ପରେ ଜଣେ ଆସୁଛନ୍ତି । ମୁଁ ବେଗ୍‌ରୁ କାଢ଼ି ସେମାନଙ୍କୁ ପଇସା ଦେଉଛି । ଘରୁ ବାହାରିବା ବେଳେ ତାତୁସ୍ ଆଞ୍ଜୁଳାଏ ହେବ ରେଜା ପଇସା ଦେଇ କହିଥିଲେ, ''ରଖିଥା, କାମରେ ଆସିବ ।'' ସେହି ପଇସାରେ ଚା' ପିଉଛି ଓ ତହିଁରୁ କାଢ଼ି ଭକାରିଙ୍କୁ ଦେଉଛି । ଜଣେ ଭିକାରିକୁ ପଇସା ଦେବାର ଦେଖି ସୁଖେନ୍ଦୁ କହିଲା, ''ଆପଣ ତ ସେମାନଙ୍କୁ ଦେଇଚାଲିଛନ୍ତି । ଜଣକୁ ଦେଲେ ସେ ଅନ୍ୟମାନଙ୍କୁ ପଠାଇ ଦିଏ । ଭିକାରିମାନଙ୍କୁ କ'ଣ ସନ୍ତୁଷ୍ଟ କରିହେବ ?'' ସୁଖେନ୍ଦୁର ବିଚାର ସହ ମୁଁ ସହମତ ହୋଇ ପାରିଲି ନାହିଁ । ମତେ ଲାଗେ, ଯାହାଠାରୁ ମିଳିବ, ତା' ପାଖକୁ ସିନା ସେମାନେ ଯିବେ । ଯିଏ ଦେବ ନାହିଁ, ତା'ର ଚେହେରା ଦେଖି ସେମାନେ ଦ୍ୱିତୀୟ ଥର ତା'ର ପାଖ ମାଡ଼ିବେନି ।

ସଂଧ୍ୟା ହେଲାଣି । ପିଲାଙ୍କର ଏହି ସମୟରେ କିଛି ଖାଇବାକୁ ଇଚ୍ଛା ଥାଏ । ମତେ ବି ସାମାନ୍ୟ ଭୋକ ଲାଗିଲାଣି । ପିଲାଙ୍କୁ କହିଲି, ''ଚାଲ ଝାଲ୍‌ମୁଢ଼ି ଖାଇବା ।'' ଠିକ୍ ସେତିକି ବେଳକୁ ମୁଢ଼ିବାଲା ବି ଆସି ପହଞ୍ଚିଗଲା । ମୁଁ ତା'ଠାରୁ ତିନି ଠୁଙ୍ଗା ଝାଲମୁଢ଼ି କିଣିଲି । ଦୁଇଟି ଠୁଙ୍ଗା ଛୁଆଙ୍କୁ ଦେଇ ନିଜେ ଗୋଟିଏ ଠୁଙ୍ଗାରୁ ଖାଇବା ଆରମ୍ଭ କଲି । ଦୁର୍ଗାପୁରରେ ପହଞ୍ଚିଲା ପରେ କାହାକୁ କାହାକୁ ଭେଟିବା ଠିକ୍ ହେବ, ମୁଢ଼ି ଖାଉଖାଉ ମୁଁ ଯୋଜନା ତିଆରି କଲି । ପହଞ୍ଚିଲା ପରେ ସବା ଆଗ ବାପାଙ୍କ ପାଖକୁ ଯିବି । କୁଆଡ଼େ ସେ ଆଗରୁ ଯେଉଁଠି ରହୁଥିଲେ, ଆଜିକାଲି ସେଠି ରହୁନାହାନ୍ତି । ରିଟାୟାର୍ଡ଼ କଲା ପରେ ଏବେ ବୋଧହୁଏ ଆମ୍ବେଦକର କଲୋନୀରେ ରହୁଛନ୍ତି ।

ଷ୍ଟେସନ୍‌ରୁ ବେଶି ଦୂର ନୁହେଁ । ଟାଉନ୍ ବସ୍‌ରେ ଯାଇହେବ । କିନ୍ତୁ ବସ୍‌ରୁ ଓହ୍ଲାଇ ପୁଣି ରିକ୍ସା ନେବାକୁ ପଡ଼ିବ । ବସ୍ କଲୋନୀ ଭିତର ଯାଏ ଯିବନି । ତା'ଠାରୁ ଭଲ, ରେଳଷ୍ଟେସନ୍‌ରୁ ହିଁ ରିକ୍ସା ନେଇଯିବା । ଆଉ ଏକ ସମସ୍ୟା ହେଲା ଯେ, କଲୋନୀର କେଉଁ ନିର୍ଦ୍ଦିଷ୍ଟ ଘରେ ବାପା ରହୁଛନ୍ତି, ତା' ମତେ ଜଣାନାହିଁ । ମୋର ଭାଉଜଙ୍କ ମାମୁଙ୍କ ଘରକୁ ଗଲେ ସେଇଠି ବାପାଙ୍କ ରହିବା ଠିକଣା ଜଣା ପଡ଼ିଯିବ ।

ଝାଲମୁଢ଼ି ଖାଇଲା ପରେ ଚା' ପିଇଲି । ଏ ସବୁ ଖାଇବା ପିଇବା ଭିତରେ ରାତି ହୋଇଗଲା । ଅର୍ଥାତ୍ ରାତ୍ରି ଭୋଜନର ସମୟ । ଆଖପାଖ ସିଟ୍‌ର ଯାତ୍ରୀ ଖାଇବାରେ ଲାଗିଥିଲେ । ମୁଁ ବି ପିଲାଙ୍କୁ ଖୋଇଦେଲି । ସେମାନେ ଶୋଇବାକୁ ଗଲେ । ନିଜେ ଖାଇଲି ନାହିଁ । ଲୋକଙ୍କ ଖାଇବା ସମୟରେ ମୁଁ ପୁଣି ଚା' ପିଇବାକୁ ଲାଗିଲି । ସ୍ଥିର କଲି, କିଛି ସମୟ ପରେ ଖାଇବି । ନିଜ ସିଟ୍‌ରେ ମୁଁ ବସି ରହିଲି । ଶୋଇଯିବା ଭଳି ନିଦ ବି ମାଡ଼ୁ ନଥିଲା । ପିଲାଏ ଅଲଗା ଅଲଗା ବର୍ଥରେ ଶୋଇଥିଲେ । ମୁଁ କେବେ ନିଜ ବର୍ଥରେ ଗଡ଼ୁଥିଲି ତ କେବେ ବସି ପଡ଼ୁଥିଲି, ପୁଣି ଝରକା ଖୋଲି କେବେ ବାହାରକୁ ଦେଖୁଥିଲି । ବାହାରେ ଘନ ଅନ୍ଧକାର, କାହିଁ କେଉଁଠି ପୁ'ଣି ପ୍ରଜ୍ୱଳିତ ବିଜୁଳି ବତି । ଯେତେବେଳେ ଷ୍ଟେସନ୍‌ରେ ଟ୍ରେନ୍ ରହେ, ମୁଁ ନୂଆ ଯାତ୍ରୀଙ୍କୁ ଗୋଟି ଗୋଟି କରି ଗଣେ । କେତେ ଯାତ୍ରୀ ଓହ୍ଲେଇଗଲେ ସେମାନଙ୍କୁ ବି ମନେ ମନେ ଗଣେ । ରାତିସାରା ମୁଁ ଏଇଆ କରୁଥିଲି । ଚା' ଚା' ବୋଲି ଡାକ ଛାଡ଼ୁଥିବା ଚା'ବାଲାମାନେ ପ୍ଲାଟଫର୍ମରେ ବୁଲୁଥିଲେ । ଯେତେ ଥର ଚା'ବାଲା ମୋ ସାମ୍ନାକୁ ଆସେ, ସେତେ ଥର ମୁଁ ଚା' ପିଏ । ସେମାନଙ୍କ ଡାକ ଶୁଣିବାକୁ ମତେ ଭଲଲାଗେ ।

ରାତି ଅନେକ ହେଲା । ଦରମେଲା ଝରକା ଉପରେ ମୁଣ୍ଡ ରଖି ମୋର ଆଖି ଲାଗିଗଲା । ଘରେ ଯେଉଁ ଆରାମରେ ଶୋଇବାକୁ ମିଳେ, ତା' କି ଆଉ ଟ୍ରେନ୍‌ରେ ମିଳିପାରିବ ? ମୋର ଆଖି ଲାଗିଯାଇଥାଏ । ଏତେବେଳକୁ କେହି ଜଣେ ବଡ଼ ପାଟିରେ କହିଲେ, "ମେଡ଼ମ୍ ଏ ମେଡ଼ମ୍ । ଆପଣ ଝରକା ଖୋଲିଲେ କାହିଁକି ? ଥଣ୍ଡା ପବନ ଭିତରକୁ ଆସୁଛି । ଆପଣଙ୍କ ପିଲାଙ୍କୁ ଥଣ୍ଡା ଧରିବ ।" ମୁଁ ଧଡ଼୍‌କରି ଝରକା ବନ୍ଦ କଲି । ବାରମ୍ବାର ହାତଘଡ଼ିକୁ ଚାହୁଁଥାଏ । ସକାଳ କେତେବେଳେ ହେବ ଯେ ! ଏଥର ନିଦ ଭାଙ୍ଗିଲା ପରେ ଆଉ ନିଦ ଆସିଲାନି । ସାଲ୍‌ଟିକୁ ଦେହରେ ଘୋଡ଼ି ଚୁପ୍‌ଚାପ୍ ବସିଲି । ଚାରି ବର୍ଷ ତଳେ ଆସିଥିଲି ମୁଁ । କେମିତି ବସିଥିଲି ଡବାର କୋଣ ଗୋଟାକରେ । ସିଟ୍‌ରେ ବସିବା ତ ଦୂରର କଥା, କେହି ମୋ ଆଡ଼କୁ ଅନାଉ ନଥାନ୍ତି । ସେତେବେଳେ ମୋର ଛୁଆଙ୍କୁ ଡେଇଁ କେହି ଯାଉଥାଏ ତ କେହି ଉପେକ୍ଷାବଶତଃ ମତେ ଆଘାତ ଦେଉଥାଏ । ମୁଁ ମୂର୍ଖ, କାହାକୁ କିଛି କହିପାରୁ ନଥାଏ । ଆଉ ଆଜି ? ଆଜି ଲୋକ ମୋତେ ମେଡ଼ମ୍ ବୋଲି ସମ୍ବୋଧନ କରୁଛନ୍ତି । 'ସରି' କହି କ୍ଷମା ମାଗୁଛନ୍ତି । ତିନି ତିନିଟି ସିଟ୍ ରିଜର୍ଭ କରିଛି ମୁଁ । କେହି ସିଟ୍ ଛାଡ଼ିବାକୁ କହୁନାହାନ୍ତି । ଟିଟି କହୁନି, 'ଏଇ ବଗିରେ କେମିତି ଚଢ଼ିଲୁ ? ଏତେ ଟଙ୍କା ଫାଇନ୍ ଦେବାକୁ ପଡ଼ିବ ।' ଟିଟି ଆସି ଟିକେଟ୍ ଚେକ୍ କରିବାକୁ ମାଗିବାରୁ ବିନା ଦ୍ୱିଧାରେ ମୁଁ ବେଗରୁ ଟିକେଟ୍ କାଢ଼ି ଦେଖାଇ ଦେଉଛି । କେହି କିଛି ଓଲଟା ସିଧା କହିବାକୁ ସାହସ କରୁନାହାନ୍ତି । ସେତେବେଳେ କେହି ବସିବାଲାଗି ସିଟ୍ ଦେଉ ନଥିଲେ । ଆଜି କାହାକୁ ସିଟ୍

ନପାଇ ଛିଡ଼ା ହେବାର ଦେଖିଲେ ମତେ ଖରାପ ଲାଗୁଛି । ଜାଗା ଟିକେ ଦେଇ ତାକୁ ମୁଁ କହୁଛି, "ଛିଡ଼ା କାହିଁକି ହେଲେ ? ବସି ପଡ଼ନ୍ତୁ ।" ସିଟ୍‌ରେ ବସିବାଲାଗି ଜାଗା ଟିକିଏ ପାଇଲା ପରେ ମୋ ସାଙ୍ଗରେ ସେମାନେ କେତେ ଭଲରେ କଥାବାର୍ତ୍ତା କରୁଛନ୍ତି । ସେତେବେଳେ ତ ମୋ ସାଙ୍ଗରେ କେହି ପଦଟିଏ କଥା ବି କହୁନଥିଲେ । ଏମିତି ଅନେକ କଥା ଭାବି ଚାଲିଥିଲା ବେଳେ କେଉଁ ଏକ ଷ୍ଟେସନ୍‌ରେ ଗାଡ଼ି ରହିଲା । ମୁଁ ଝରକା ଖୋଲିଲି । ଚା' ବାଲାଟିଏ ଚା' ଚା' କହି ଡାକ ଛାଡୁଛି । ମୁଁ ହାତଘଡ଼ିକୁ ଅନାଇଲି ।

ରାତି ବାରଟା ବାଜିବାକୁ ବସିଲାଣି । ଚା' ବାଲାକୁ ପଚାରିଲି, "କୋଉ ଷ୍ଟେସନ୍ ଏଇଟା ?" ସେ କହିଲା, "କାନପୁର" । ଦୁର୍ଗାପୁରରୁ ଦିଲ୍ଲୀ ଆସୁଥିବା ବେଳେ ଏହି ଷ୍ଟେସନରେ ପହଞ୍ଚିଲା ବେଳକୁ ମୋ ପାଖରେ ପାଣି ମୁନ୍ଦେ ନଥାଏ । ଘରୁ ଆଣିଥିବା ପାଣି ସରିଯାଇଥାଏ । ବୋତଲେ ପାଣି କିଣିବାକୁ ସାମର୍ଥ୍ୟ ନାହିଁ । ଷ୍ଟେସନରେ ଟ୍ରେନ୍ ସେଦିନ ଅନେକ ବେଳ ଯାଏଁ ଅଟକିଲା । ହେଲେ କାଳେ ଛାଡ଼ିଦେବ- ଏହି ଭୟରେ ଗାଡ଼ିରୁ ଓହ୍ଲାଇ ନଳରୁ ପାଣି ଭର୍ତ୍ତି କରିବାକୁ ସାହସ ହେଉ ନଥାଏ । ଆଜି ତ ମୁଁ ସିଟ୍‌ରେ ବସି ବସି ବୋତଲ ପାଣି କିଣି ନେଉଛି । ଟ୍ରେନ୍ ନଛାଡୁଣୁ ଚାରି ଜଣ ପୋଲିସ୍ ବଗି ଭିତରକୁ ପଶିଲେ । ବଗି ଭିତରେ ବୁଲୁ ବୁଲୁ ମୋତେ ପଚାରିଲେ, "ଆପଣ ବସିଛନ୍ତି କାହିଁକି ? ଶୋଇଯାଇ ନାହାନ୍ତି ? ମୁଁ କହିଲି, "ନିଦ ଆସୁନି ।" ଆଜି ପୋଲିସ୍‌କୁ ଦେଖିଲେ ଡର ମାଡୁନି । ବରଂ ସାହସ ବଢୁଛି । ସେତେବେଳେ ପୋଲିସ୍‌କୁ ଦେଖି ମୁଁ ଛାନିଆଁ ହୋଇପଡୁଥିଲି । ମତେ ଲାଗୁଥିଲା, ଏବେ ତ ଟିଟି ଗାଳି ଫଜିତ କରିକି ଗଲା । ଏହି ବଗିରେ କେମିତି ଆସିଲ ? ପଇସା ଦିଅ । ଏଇଟା କର । ସେଇଟା କର । ଏବେ ପୁଣି ପୋଲିସ୍ । ପୋଲିସ୍ ଯଦି ମୋତେ ବାନ୍ଧିନିଏ, ମୋର ପିଲାଙ୍କର କ'ଣ ହେବ ? କିଏ ସେମାନଙ୍କୁ ଦେଖିବ ?

ଏହି ସବୁ ଚିନ୍ତା କରିକରି ରାତି ବିତିଗଲା । ଭୋର ଚାରିଟାରେ ଭାବିଲି, ସୂର୍ଯ୍ୟ ଉଦୟ ହେଲେ ତାକୁ ଆଗକରି ଆଜି ଦେଖିବି । କେତେ ଖୁସି ମୋ ମନରେ । ସକାଳର ଚା' ପିଇଲି । ଜଣେ ଦୁଇ ଜଣ ଯାତ୍ରୀଙ୍କର ନିଦ ଭାଙ୍ଗିଲାରୁ, ସେମାନେ ଉଠି ଏପଟ ସେପଟ ଦେଖି ପୁଣି ଶୋଇଗଲେ । ମୁଁ ଚା' ପିଇ ପିଇ ବାହାରକୁ ଅନାଉଥାଏ । ଧୀରେଧୀରେ ଲୋକ ନିଦରୁ ଉଠିଲେ । ବାଥ୍ ରୁମ୍‌ରୁ ମୁହଁହାତ ଧୋଇ ପୁଣି ଆସି ସିଟ୍‌ରେ ବସିଗଲି । ଭୋର ବେଳା । ନାଲିନାଲି ଆକାଶକୁ ଚାହିଁ ମନ କହୁଥାଏ ଦୌଡ଼ି ଦୌଡ଼ି ଯାଇ ତାକୁ ଛୁଇଁ ଆସନ୍ତି କି ! ମଝିରେ ମଝିରେ ସୂର୍ଯ୍ୟ ବଡ଼ ବଡ଼ ଗଛ ଓ ଅନେକ ଛୋଟବଡ଼ ପାହାଡ଼ ପଛରେ ଲୁଚି ଯାଉଛନ୍ତି । ଭୋର ବେଳାରେ ନିଶୂନ କ୍ଷେତ ଧୂମିଳ ଦିଶୁଥାଏ । କାହିଁ କେଉଁଠି କୃଷକ କ୍ଷେତରେ ପହଞ୍ଚିଗଲେଣି । କେତେ ଜାଗାରେ ଲୋକେ ଝାଡ଼ା ଫେରିବାକୁ ବସିଛନ୍ତି, ଟ୍ରେନ୍ ଲାଇନ୍ ଉପରେ ବି । ଜାଣି, ସେମାନଙ୍କୁ ଛୁଇଁ ଟ୍ରେନ୍ ଗଡୁଛି । ଟ୍ରେନ୍ ଦେଖି ନା ସେମାନେ ଡରୁଛନ୍ତି, ନା ଉଠି ଚାଲିଯାଉଛନ୍ତି । ରେଳ ଲାଇନ୍ ପାଖରେ ରହୁଥିବେ । ସବୁ କିଛି ତାଙ୍କ ଅଭ୍ୟାସରେ ପରିଣତ ହୋଇଗଲାଣି ।

ପିଲାଏ ନିଦରୁ ଉଠି ମୋ ପାଖରେ ବସିଗଲେ । ଝିଅ କହିଲା, "ମା' ତୁ କେତେବେଳୁ ଉଠିଲୁଣି ? ମୁଁ କୌଣସି ଉତ୍ତର ନ ଦେଇ କେବଳ ତା' ମୁହଁକୁ ଚାହିଁ ହସିଦେଲି । ମୋ ମୁହଁରେ

ହସ ଦେଖି ପିଲାଏ ସ୍ନେହାତୁର ହୋଇପଡ଼ନ୍ତି । ଭାବନ୍ତି ବୋଧେ, ମା' ଏବେ ଖୁବ୍ ଖୁସୀ ଅଛି । ଯାହା ମାଗିଲେ ମିଳିଯିବ । ମନ ଉଦାସ ଥିଲେ, ମୋ ଚେହେରାରୁ ସେମାନେ ଅନୁମାନ କରିନିଅନ୍ତି । କିଛି ନ କହି ଚୁପ୍‌ଚାପ୍ ନିଜ ନିଜ କାମରେ ଲାଗିପଡ଼ନ୍ତି । ମୋ ଝିଅର କଥା ଶୁଣି ମୋତେ ହସ ମାଡ଼ିଲା । ସେ ଭାବୁଛି, ମା' ରାତି ସାରା ଶୋଇଛି । ସେଥିପାଇଁ ପଚାରିଲା, କେବେ ଉଠିଲୁ ? ଯାହାହେଉ, ସେ କିଛି ଜିଦ୍ କରୁନଥାଏ । ଗେଲ ହେଇ କହିଲା, "ମମି ସୁସୁ କରିବି ।" ମୁଁ ତାକୁ ବାଥ୍ ରୁମ୍‌ର ବାଟ ବତେଇ ଦେଲି । ସେ ବାଥ୍ ରୁମ୍‌ରୁ ଫେରି ଭାଇ ସାଙ୍ଗରେ କଳି ଆରମ୍ଭ କରିଦେଲା । ଦୁହେଁ ଚାହାନ୍ତି, ଝରକା କଡ଼ରେ ବସିବେ । ସେମାନଙ୍କ କଳି ଦେଖି କହିଲି, "ଝରକା ପାଖରେ ମୁଁ ବସିବି । ଆଉ କେହି ବସିବେ ନାହିଁ ।" ସକାଳୁ ଝରକା ପାଖରେ ବସିବାକୁ ପିଲାଙ୍କ ଅପେକ୍ଷା ମୋର ଅଧିକ ଆଗ୍ରହ। ସେମାନଙ୍କ ଅପେକ୍ଷା ବୋଧହୁଏ ମୁଁ ଅଧିକ ଆନନ୍ଦ ପାଏ । ଦିନ ବଢ଼ିବାକୁ ଲାଗିଲା । ପିଲାଙ୍କ ଜଳଖିଆ ସମୟ ହୋଇଗଲାଣି। ବିକାଳି ଜଣେ କେକ୍ ବିସ୍କୁଟ୍ ଡାକି ଡାକି ଆସୁଥାଏ । ଦୁଇଟି କେକ୍ କିଣି ମୁଁ ପିଲାଙ୍କୁ ଦେଲି । ଟ୍ରେନ୍ ଏତିକି ବେଳକୁ କେଉଁ ଏକ ଷ୍ଟେସନ୍‌ରେ ପହଞ୍ଚିଲା । ପ୍ଲାଟଫର୍ମର ଏକ ଦୋକାନରେ ବାଉଲ୍ ଗୀତର ରେକର୍ଡ଼ ବାଜୁଥାଏ । ବଙ୍ଗଳା ବାଉଲ୍ ଗୀତ ଶୁଣି ଅନୁମାନ କଲି, ଦୁର୍ଗାପୁର ପହଞ୍ଚିବାକୁ ଆଉ ବେଶି ଡେରି ନୁହେଁ। ଏଥର ରେଳଗାଡ଼ି ଖୁବ୍ ଜୋର୍‌ରେ ଚାଲୁଥାଏ । ହଠାତ୍ ଅନ୍ଧାର ହୋଇଗଲା । କିଛି ବେଳ ପରେ ଅନ୍ଧାରରୁ ଯାଇ ଗାଡ଼ି ଆଲୁଅରେ ଚାଲିଲା । ହଠାତ୍ ରେଳଗାଡ଼ି ଅନ୍ଧାରକୁ ଯିବା ଦେଖି ପିଲାଙ୍କ ପରି ମୁଁ ବି ଡରିଗଲି । ସେମାନେ ପଚାରିଲେ, "କ'ଣ ଏମିତି ହେଲା ?" ମୁଁ କିଛି କହିବା ପୂର୍ବରୁ ପାଖରେ ବସିଥିବା ସୁଖେନ୍ଦୁ ବୁଝେଇ ଦେଲା, "ଏଇଟା ଗୋଟିଏ ସୁଡ଼ଙ୍ଗ ଗଲା । ପାହାଡ଼ ଭିତରେ ରେଳପାଇଁ ରାସ୍ତା ତିଆରି କରାଯାଇଛି । ତା'ରି ଭିତର ଦେଇ ଗାଡ଼ି ଯାଏ ।" ସୁଖେନ୍ଦୁ କଥା ଶୁଣି ମତେ ଖୁବ୍ ଆଶ୍ଚର୍ଯ୍ୟ ଲାଗିଲା । ସୁଡ଼ଙ୍ଗ କଥା ଆଗରୁ ଶୁଣିଥିଲି; ଦେଖି ନଥିଲି । ସୁଖେନ୍ଦୁ ସୂଚନା ଦେଲା, "ଆଗକୁ ଆହୁରି ଅନେକ ସୁଡ଼ଙ୍ଗ ପଡ଼ିବ । ତା'ର କଥା ନ ସରୁଣୁ ପୁ'ଣି ଅନ୍ଧକାର ଘୋଟି ଆସିଲା । ଅନ୍ଧାର ଓ ଆଲୁଅର ଏହି ଲୁଚକାଳି ଖେଳ ଅନେକ ଥର ଚାଲିଲା ।

ଜଣେ ଫେରିବାଲା "ବହି ନିଅ ବହି, ଗପ ବହି" କହି ଆସିବାରୁ ମୁଁ ତାକୁ ପାଖକୁ ଡାକିଲି ଏବଂ ଦଶଦଶ ଟଙ୍କାର ଦୁଇଟି ପତଳା ବହି କିଣିଲି । ପିଲାଙ୍କ ପାଇଁ ହିନ୍ଦୀ ବହି । ତେଣିକି ମୋ ପାଇଁ ଗୋପାଳ ଭାଣ୍ଡଙ୍କ ଗୋଟିଏ ବଙ୍ଗଳା ବହି ନେଲି । ଏବେ ବହି ପଢ଼ିବି ନା ବାହାରର ଦୃଶ୍ୟ ଦେଖିବି ! ବହି ହାତରେ ନେଇ କେବେ ବାହାରକୁ ଦେଖୁଛି ତ କେବେ ପୃଷ୍ଠା ଓଲଟାଉଛି । ମଝିରେ ସୁଖେନ୍ଦୁ ସିଟ୍‌ରୁ ଉଠି ବାଥ୍ ରୁମ୍ ବା ଆଉ କୁଆଡ଼କୁ ଗଲା । ସୁଯୋଗ ଉଣ୍ଡି ମୋ ପୁଅ ତା' ଜାଗାରେ ଯାଇ ବସିଲା । ସୁଖେନ୍ଦୁ ଆସିବାରୁ ମୁଁ ପୁଅକୁ ତା' ଜାଗା ଛାଡ଼ିଦେବାକୁ କହିଲି । ମାତ୍ର ସୁଖେନ୍ଦୁ ମନାକଲା । କହିଲା, "ବସିଥାଉ" । ଏଥର ବହିଟିକୁ ସିଟ୍ ଉପରେ ରଖିଦେଇ ମୁଁ ବାଥ୍ ରୁମ୍ ଗଲି । ଫେରିଲାରୁ ଦେଖିଲି, ସୁଖେନ୍ଦୁ ବହିଟାକୁ ଓଲଟାଉଛି । ମୋତେ ଦେଖି ସେ ବହିଟିକୁ ଫେରାଇଦେବାକୁ ଚାହିଁଲା । ମୁଁ କହିଲି, "ନା ଆପଣ ପଢ଼ନ୍ତୁ" । ମୁଁ ତ ଘରକୁ ଗଲେ ବି ପଢ଼ିପାରିବି । ସେ ମାନିଲା ନାହିଁ । "ମୁଁ ବେଶି ବଙ୍ଗଳା ପଢ଼େନା" କହି ବହିଟିକୁ ଫେରାଇଦେଲା।

ମୁଁ ପଚାରିଲି, ''ଆପଣ କେଉଁ ଭାଷାରେ ବହି ପଢ଼ନ୍ତି ?'' ''ପଢ଼େ ଯେ ବହୁତ କମ୍ । ବିଶେଷକରି ମୁଁ ଇଂରାଜୀ ଲେଖା ବହି ପଢ଼େ ।'' ମୁଁ କହିଲି, ''ରୁହନ୍ତୁ, ମୁଁ ଆପଣଙ୍କୁ ବହିଟିଏ ଦେବି । ଆପଣ ଆରାମରେ ତାକୁ ଦେଖନ୍ତୁ । ବଙ୍ଗଳାରେ ଲିଖିତ ଏବଂ ହିନ୍ଦୀରେ ଅନୂଦିତ ମୋର ପୁସ୍ତକ 'ଆଲୋ-ଆନ୍ଧାରି' ତାକୁ ଦେଲି । ଠିକ୍ ଏହି ସମୟରେ କେତେ ଜଣ ହିଂଜଡ଼ା ତାଳି ବଜାଇ ବଜାଇ ଆମ ବଗି ଭିତରେ ପଶିଲେ । ଜଣେ ତନ୍ମଧ୍ୟରୁ ସୁଖେନ୍ଦୁର ମୁଣ୍ଡ ଉପରେ ହାତ ରଖି ନମସ୍କାର କଲା ଏବଂ ପଇସା ମାଗିଲା । ସୁଖେନ୍ଦୁ ଚଟ୍ କରି ତା' ହାତରେ ପାଞ୍ଚ ଟଙ୍କା ଦେଇ ବିଦା କରିବାକୁ ଚେଷ୍ଟା କଲା । ସେମାନେ ଜୋର୍ ଜୋର୍‌ରେ ତାଳି ମାରୁଥାନ୍ତି ଏବଂ ଲୋକଙ୍କ ପାଖରୁ ଯାହା ମିଳିଲା, ତାକୁ ନେଇ ଖୁସିରେ ଆଗକୁ ବଢ଼ନ୍ତି । ଅନେକ ଜାଗାରେ କିନ୍ତୁ ଦେଖାଯାଏ, କାହାରି ଘରେ ଛୁଆ ଜନ୍ମ ହେବାର ଶୁଣି ହିଂଜଡ଼ାମାନେ ପହଞ୍ଚି ଯାଆନ୍ତି ଏବଂ ସାନଛୁଆକୁ କୋଳରେ ନେଇ ତାଳିମାରନ୍ତି, ଗୀତ ଗାଆନ୍ତି । ତାଙ୍କ ମଧ୍ୟରୁ ଜଣେ ଢୋଲ ବଜାଏ; ଛୁଆକୁ ଖେଳାଏ; ମା'ଠାରୁ ତେଲ ନେଇ ତା' ମୁଣ୍ଡରେ ଚୁପୁଡ଼ି ଦିଏ । କୋଳର ଛୁଆକୁ ସେ ଏତେ ତଳ ଉପର କରି ନଚାଏ ଯେ ଡର ମାଡ଼ିଯାଏ, କାଳେ ଛୁଆଟି ହାତରୁ ଖସି ତଳେ ପଡ଼ିଯିବ । ମାତ୍ର ସେମାନଙ୍କ ମନରେ ଆଦୌ ଡର ନଥାଏ । ଛୁଆଙ୍କୁ ନଚେଇ ନଚେଇ ସେମାନଙ୍କର ଅଭ୍ୟାସ ହୋଇଯାଇଥାଏ । ଗୀତ ଗାଇ ଛୁଆଙ୍କୁ ନଚେଇବା ପରେ ସେମାନେ ଛୁଆଙ୍କ ଭଳି ଜିଦ୍ କରିବସନ୍ତି । ପଇସା ଦିଅ, କପଡ଼ା ଦିଅ, ଏଇଟା ଦିଅ, ସେଇଟା ଦିଅ । ସେମାନଙ୍କ ଜିଦ୍ ପୂରଣ କରି ନପାରିଲେ, ଅବସ୍ଥା ଖରାପ ହୋଇଯାଏ । ମୁହଁରୁ ଯାହା ବାହାରିଲା ବକିଯିବେ । ତା' ପରେ ବି ରକ୍ଷା ନାହିଁ । ମୁହଁକୁ ବିକୃତ କରି ଅଭଦ୍ର କଥା କହିବେ; ଅଂଗଭଙ୍ଗୀ ପ୍ରଦର୍ଶନ କରିବେ । ଶୁଣି ହେବନି । ଯୁବତି ଝିଅ ତ ମୁହଁରେ ଲୁଗା ଢାଙ୍କି ପଳାଇବେ । ସେଇଥିପାଇଁ ଅନେକ ଲୋକ ଲାଜ ଓ ଭୟରେ ହିଂଜଡ଼ାମାନଙ୍କୁ ଯାହା ସମ୍ଭବ ଦେଇ ବିଦା କରିଦିଅନ୍ତି । ହେଲେ ଏ ସବୁ ହେଲା ଗାଁର ଦୃଶ୍ୟ । ରେଳଗାଡ଼ିରେ ସେମାନେ କୌଣସି ଉତ୍ପାତ କରୁନଥିଲେ । ସୁଖେନ୍ଦୁ ପାଖରୁ ଟଙ୍କା ମିଳିବା ପରେ ସୁଖେନ୍ଦୁ, ମୋର ଓ ମୋର ଛୁଆମାନଙ୍କ ମୁଣ୍ଡରେ ହାତରଖି ଆଶୀର୍ବାଦ କରି ଗଲେ । ଭାବିଲେ ବୋଧେ, ଆମେ ସବୁ ସମ୍ବନ୍ଧୀୟ, ଅନ୍ୟଥା ମତେ ବି ପଇସା ମାଗିଥା'ନ୍ତେ । ଛାଡ଼, ଭ୍ରମରେ କେହି କ'ଣ ବି ଭାବିପାରେ ।

ସୁଖେନ୍ଦୁ ହିଂଜଡ଼ାମାନଙ୍କୁ ପଇସା ଦେଲା ପରେ ପୁଣି ମୋର ପୁସ୍ତକଟିକୁ ପଢ଼ିବାରେ ଲାଗିଲା । ଦୁଇ ତିନି ପୃଷ୍ଠା ପଢ଼ିବା ପରେ କହିଲା, ''ବହିଟି ତ ନୂଆ, କ'ଣ କଲିକତାରେ ମିଳିବନି ?'' ମୁଁ କହିଲି, ''ଦୋକାନ ତ ମୁଁ କହି ପାରିବିନି, ମାତ୍ର ବହିମେଳାରେ ଖୋଜିଲେ ନିଶ୍ଚୟ ମିଳିଯିବ ।'' ସୁଖେନ୍ଦୁ ପୁ'ଣି ପଚାରିଲା, ''ଆପଣ ବହିଟିକୁ କେଉଁଠୁ କିଣିଥିଲେ ?'' ମୁଁ କିଛି ନକହି ସାମାନ୍ୟ ହସି ଦେବାରୁ ସେ ପଚାରିଲା, ''ଆପଣ ହସିଲେ କାହିଁକି ?'' ମୁଁ ଉତ୍ତର ଦେଲି, ''ହସିବି ନାହିଁ ? ବହିର ଲେଖିକା ପରା ମୁଁ ।'' ସୁଖେନ୍ଦୁ ଅବାକ୍ ହେଇ ପଚାରିଲା, ''ଆପଣ ଲେଖିଛନ୍ତି ?'' ମାତ୍ର ବହିଟି ତ ହିନ୍ଦୀରେ । ଆପଣ କ'ଣ ହିନ୍ଦୀରେ ବି ଲେଖାଲେଖି କରନ୍ତି ?'' ମୁଁ କହିଲି, ''ନା ନା, ବଙ୍ଗଳା ପାଣ୍ଡୁଲିପିର ଏହା ହିନ୍ଦୀରେ ରୂପାନ୍ତର ।'' ସୁଖେନ୍ଦୁ କହିଲା, ''ଆଚ୍ଛା, ଆଚ୍ଛା । ହେଲେ

ଆପଣଙ୍କ ଝିଅ ବାପାର ଯେଉଁ ସାଙ୍ଗିଆ କହିଲା, ତା' ତ ଏହି ଲେଖିକାର ସାଙ୍ଗିଆଠାରୁ ଅଲଗା'' । ଏହାର କୌଣସି ଜବାବ ନ ଦେଇ ମୁଁ କେବଳ ସାମାନ୍ୟ ହସିଦେଲି । ପୁଅମାନଙ୍କ ସାଙ୍ଗିଆ ବାହାଘର ପରେ ବି ଅତୁଟ ରହେ, ମାତ୍ର ଝିଅର ସାଙ୍ଗିଆ ବାହାଘର ପରେ ବଦଳିଯାଏ । କାହିଁକି ? ପତିଠାରୁ ଅଲଗା ରହିଲା ପରେ ମୋର ବିଚାର ଆଉ ପୂର୍ବଭଳି ନଥିଲା । ଏବେ ମୁଁ ମୋର ନିଜ ଇଚ୍ଛା ଅନୁସାରେ ରହିବାକୁ ଚାହେଁ । ଏକାକୀ ଅଛି, କିନ୍ତୁ ଭଲରେ ଅଛି । ପୁଣି ମୋତେ ମୋ ପତିର ସାଙ୍ଗିଆର ବା କ'ଣ ଆବଶ୍ୟକତା ପଡ଼ିବ ଯେ ? ଏହି କାରଣରୁ ମୁଁ ନିଜ ସାଙ୍ଗିଆକୁ ବଦଳେଇ ନାହିଁ । ଆଜି ଯେତେ ଲୋକ ମୋତେ ମୋ ନିଜ ସାଙ୍ଗିଆରେ ଜାଣନ୍ତି, ସେତିକି ଲୋକ ମୋ ପତିର ସାଙ୍ଗିଆରେ ଜାଣନ୍ତି ନାହିଁ ।

ଏବେ ମୁଁ ବାରମ୍ବାର ହାତଘଡ଼ିକୁ ଅନାଉଥିଲି । ଦୁର୍ଗାପୁର ଆସିବ ଏବେ । ମୁଁ ବାପାଙ୍କୁ ଯାଇ ଭେଟିବି । ଭାରି ଖୁସି ଲାଗୁଥିଲା ମତେ । ଖରାବେଳର ଖାଇବାକୁ ନେଇ ବଗିରେ ହୋହଲ୍ଲା ଆରମ୍ଭ ହୋଇଗଲାଣି । ପିଲାଙ୍କୁ ଖୋଇବାର କୌଣସି ଆବଶ୍ୟକତା ନାହିଁ । ବାଟସାରା ତ ତାଙ୍କର କିଛି ନା କିଛି ଖିଆପିଆ ଚାଲିଛି । ସିଧା ବାପାଙ୍କ ଘରେ ପହଞ୍ଚିଲେ ଯାଇ ଖାଇବା କଥା ଉଠିବ । ମତେ ଦେଖି ବାପା କେତେ ଖୁସି ହେବେ । କେତେ ଖୁସିରେ ଖୋଇଦେବେ । ନିଜ ଥାଳିରୁ ମାଛ ଆଉ ମାଂସର ପିସ୍ ଦେଇ କହିବେ, ଖା ମା', ଖା । ସେଠି କ'ଣ ଖାଉଛୁ ଯେ ଜାଣି ହେଉନି । ମୁଁ ଖାଇସାରି ଉଠିଲା ବେଳକୁ କହିବେ, ''ଆ, ମୋ ଥାଳିରୁ ଟିକେ ନେଇ ଯା'' । ମତେ ନ ଦେଖୁଣୁ କହିବେ, ''ବାପା କଥା ମନେ ପଡ଼ିଲା ନା ମା ? କହୁ କହୁ ଲୁହରେ ତାଙ୍କ ଆଖିପତା ଜକେଇ ଆସିବ । ଆଉ ମୋର ବର ଶଙ୍କର ହାବୁଡ଼ରେ ପଡ଼ିଯାଏ ଯଦି ? ଆଗ ପରି ସେ ଲୋକଙ୍କ ଆଗରେ ମୋ ଚୁଟିଧରି ରାସ୍ତାରେ ଟାଣି ଟାଣି ମାରିବ ନାହିଁ ତ ? ଏ ଶାଳି ! କହି ଗୋଡ଼ାଇବ ନାହିଁ ତ ? ନା ନା ସେପରି କିଛି ହେବାର ଭୟ ଏବେ ନାହିଁ । ହୁଏତ ଏବେ ସେ ବେବିକୁ ଡରିବ । ନା ନା, ଭୟ କାହାକୁ ଯେ ! ବେବି କ'ଣ ବାଘ ନା ଭାଲୁ ଯେ ତାକୁ ଖାଇଯିବ ! ହୁଏତ ସେ ଭାବୁଥିବ, ବେବି ଆଉ ଆଗ ଭଳି ଡରୁଆ ନୁହେଁ ଯେ ଯାହା କହିଲେ ସହିଯିବ । ମତେ ଛାଡ଼ି ଆରାମରେ ଶାଳୀ ମଜା କରୁଛି । ଏଥର ମୁଁ ବି ତାକୁ ଦେଖାଇଦେବି, ତାକୁ ଛାଡ଼ି ମୁଁ ଓ ମୋ ପିଲାଏ କେତେ ସୁଖରେ ଅଛୁଁ । ଆଉ କ'ଣ ସେଇ ପଡ଼ାକୁ ଯିବି ? ଛି, ସେ ଗନ୍ଧିଆ ପରିବେଶକୁ କେବେ ଯିବିନି । ସେଠି ସମସ୍ତେ ମତେ ଦେଖି କହିବେ, ''ଦେଖ, ବଦମାସ ମାଇକିନା ପୁ'ଣି ଏଠିକି ଆସିଛି । ପଡ଼ାର ଅନେକ ଝିଅ ମତେ ଦେଖି ଫୁସ୍‌ଫୁସ୍ କଥାବାର୍ତ୍ତା ହେବେ । ଅବଶ୍ୟ ସେଥିରେ ମୋର ବା କ'ଣ ଯାଏ ଆସେ ଯେ ! ତଥାପି ଅଜବ ଲାଗେ । ଯାହା ବି ହେଉ, ଶଙ୍କରକୁ ତ ଥରେ ଭେଟିବାକୁ ପଡ଼ିବ । ତା'ର ସନ୍ତାନଯାକ ମୋ ପାଖରେ । ପଡ଼ାକୁ ଯାଇ କେବଳ ଷଷ୍ଠୀକୁ ଥରେ ଭେଟି ଫେରି ଆସିବି । ସବା ଆଗ ତା' ଘର ପଡ଼େ । ଅନ୍ୟ କାହାକୁ ମୁହଁ ନ ଦେଖାଇ ସେଠୁ ଫେରିଆସି ହେବ ।

ସୁଖେନ୍ଦୁ ମୋ ବହିର କେତୋଟି ପୃଷ୍ଠା ପଢ଼ିସାରି କହିଲା, ''ବେବି ଦି', ଆପଣଙ୍କ ପାଖରେ କ'ଣ ବହିର ଆଉ କପି ଅଛି ?'' ମୁଁ କହିଲି, ''ନା, ଏଇ କପିଟିକୁ ବି ମୁଁ ଆଉ ଜଣଙ୍କପାଇଁ

ଆଣିଛି ।'' ସେ ଓଲଟା ପଚାରିଲା, ''କାହାକୁ ଦେବେ ?'' ମୁଁ କହିଲି, ବହିର ପ୍ରଥମ ପୃଷ୍ଠାରେ ତା'ର ନାମ ଲେଖାଅଛି, ଦେଖନ୍ତୁ ।'' ସେ ନା ପଢ଼ି କହିଲା, ''ଇଏ ଶର୍ମିଳା କିଏ ?'' ମୁଁ କହିଲି, ''ସେ ବି ଜଣେ ଲେଖିକା । ତା' ସାଙ୍ଗରେ ପରିଚୟ ବି ମୋର ଲେଖାଲେଖି ମାଧ୍ୟମରେ । କଲିକତାରେ ରହେ । ମୋର ସାଙ୍ଗ ଏବେ ସେ ।'' ମନେ ମନେ ସୁଖେନ୍ଦୁ ଆଉ କେତୋଟି ପୃଷ୍ଠା ପଢ଼ିଗଲା । ଶେଷରେ କହିଲା, ''କେତେ ଭଲ ଲାଗୁଛି ବହିଟି । ବହିଟିର କାହାଣୀ ପୂର୍ଣ୍ଣତଃ ଆପଣଙ୍କର ଅନୁଭୂତି ?'' ମୁଁ କହିଲି, ''ହଁ, ମୋର କାହାଣୀ ଏହା । ବରଂ କହିଲେ ଭଲ ହେବ, ମୋ ପରି ଝିଅମାନଙ୍କର କାହାଣୀ । ମୋ ପରି ଝିଅଙ୍କର ସଂଖ୍ୟା କ'ଣ ଦେଶରେ କମ୍ ?'' ସୁଖେନ୍ଦୁ ବହିଟିକୁ ମୋତେ ଫେରାଇ ଦେଇ କହିଲା, ''ବହୁତ କରୁଣ କାହାଣୀ । ଏତେ କରୁଣ କାହାଣୀ କ'ଣ ପଢ଼ିହେବ ? ଯାହା ବି ହେଉ, ମୁଁ ବହିଟିକୁ କିଣି ପଢ଼ିବି ।'' ଅଳ୍ପ ବିରତି ପରେ ସେ ପୁଣି କହିଲା, ''ବେବି ଦି, ଆପଣଙ୍କ ଫୋନ୍ ନମ୍ବର ଦେବେ ? ବହିଟି ପଢ଼ିସାରିଲା ପରେ ମୁଁ ଜଣାଇବି । ନମ୍ବର ଦେଲା ପରେ ମୁଁ ନିଜ ଡାଏରୀ ତାକୁ ବଢ଼େଇ ଦେଇ କହିଲି, ଆପଣ ନିଜ ଠିକଣା ଓ ଫୋନ୍ ନମ୍ବର ଏଥିରେ ଲେଖିଦେବେ । ସେତକ ମୋ ପାଖରେ ଥିଲେ ଆପଣଙ୍କୁ କେବେ କେବେ ଭଲ ମନ୍ଦ କଥା ପଚାରି ପାରିବି । ସୁଖେନ୍ଦୁ ମହା ଆଗ୍ରହରେ ମୋ ଡାଏରୀରେ ତା' ନାଁ ଓ ଡାକ ଠିକଣା ଲେଖିଦେଲା ।

ଅଳ୍ପ ସମୟ ପରେ ଟ୍ରେନ୍ ଦୁର୍ଗାପୁରରେ ପହଞ୍ଚିବ । ସୁଖେନ୍ଦୁ ମତେ ପ୍ରସ୍ତୁତ ହେବାକୁ ପରାମର୍ଶ ଦେଲା । ଗାଡ଼ି ଏତିକି ବେଳକୁ ଏକ ଷ୍ଟେସନ୍‌ରେ ପହଞ୍ଚିଲା । ସୁଖେନ୍ଦୁ କହିଲା, ''ଆସାନ୍‌ସୋଲ୍ ଆସିଗଲା । ଏହା ପରେ ଦୁର୍ଗାପୁର । ଆପଣ ପିଲାଙ୍କୁ ନେଇ ଗେଟ୍ ପାଖରେ ପହଞ୍ଚନ୍ତୁ । ପରେ ହୁଏତ ଗେଟ୍‌ରେ ଭିଡ଼ ହୋଇଯିବ । ଗେଟ୍ ଯାଏ ପହଞ୍ଚିବା କଷ୍ଟକର ହୋଇପଡ଼ିବ । ପିଲାଙ୍କୁ ନେଇ ଓହ୍ଲାଇବା ଅସୁବିଧା ଲାଗିବ ।'' ଗାଡ଼ିରୁ ଓହ୍ଲାଇବା ସମୟ ଆସିଗଲା । ଜିନିଷପତ୍ର ଗୋଟାଇଲି । ସତରେ କଥାବାର୍ତ୍ତା ଭିତରେ ସମୟ ଜାଣି ହେଲାନି । ଭଲରେ ଭଲରେ ସବୁ କଟିଲା । ସହଯାତ୍ରୀଙ୍କ ସାଙ୍ଗରେ କଥାବାର୍ତ୍ତା ଭିତରେ କେତେ ସମୟ ବିତିଗଲା । ପିଲାଏ ଉଦାସ ଜଣାପଡୁଥାନ୍ତି । ମୋ ପିଲାଙ୍କଠାରୁ ଅଲଗା ହେବାର ଚିନ୍ତାଯୋଗୁଁ ସୁଖେନ୍ଦୁ ବି ଉଦାସ ଜଣାପଡୁଥାଏ । ହେଲେ କ'ଣ କରିହେବ ? ସହଯାତ୍ରୀ ସହ ବନ୍ଧୁତାର ସର୍ବଦା ଏହା ହିଁ ନିୟତି ।

ସେତେବେଳେ ଦିନ ଦୁଇଟା ହେବ ସମୟ । ସୁଟ୍‌କେଶ୍ ଓ ପିଲାଙ୍କୁ ସଙ୍ଗରେ ନେଇ ମୁଁ ଧୀରେଧୀରେ ଦରଜା ପାଖରେ ପହଞ୍ଚିଲି । ପଛରେ ପଛରେ ସୁଖେନ୍ଦୁ ବି ଆସିଲା । ପଛକୁ ଓଲଟି ମୁଁ କହିଲି, ''କ'ଣ ଆପଣ ବି ଓହ୍ଲାଇଲେଣି ?'' ସେ କହିଲା, ''ନା, ଆପଣଙ୍କୁ ଓହ୍ଲାଇବାରେ ଅସୁବିଧା ହୋଇପାରେ । ଗାଡ଼ି ବେଶୀ ବେଳ ଅଟକିବ ନାହିଁ । ଆପଣ ପିଲାଙ୍କୁ ନେଇ ହୋସିଆର୍ ହୋଇ ଓହ୍ଲେଇ ପଡ଼ନ୍ତୁ । ମୁଁ ସୁଟ୍‌କେଶ୍‌ଟିକୁ ଓହ୍ଲାଇଦେବି ।'' ତା' ହାବଭାବରୁ ସ୍ପଷ୍ଟ ହେଉଥାଏ ଯେ ଆମର ଓହ୍ଲାଇଯିବାଯୋଗୁଁ ତାକୁ ଭଲ ଲାଗୁନି । ଏତେ କମ୍ ପରିଚୟ ମଧ୍ୟରେ ଏତେ ଦରଦୀ ଲୋକ ସର୍ବଦା ମିଳନ୍ତି ନାହିଁ ।

ଗେଟ୍ ପାଖରେ ଛିଡ଼ା ହୋଇଥିବା ଯାତ୍ରୀମାନେ ସମସ୍ତେ ପ୍ରାୟ ବଂଗଳାଭାଷୀ । କେତେ ଆଶ୍ଚର୍ଯ୍ୟର କଥା । ଏମାନେ ସମସ୍ତେ ବଂଗଳାଭାଷୀ ହେବା ସତ୍ତ୍ୱେ କାଲିଠାରୁ ଟ୍ରେନ୍‌ରେ ପରସ୍ପର ମଧ୍ୟରେ ଇଂରାଜୀରେ କଥାବାର୍ତ୍ତା କରୁଥିଲେ । ଏଇଥିପାଇଁ ତ କହନ୍ତି, ଇଂରେଜ ସିନା ଚାଲିଗଲେ, ତାଙ୍କ ଛୁଆ ଏଠି ଛାଡ଼ିଦେଇ ଗଲେ । ତାହା ବୋଧେ ସତ ।

ଅଳ୍ପ ସମୟ ପରେ ଟ୍ରେନ୍ ଦୁର୍ଗାପୁରରେ ପହଞ୍ଚିଲା । ସୁଖେନ୍ଦୁ ସୁଟ୍‌କେଶ୍‌କୁ ଓହ୍ଲାଇଦେଲା । ମୁଁ ପିଲାଙ୍କ ହାତ ଧରି ଟ୍ରେନ୍‌ରୁ ଓହ୍ଲାଇଲି । ସୁଖେନ୍ଦୁ ବାଏ ବାଏ କରି କହିଲା, ''ବେବି ଦି, ପୁଣି ଦେଖାହେବ ।'' ମୁଁ କହିଲି, ''ନିଶ୍ଚୟ । ଆପଣ ତ କହୁଥିଲେ, ମାର୍ଚ୍ଚରେ ପୁଣି ଦିଲ୍ଲୀ ଆସିବେ। ଆସିଲେ ନିଶ୍ଚୟ ଫୋନ୍ କରିବେ ।'' ଟ୍ରେନ୍ ଚାଲିବା ଆରମ୍ଭ କଲା । ପିଲାଙ୍କ ସାଙ୍ଗରେ ହାତ ମିଳାଇ ସେ କହିଲା, ''ଭଲକରି ପଢ଼ାଶୁଣା କରିବ ।'' ସୁଖେନ୍ଦୁ ଗାଡ଼ିରେ ଯାଇ ବସିଲା। ପିଲା ତାକୁ ବାଏ ଅଙ୍କଲ୍, ଟା ଟା କଲେ । ସୁଟ୍‌କେଶ୍ ଓ ପିଲାଙ୍କୁ ନେଇ ଚାଲିବାରେ ଅସୁବିଧା ହେବାରୁ ମୁଁ କୁଲି ଡାକିଲି । ପିଲାଙ୍କ ହାତ ଧରି ପ୍ଲାଟଫର୍ମରେ ଚାଲୁଥିବା ବେଳେ ମନେ ମନେ ଭାବୁଥାଏଁ, କେହି ପରିଚିତ ହୁଏତ ଦେଖା ହୋଇଯାଇପାରେ । ମାତ୍ର କେହି ପରିଚିତଙ୍କ ଦେଖା ମିଳିଲାନି ।

## ॥ ୨ ॥

ଆଶ୍ଚର୍ଯ୍ୟ ନୁହେଁ ତ ଆଉ କ'ଣ ! ଯେଉଁଠି କେତେ ବର୍ଷ ଧରି କଟିଛି, ଏତେ ସବୁ ଚିହ୍ନାଜଣା, ସେଠି କାହାରି ଦେଖା ମିଳିଲାନି । କେତେ ପୁରୁଣା ପରିଚୟ ମୋର ବସ୍‌ଷ୍ଟାଣ୍ଡ୍ ସହ । ମନେହେଲା, ଯେମିତି ଏହି ଜାଗା ମୋତେ ପାସୋରି ଦେଲା । ସେହି ଲୋକ ଗହଳି ଭିତରେ ବି ମୋର ମନ ଅଥୟ ଲାଗୁଥାଏ । ବାପାଙ୍କ ପାଖକୁ ଗଲାବେଳେ ରାସ୍ତାରେ ହୁଏତ କେହି ଭେଟ ହୋଇଯାଇପାରନ୍ତି । ବସ୍‌ଷ୍ଟାଣ୍ଡ୍‌ରୁ ରିକ୍ସା କଲି । କୁଲିକୁ ଛାଡ଼ି ରିକ୍ସାରେ ବସି ଷ୍ଟେସନ୍ ବାହାରକୁ ଗଲୁ ଆମେ । ପକ୍‌କା ରାସ୍ତା ଛାଡ଼ି ରିକ୍ସା ଏକ ପତଳା ରାସ୍ତାରେ ଆଗକୁ ବଢ଼ିଲା । ଦେଖିଲି, କଳା ପ୍ୟାଣ୍ଟ୍‌ସାର୍ଟ ପିନ୍ଧି ଭୂତ ଭଳି ଜଣେ କଳା, ବଡ଼ବଡ଼ ନିଶଧାରୀ ଚନ୍ଦାଲୋକ ସାଇକେଲ୍‌ରେ ଆମ ଆଡ଼େ ମାଡ଼ି ଆସୁଛି । ମନେ ହେଲା, ସେ ଯେମିତି ଚିହ୍ନି ବି ଅଚିହ୍ନା ହେଉଛି । ମୁଁ ପିଲାଙ୍କୁ କହିଲି, ''ଦେଖିଲ, ବୋଧହୁଏ ଅଜା ଆସୁଛନ୍ତି ।'' ଝିଅ କହିଲା, ''ନା, ତ । ତୁ ତ ଯାହାକୁ ଇଚ୍ଛା ତାହାକୁ 'ବାପ' କରିଦେଲୁଣି ।'' ଲୋକଟି ଆଉ ଟିକେ ପାଖକୁ ଆସିବାରୁ ପୁଅ କହିଲା, ''ହଁ ମା, ଅଜା । ସେ ଦାଦୁ, ଦାଦୁ (ଅଜା, ଅଜା) କହି ଡାକ ଦେଲା । ବାପା ଯେମିତି ଶୁଣି ବି ଅଶୁଣା କରିଦେଲେ । ତା'ପରେ ମୁଁ ଡାକିଲି, 'ବାବୁ' (ବାପାଙ୍କ ପାଇଁ ଶ୍ରଦ୍ଧା ନାମ) । ସେ ଡାକ ଶୁଣି ଏପଟ ସେପଟ ଅନାଇଲେ । ତାଙ୍କ ଦେଖିବା ଆଗରୁ ରିକ୍ସା ସାମନା ସାମନି ହେଇଗଲା । ବାପା ସାଇକେଲ୍‌କୁ ରିକ୍ସା କଡ଼ରେ ଛିଡ଼ା କଲେ । ମୁଁ ରିକ୍ସାବାଲାକୁ ଅଟକିବାକୁ କହିଲି । ତାଙ୍କ ଆଗରେ ଛିଡ଼ାହେଇ ହସି ହସି 'ବାବୁ' ବୋଲି ଡାକିଲି । ବାପା ଅବାକ୍ ହୋଇ କହିଲେ, ଆରେ ତୁ ! ମୁଁ ଜାଣି ତାଙ୍କୁ ସରପ୍ରାଇଜ୍ ଦେଇଦେଲି । ବାପା କହିଲେ, ''ଚାଲ ଚାଲ ଘରକୁ ଚାଲ । ମୁଁ ରିକ୍ସାବାଲାକୁ ବାପାଙ୍କ ପଛେ ପଛେ ଚାଲିବାକୁ ନିର୍ଦ୍ଦେଶ ଦେଲି । ଯୁଆଡ଼େ ଯିବା କଥା ବାପା ସେପଟେ ନଯାଇ ସିଧା ଯିବାରୁ ମୁଁ ବାପାଙ୍କୁ କହିଲି, ''ଏପଟେ କୁଆଡ଼େ ଯାଉଛ ?'' ବାପା କହିଲେ, ''କ'ଣ ହେଲା ? ଆମେ ଘରକୁ ତ ଯାଉଛେ । ''ପଚାରିଲି, ''ଏଠି ବି ଭଡ଼ା ଘର ନା ନିଜ ଘର ତିଆରି କରିଛ ?'' ବାପା କହିଲେ, ''ହଁ, ବର୍ତ୍ତମାନ ମୁଣ୍ଡ ଗୁଞ୍ଜିବାପାଇଁ ତ ଟିକେ କରିଛି । ପରେ ଦେଖାଯିବ ।''

ପରେ କେବେ ଓ କେମିତି ଦେଖିବେ କେଜାଣି ? ପରେ ପରେ କହି ତ ଜୀବନର ବାର ଅଣା ସମୟ ଚାଲିଗଲାଣି । କେବେ କିଛି କରିପାରିଲେ ନାହିଁ । ବାପାଙ୍କୁ ଦେଖି ମୁଁ ପଚାରିଲି, ''ତୁମେ ଏତେ ଦୁର୍ବଳ କେମିତି ଦିଶୁଛ ?'' ସାଇକେଲ୍‌କୁ ପେଲି ପେଲି ସେ ଚାଲୁଥିଲେ । ମୁଣ୍ଡ ତଳକୁ କରି ଉଦାସ ଭାବରେ ବାପା ଏକ ଦୀର୍ଘ ନିଃଶ୍ୱାସ ନେଲେ । ''କାହିଁକି ? ମୁଁ ତ ଠିକ୍ ଅଛି । ତୁ ତ କିଛି ଜାଣିନୁ'' ସେ କହିଲେ । ମୁଁ ପଚାରିଲି, ''କ'ଣ ହେଲା ?'' ବାପା କହିଲେ, ''ଓଃ, କି ଝମେଲା। ତୋର ମଝିଆଁ ଭାଇ ମୋ ସହିତ ମନମାନି କଲା । ଶେଷରେ ଘର ଛାଡ଼ି ଚାଲିଗଲା । ତୋ' ମା' ବି ମରୁ ମରୁ ବଞ୍ଚିଛି । ତୁ ତ ଆମର କିଛି ଖୋଜ୍ ଖବର ରଖିନୁ ।'' ମୁଁ ଭାବିଲି, ମତେ ସବୁ ଜଣା । ହେଲେ ମୁଁ କ'ଣ କରିପାରିବି ? ମୁଁ ଏଠି ରହେଁ କି ସେଇଠି । ମା-ବାପା କ'ଣ କାହାରି କଥା ଶୁଣନ୍ତି ? ମୁଁ ମୋର ଠିକ୍ ଅଛି । ମୋର ଆସି ଏଠି ରହିଲେ କ'ଣ ସେମାନଙ୍କ ଝମେଲା ଊଣା ହେଇଯିବ ? ମୋଟେ ନୁହେଁ ।

ବାପା ସାଇକେଲ୍ ନେଇ ଚାଲିଚାଲି ଯାଉଥାନ୍ତି । ପଚାରିଲି, ''ଆଉ କେତେ ଦୂର ?'' କହିଲେ, ''ହେଇ ତ ପହଞ୍ଚି ଗଲେଣି ।'' କେତେ ଥର ଏମିତି କହିଲେଣି । ମାତ୍ର ରାସ୍ତା ସରୁନି । ରିକ୍ସାବାଲାର କଷ୍ଟ ଦେଖି ସହାନୁଭୂତି ହେଲା । କେବେ ରିକ୍ସାରେ ବସୁଛି, କେବେ ପୁଣି ମାଟି ରାସ୍ତା ଦେଖି ଓହ୍ଲାଇ ପଡ଼ି ରିକ୍ସାକୁ ଟାଣୁଛି । ମୁଣ୍ଡରୁ ପାଦ ଯାଏଁ ତା'ର ଝାଳ । ଗାଧୋଇଗଲାଣି ଝାଳରେ । ମୁଁ ତାକୁ କହିଲି, ''ମୁଁ ଓହ୍ଲାଇ ଯାଏ ।'' ସେ କହିଲା, ''ନା ନା, ତୁମେ ବସ । ମୋର ତ ପ୍ରତିଦିନର କାମ ଏଇଟା ।'' ତା' କଷ୍ଟ ଦେଖି ଖରାପ ଲାଗିଲା । କଷ୍ଟ କରି କରି ଏମାନଙ୍କର ଅଭ୍ୟାସ ହୋଇଯାଏ । ଦେଶରେ ଏଭଳି ମେହନତି ମଣିଷର ସଂଖ୍ୟା ଏତେ ଅଧିକ ଯେ ଗଣି ହେବନି । ରିକ୍ସା ଟାଣି ସେମାନେ କେତେ ବା ରୋଜଗାର କରନ୍ତି ! କେବେ ରୋଜଗାର ନହେଲେ, ଆଗରୁ ସଞ୍ଚିତ ଟଙ୍କା ବଳରେ ଡାଲି ଚାଉଳ କିଣନ୍ତି । ନୋହିଲେ ଓପାସରେ ଶୋଇବେ । ମୁଁ ତା' କଥା ନମାନି କହିଲି, ''ନା ନା, ତୁମେ ଟିକେ ରିକ୍ସା ରଖ; ମୁଁ ଓହ୍ଲାଇଯିବି । କାଲିଠାରୁ ଗାଡ଼ିରେ ବସି ବସି ପାଦ ଫୁଲିଗଲାଣି । ଟିକେ ଖାଲି ପାଦରେ ଚାଲିଲେ ଭଲ ଲାଗିବ । ମୁଁ ପାଦରେ ଚାଲିବାକୁ ଲାଗିଲି । ଖୋଲା ଜାଗା । ଚାରିଆଡ଼େ ଆଳୁ, ଟମାଟୋ ଏବଂ ଲଙ୍କାର ଫସଲ । ଗଛଗୁଡ଼ିକରେ ନାଲି ନାଲି ଲଙ୍କା ଭର୍ତ୍ତି ହୋଇଛି । ତା' ମଧ୍ୟରେ କଳା ଲଙ୍କା ବି । ଇଚ୍ଛା ହେଉଥାଏ ଆଞ୍ଜୁଳାଏ ତୋଳି ପଣତକାନିରେ ନେଇଯାଆନ୍ତି । ପୁଣି ବାଇଗଣର ଫସଲ । ଗଛରୁ ବାଇଗଣ ଝୁଲୁଛି । ପୁଅ କହିଲା, ''ମା, ଦେଖ୍ କେତେ ବାଇଗଣ !'' ଝିଅ ଓଲଟି କହିଲା, ''ବୁଦ୍ଧୁ, ଏ କ'ଣ ବାଇଗଣ ?'' ପୁଅ କହିଲା, ''ମା'କୁ ପଚାରୁନୁ । ଯେ ପରା ବାଇଗଣ ।'' ଆଗରେ ହଳଦିଆ ରଂଗର ଫସଲ। ବୋଧହୁଏ ସୋରିଷ । ମଝିରେ ମଝିରେ କାହିଁ କେଉଁଠି ସିମେଣ୍ଟର ଘର ବି ଦେଖାଯାଉଥାଏ । ମୁଁ ଦୁର୍ଗାପୁରରେ କେତେ ବର୍ଷ ଧରି ରହିଛି । ହେଲେ ଆଜିଯାଏ ଜାଣି ନଥିଲି, ଏଠି ଏଭଳି ଜାଗା ବି ଅଛି । ରାସ୍ତା ଧାରରେ ଏକ ବଡ଼ ମାଟି ଘର । ଦରଜା ଆଗରେ ଏକ ମୋଡ଼ାରେ ଲୁଙ୍ଗି ପିନ୍ଧି ଜଣେ ବୟସ୍କ ଲୋକ ବସିଥିଲେ । ଆମକୁ ଦେଖି ସେ ଉଠି ପଡ଼ିଲେ । ବଡ଼ ପାଟିରେ ବାପାଙ୍କୁ ପଚାରିଲେ, ''ହାଲ୍‌ଦାର, ଯେ କିଏ ?'' ବାପା କହିଲେ, ''ଇଯେ ପରା

ମୋର ଝିଅ ।'' ''ଦିଲ୍ଲୀରେ ରହେ ଯେଉଁ ଝିଅ ?'' ସେ ପଚାରିଲେ । ବାପା ଉତ୍ତର ଦେଲେ, ''ଦାଦା, ମୋର ପରା ଗୋଟିଏ ଝିଅ ।'' ମୁଁ ଚାରି ଆଡ଼େ ନଜର ଦେଇ ପଚାରିଲି, ''ୟେ ଜାଗାର ନାଁ କ'ଣ ?'' ବାପା କହିଲେ, ''ବହୁତ ବଡ଼ ଜାଗା ଏଇଟା । ଗୋଟିଏ ଭାଗକୁ କହନ୍ତି ବଡ଼ମାନା, ଆଉ ଗୋଟିଏ ଭାଗକୁ କହନ୍ତି ମଝିଆଁ ମାନା ଓ ତୃତୀୟଟି ହେଲା ଛୋଟ ମାନା । ଆମେ ଛୋଟ ମାନା ପାରିହୋଇ ମଝିଆଁ ମାନାରେ ପହଞ୍ଚିଲେ । ଏଇଠି ମୁଁ ରହେ । ଟିକିଏ ଆଗକୁ ଗଲେ ନଦୀ ତଟରେ ବଡ଼ ମାନା । ମୁଁ କହିଲି, ''ମାନାର ନାଁ ତ ଶୁଣିଥିଲି । କିନ୍ତୁ ଏହା ଏତେ ସୁନ୍ଦର ବୋଲି ଜାଣି ନଥିଲି ।''

ବାପାଙ୍କ ସାଙ୍ଗରେ କଥାବାର୍ତ୍ତା କରିକରି ଆଗକୁ ଯାଉଥାଏ । ହଠାତ୍ ସେ କହିଲେ, ଏଇଠି ରହ । ଆଉ କେତେ ଦୂର ଯିବୁ ?'' ସାଇକେଲ୍‌କୁ ଛିଡ଼ା କରେଇ କହିଲେ, ''ଦେଖ୍, ସେହି ତ ଆମ ଘର । ବାପା ରିକ୍ସାରୁ ସୁଟ୍‌କେସ୍ ଉତାରିବାକୁ ଲାଗିଲେ । ମୁଁ ମନାକଲି । ଘର ପର୍ଯ୍ୟନ୍ତ ଯିବାଲାଗି ଅଳ୍ପ ଦୂର ଚାଲିକି ଯିବାକୁ ହେବ । ସେ ଯାଏ ରିକ୍ସା ଯିବନି । ମୁଁ ରିକ୍ସାବାଲାକୁ କହିଲି, ତୁମେ ବି ଚାଲ । ବାପା ''ସେ ଆଉ କୁଆଡ଼େ ଯିବ ? ରିକ୍ସା ଆଉ ଭିତରକୁ ଯିବନି ।'' ରିକ୍ସା ନଗଲେ କ'ଣ ହେଲା, ସେ ନିଜେ ତ ଯାଇପାରିବ''ମୁଁ କହିଲି । ବାପା କହିଲେ, ''ହଁ, ତା' ଅବଶ୍ୟ ସତ କଥା ।'' ପୁଣି ରିକ୍ସାବାଲାକୁ କହିଲେ, ''ଆରେ ବାବା ଚାଲ, ତୁ ବି ଚାଲ ।'' କେତେ କଷ୍ଟ କରି ସେ ଖରାରେ ରିକ୍ସା ଟାଣି ଟାଣି ଆଣିଛି । ତାକୁ ପାଣି ଫାଣି ଟିକିଏ ନଦେବା କ'ଣ ଉଚିତ ହେବ ? ପଇସା ହିଁ କ'ଣ ସବୁକିଛି ? ଏସବୁ ଚିନ୍ତା କରି ମୁଁ ତାକୁ କହିଲି, ''ଘରକୁ ଆସ । ପାଣି ପିଇକି ଯାଅ ।'' ଏତିକି କହି ମୁଁ ଘରଆଡ଼େ ଗଲି । ମା ଆଉ ଜଣେ ସ୍ତ୍ରୀଲୋକ ସହ ଦରଜା ବାହାରେ ଠିଆହୋଇଥିଲା । ମତେ ଦେଖି ସ୍ତ୍ରୀଲୋକ ଜଣକ ପଚାରିଲେ, ''ବାପାଙ୍କ ସଙ୍ଗରେ ୟେ କିଏ କି ?'' ମା' ମତେ ଦେଖି ଖୁସିରେ କହିଲା, ''ୟେ ପରା ଝିଅ ।'' ମା' ପାଖକୁ ଯାଇ ତା'ର ପାଦ ଛୁଇଁ ପ୍ରଣାମ କଲି । ପଚାରିଲି, ''ଆଉ ସବୁ ଭଲ ?'' ମା' ଉତ୍ତର ଦେଲା, ହଁ ଭଲ । ଏତେ ଦିନ ପରେ ତୋର ଆମ କଥା ମନେ ପଡ଼ିଲା । ମୋର ପିଲାଙ୍କୁ ପାଖକୁ ଡାକି ସେ ଚୁମା ଦେଲା । ପଚାରିଲା, ଦାଦାଭାଇ ! ଆଉ କ'ଣ ସବୁ ଭଲ ? ଆଉ ତୁ ଦିଦିଭାଇ ! ତୁମେମାନେ ଆଈକୁ ପୂରାପୂରି ଭୁଲିଗଲ କିରେ ? ଆସ ଆସ ଘରକୁ ଆସ । ଇସାରାରେ କହିଲା, ''ହେଇ ଯେଉଁ ଘର ସେଇଟା ।'' ମା'ର ଇସାରାର ଅର୍ଥ ମୁଁ ଜାଣିପାରିଲି, ସେଠି ଆହୁରି ଘର ସବୁ ଅଛି । ତା'ହେଲେ ୟେ ଘର ଆଉ କାହାର ?

ମା' ଯେଉଁ ଘରକୁ ଦେଖାଇଥିଲା, ମୁଁ ସେ ଆଡ଼େ ଗଲି । ସେଠି ଦୁଇଟି ଘର ଦେଖାଯାଉଥିଲା । ଗୋଟାକର ବାରଣ୍ଡା ନଥିଲା । ଇଟାର କାନ୍ଥ ଓ ଟାଇଲ୍ ଛପର । ଦ୍ୱିତୀୟଟିର ମାଟିକାନ୍ଥ ଓ ଛଣର ଛପର । ଦ୍ୱିତୀୟ ଘର ଖୁବ୍ ବଡ଼ ଥିଲା । ତା'ର ତିନି ପାର୍ଶ୍ୱରେ ବାରଣ୍ଡା, ଅଗଣା ବି ଖୁବ୍ ବଡ଼ । ଅଗଣାର ଗୋଟିଏ ପାଖରେ ହେଣ୍ଡପମ୍ପ୍ । ତା'ରି ପାଖରେ ରାନ୍ଧିବାଲାଗି ଟିକେ ସିମେଣ୍ଟ ପଲସ୍ତରାକରା ଜାଗା । ରାନ୍ଧିବା ଜାଗାରେ ଦୁଇଟି ଚୁଲି, ଗୋଟିଏ କାଠର ଓ ଅନ୍ୟଟି କୋଇଲାର । ଘର ପଛ କଡ଼େ ବଡ଼ ରାସ୍ତା । ଆମେ ସେହି ରାସ୍ତା ଦେଇ ଆସିଥିଲୁ ।

ଘର ସାମନାରେ କେବଳ କ୍ଷେତ । କ୍ଷେତକୁ ଯିବାଲାଗି ହେଣ୍ଡ୍‌ପମ୍ପ୍ ପାଖଦେଇ ଯାଇଥିବା ପାଦଚଲା ରାସ୍ତାରେ ଯିବାକୁ ହେବ । ହେଣ୍ଡ ପମ୍ପ୍‌ର ଦୁଇ ପାଖରେ ଦୁଇଟି ବରକୋଳି ଗଛ । କଞ୍ଚା ପାଚିଲା ବରକୋଳିରେ ଲଦି ହୋଇଥାନ୍ତି ଗଛ ଦୁଇଟି । ବରକୋଳି ଦେଖି ମୋର ଖୁବ୍ ଲୋଭ ହେଲା । ମାତ୍ର ସରସ୍ୱତୀ ପୂଜା ନସରିବା ଯାଏ ମୁଁ କୋଳି ଖାଏନା । ରିକ୍ସାବାଲାକୁ ବସିବାକୁ କହି ମୁଁ ଘର ବାହାର ସବୁଆଡ଼େ ବୁଲିଆସିଲି । ଫେରି ଆସି ମା'କୁ କହିଲି, ''ତାକୁ ପାଣି ଗ୍ଲାସେ ଦେ ।'' ମା' ବାର ତେର ବର୍ଷର ଜଣେ ଝିଅକୁ ପାଖକୁ ଡାକି କହିଲା, ''ଶୁଣ୍, ପାଣି ଗ୍ଲାସେ ଆଣିଲୁ ।'' ରିକ୍ସାବାଲା ତଥାପି ଛିଡ଼ାହୋଇଥାଏ । ମୁଁ କହିଲି, ''ଛିଡ଼ା କାହିଁକି ହେଲ ? ବସିଯାଅ । ଅଗଣାରେ ଚାରି ପାଞ୍ଚଟି ଚେଆର୍ ଏପଟ ସେପଟ ହେଇ ପଡ଼ିଥିଲା । ଚେଆରଟିଏ ଟାଣି ତହିଁରେ ତାକୁ ବସିବାକୁ କହିଲି । ପଚାରିଲି, କେତେ ପଇସା ହେଲା ତୁମର ?'' ସେ କହିଲା, ''ଯାହା ଉଚିତ ଭାବୁଛ ଦିଅ । ମୁଁ ତ ଏତେ ଲମ୍ବା ରାସ୍ତା ବୋଲି ଜାଣି ନଥିଲି ।'' ଯାହା ନିଷ୍ପତ୍ତି ହେଲା ତା'ଠାରୁ ଅଧିକ କିଛି ଟଙ୍କା ଦେବାକୁ ମୁଁ ବେଗ୍ ଅଣ୍ଡାଳୁଛି, ବାପା ଚିଲ ପରି ଝାମ୍ପିପଡ଼ି କହିଲେ, ରହ କେତେ ପଇସା ଦଉଛୁ ତାକୁ ?'' ମୁଁ ତାଙ୍କର ଉଦ୍ଦେଶ୍ୟ ବୁଝିଗଲି । ତାଙ୍କ କବଳରୁ ହାତକୁ ଛଡ଼ାଇ ଆଣି କହିଲି, ''କ'ଣ ବାପା, ଯାହା ଠିକ୍ ତା'ତ ଦେବି । ସେଥିରେ ତୁମେ କାହିଁକି ମୁଣ୍ଡ ପୂରାଉଛ ?'' ରିକ୍ସାବାଲାକୁ ପଇସା ଦେଇ ମୁଁ ବିଦାକଲି । ବାପା ଏମିତି କେମିତି ହେଇଗଲେ, ଆଗରୁ ତ ଏମିତି ନଥିଲେ । ଏବେ ତାଙ୍କର ଆର୍ଥିକ ସ୍ଥିତି ଭାରି ଖରାପ । ରିକ୍ସାବାଲା ପଇସା ନେଲା । କହିଲା, ''ମା' ତୁ ଭାରି ଦୟାବାନ । ଭଗବାନଙ୍କ କୃପାରୁ ତୋତେ କେବେ କଷ୍ଟ ମିଳିବ ନାହିଁ ।''

ଅଗଣାରେ ଚେୟାର୍ ଉପରକୁ ଗୋଡ଼ ଉଠାଇ ହାତ ଦୁଇଟିକୁ ଛନ୍ଦି ଲୁଙ୍ଗି ଆଉ କୁର୍ତ୍ତା ପିନ୍ଧିଥିବା ଜଣେ ଲୋକ ବସିଥିଲେ । ମତେ ଲାଗିଲା, କାହିଁ କେଉଁଠି ତାଙ୍କୁ ଦେଖିଛି ଆଗରୁ । ମୋର ଶଙ୍କା ଦୂର କରିବାକୁ ଯାଇ ମା' କହିଲା, ''ୟେ ତୋର ଦାଦା । ତୋ ବାପାଙ୍କୁ କାକା ଡାକେ ।'' ମୁଁ କହିଲି, ''କେଉଁଠି ଦେଖିଛି ତାଙ୍କୁ ।'' ମା' କହିଲା, ''ଆରେ ଦେଖିବୁନି ? ସେ ପରା ପରିବା ବିକେ । ତୁମ ପଡ଼ାକୁ ପରିବା ବିକିବାପାଇଁ ଯାଉଥିବ, ତୁ ଦେଖିଥିବୁ । ହୁଏତ ତା'ଠାରୁ ପରିବା କିଣିଥିବୁ । ମୁଁ ତାଙ୍କୁ ନାଁ ପଚାରିଲି । ନିରୁ । ମତେ ସେ ଦୁର୍ଗାପୁରରେ କେଉଁଠି ରହୁଥିଲୁ ବୋଲି ପଚାରିଲେ । ଜାଣିଲା ପରେ କହିଲେ, ''ଆଚ୍ଛା, ଆଚ୍ଛା ସେଠି ଏକ କାଳୀମନ୍ଦିର ଅଛି ତ !'' ମୁଁ ହଁ ଭରିଲି ।

ମତେ ଖୁବ୍ ଜୋର୍‌ରେ ଭୋକ ଲାଗିଲାଣି । ପେଟରେ ହାତ ଦେଇ କେବେ ବାପାଙ୍କୁ ତ କେବେ ମା'କୁ ଅନାଉଥାଏ । ବାପା ବୁଝିପାରି କହିଲେ, ରାନୀ, ତାକୁ ଭୋକ ଲାଗିଲାଣି । କିଛି ଖାଇବାକୁ ଦେ । ହେଲେ ଏହି ଶଳାଶାଳୀଙ୍କୁ କିଛି ଦେବୁନି । ପିଲାଙ୍କୁ ପଚାରିଲେ, ''ଭୋକ ହେଲାଣି ନା ?' ଯାଅ, ଖାଅ ଆଗ ।'' ହେଣ୍ଡପମ୍ପ୍ ଆଡ଼କୁ ଦେଖାଇ ଦେଇ କହିଲେ, ସେଠି ଆଗ ହାତ ମୁହଁ ଧୋଇ ଆସ । ମୁଁ ବି ହାତ ମୁହଁ ଧୋଇବାକୁ ଗଲି । ଏହା ଦେଖି ସେହି ଅଜଣା ସ୍ତ୍ରୀ ଲୋକଟି ତା' ବାରତେର ବର୍ଷର ଝିଅଟିକୁ ନିର୍ଦ୍ଦେଶ ଦେଲା, ''ଯା, ତୋ' ପିଇସିପାଇଁ ହେଣ୍ଡପମ୍ପ୍

ମାରି ଦେ ।'' ଝିଅଟି ନିରୁଦା'ର ମଝିଆଁ ଝିଅ । ସ୍ତ୍ରୀଲୋକଟି ତା' ପତ୍ନୀ, ଅର୍ଥାତ୍ ମୋର ଭାଉଜ । ଦେହ ଗହମ ରଂଗର । ଅସୁନ୍ଦର ନୁହେଁ । ମାତ୍ର ତେଲ ସାବୁନର ଅଭାବରେ ତାଙ୍କ କପଡ଼ାଲତା ଏତେ ମଇଳା ଯେ ନଖରେ ତହିଁରୁ ମଳି କୋରି କୋରି କଢ଼ାଯାଇପାରେ । କ'ଣ ବା କରିବେ ? ଖାଇବା ପିଇବାର ହୁଏତ ଅଭାବ ନାହିଁ । ମାତ୍ର ପଇସାର ଘୋର ଅଭାବ। ବର୍ଷକର ଫସଲରୁ ଗୃହସ୍ଥୀ ଚାଲେ । ନଦୀ ପାଖରେ ଘର । ବନ୍ୟାର ଡର ରହିଥାଏ । ସାବଧାନ ହୋଇ ଚଳିବାକୁ ପଡ଼େ । ନିରୁଦା'ର ତିନିଟି ଝିଅ । ପୁଅ ଗୋଟାଏ । ଦୁଇଟି ଝିଅ ପରେ ପୁଅ । ତା' ତଳକୁ ପୁଣି ଏକ ଝିଅ । ବଡ଼ ଝିଅର ପନ୍ଦର ବର୍ଷ ହେବ ବୟସ । ମଝିଆଁ ଝିଅ ତେର ବର୍ଷର; ପୁଅ ଦଶ ବର୍ଷର ଏବଂ ସାନଝିଅ ଆଠ ବର୍ଷର ହେବ । ଛୁଆଯାକ ମା'-ବାପାଙ୍କ ପରି ରଂଗରେ କଳା । ବାପା ଦେଖିବାକୁ ଠିକ୍‌ଠାକ୍ । ଝିଅଗୁଡ଼ିକ ଆକର୍ଷକ ।

ହାତ ମୁହଁ ଧୋଇ ମୁଁ ଆସି ଦେଖେଁ ତ ମା' ଭାତ ବାଢୁଥାଏ । ଖାଇବାରଖା ବର୍ତ୍ତନରୁ ଢାଙ୍କୁଣିକୁ ଖୋଲି ମୁଁ ମା'କୁ ପଚାରିଲି, ''କ'ଣ ରାନ୍ଧିଛୁ, ମାଛ ନା ମାଂସ ?'' ବାପା ମୋର ହରକତ୍ ଦେଖି କହିଲେ, ''ବୁଝିଲୁ ରାନୀ, ତରକାରିରଖା ବର୍ତ୍ତନ ଢାଙ୍କୁଣି ଖୋଲି ଦେଖିବାର ଅଭ୍ୟାସ ଝିଅର ଗଲାନି ।'' ସତ କଥା । ମୁଁ ଜାଣିଛି, ମା' ଖୁବ୍ ଭଲ ରାନ୍ଧେ । ଆଜି ବି ଭଲ ରାନ୍ଧିଛି । ତିନି ଚାରି କିସମର ତରକାରି। ଆଳୁ, ମଟର, ଟମାଟର୍ ସାଙ୍ଗରେ ବନ୍ଧାକୋବିର ତରକାରି । ପୁଣି ମୂଳାଭଜା, ମଟର ଶାଗ । ଚାରୁପାଣି । ମା'ର ପୁରୁଣା ଅଭ୍ୟାସ ହେଲା, ଗୋଟାଏ ପରେ ଗୋଟାଏ ତରକାରି ଆଣି ପରଷୁଥିବ । ଗୋଟାଏ ସରିଲେ ଆଉ ଗୋଟିଏ । ଆମକୁ ସେ ସେମିତି ପରଷିବାରେ ଲାଗିଲା । ବିରକ୍ତ ହେଇ ମୁଁ କହିଲି, ''ଏମିତି ମୋତେ ଭଲ ଲାଗେନା । ଯାହା ଦେବାର ଅଛି ତୁ ଥରକରେ ବାଢ଼ି ଦେ । ଗୋଟିଏ ତରକାରିରେ ତ ପେଟ ଭର୍ତ୍ତି ହୋଇଯିବ । ଦୋସରା ତରକାରି କେମିତି ଖାଇବି, କାହା ସାଙ୍ଗରେ ଖାଇବି ?'' ବାପା ବୁଝିଗଲେ । କହିଲେ, ''ରାନୀ, ତାକୁ ଖୁବ୍ ଭୋକ ଲାଗୁଛି ନିଶ୍ଚୟ, ସେଇଥିପାଇଁ ଏମିତି କହୁଛି । ପିଲାଟି ଦିନରୁ ବେବି କେବେ ଭୋକ ସହିପାରେନା । ଯାହା ଦେବାର ଅଛି ତାକୁ ଏକାଥରେ ବାଢ଼ିଦେ ।''

ମୋର ପିଲାମାନେ ବେଶି ରାଗମସଲା ଖାଆନ୍ତି ନାହିଁ। ତରକାରି ରାଗ ଲାଗିବାରୁ ସେମାନେ ଉଃ ଉଃ କରି ଦରଖିଆ ହୋଇ ଉଠିଗଲେ । ମତେ ଭାତ ମିଳିଯିବାରୁ ଆରାମରେ ବସି ଖାଇବାରେ ଲାଗିଲି । ତା'ଛଡ଼ା ବାପଘରର ଖାଇବାରେ ଏକ ଅପୂର୍ବ ସ୍ୱାଦ ଥାଏ । ମୋର ଖିଆ ନସରୁଣୁ ଟିଭି ଦେଖିବାଲାଗି ପଡ଼ାର ଛୁଆମାନେ ଆସି ଭିଡ଼କଲେ । ମା' ଘରଭିତରୁ ଆସି ପାଟିକଲା, ''ଆଜି ଝିଅ ଆସିଛି । ଟିଭି ଚଲେଇବି ନାହିଁ । ଭିଡ଼ ଭିତରୁ ଜଣେ ସ୍ତ୍ରୀଲୋକ ପଚାରିଲା, ''ଆଈ, ଯେତ ଅଜାଙ୍କ ଝିଅ ନା !'' ମା' କହିଲା, ହଁ । ସେମାନଙ୍କ କଥା ଶୁଣି ମୋତେ ଭଲ ଲାଗିଲା ନାହିଁ । କ'ଣ ଅଜାଙ୍କ ଝିଅ, ଆଈଙ୍କର ଝିଅ ନୁହେଁ ? ବାପାଙ୍କ ଚେହେରାରୁ ମନେହେଲା, ସେ ବି ଶୁଣିଛନ୍ତି ଏକଥା । କିଏ ଏ ରହସ୍ୟ ଖୋଲିଥିବ ଜାଣିବାପାଇଁ ବାପା ବୋଧେ ମନେ ମନେ ପ୍ରୟାସ କରୁଥିଲେ । ମା' ହିଁ ସମସ୍ତଙ୍କୁ କହିଥିବ ଏକଥା । ତାଙ୍କୁ ଲାଗିଲା, କଥାଟି ଶୁଣି ମୋର ମନ ଖରାପ ହୋଇଛି । ଖିଆ ସରିବା ପରେ ମୁଁ ଅଇଁଠା ବାସନ ଫଂଖୁଡ଼ି ଗୋଟାଇବାକୁ ଲାଗିଲି । ବାପା କହିଲେ,

''ତୁ ଛାଡ଼୍ ସେସବୁ । ମୁହଁ ହାତ ଧୋଇ ଆସ ।'' ମା' ବି ମୋତେ ବାସନ ଉଠାଇବାକୁ ଦେଲାନି । ମାଜିବା ତ ପଛ କଥା । ମୁହଁ ହାତ ଧୋଇବାକୁ ଗଲି ଯେତେବେଳେ, ନିରୁଦା'ର ସ୍ତ୍ରୀ ସାହାଯ୍ୟ କରିବାପାଇଁ ଦଉଡ଼ି ଆସିଲେ । ହାତଧୋଇ ଫେରିଲା ପରେ ମା' କହିଲା, ''ବାପାଙ୍କୁ କିଛି ପଇସା ଦେଇ ଦେ । ଆଜି ବେଙ୍କ୍ ଯାଇଥିଲେ, ହେଲେ ତାହା ବନ୍ଦ ଥିଲା । ହାତ ତାଙ୍କର ପୂରା ଖାଲି । କାଲି ନୋହିଲେ ପଅରିଦିନ ପେନ୍‌ସନ୍ ଟଙ୍କା ମିଳିଯିବ । ବାପାଙ୍କ ସାମନାରେ ମା' ମୋତେ ଏ କଥା କହିବାରୁ ବାପା ବିରକ୍ତ ହେଲେ । ବିରକ୍ତ ହେଇ ସେ ଘର ଭିତରେ ଏପଟ ସେପଟ ହେଉଥାଆନ୍ତି । ମା'କୁ କହିଲେ,''ତାକୁ କିଛି କହନା । ପଇସା କିଛି ଦରକାର ନାହିଁ ।'' ତାଙ୍କ ଚେହେରାରୁ କିନ୍ତୁ ଲାଗୁଥାଏ ପଇସା ମିଳିଗଲେ ସେ ଖୁସୀ ହେବେ । ମୁଁ ଯେତେବେଳେ ହାତ ଧୋଇବାକୁ ଯାଇଥିଲି, ସେଇ ବେଳାରେ ବାପା ମା' କଥାବାର୍ତ୍ତା କରିନେଇଥିଲେ । 'ପଦେ କହିଦେଲେ ତ ବେବି ପଇସା ଦେଇଦେବ ।' ବାପା ମନା କରିବାରୁ ମା' କୁ କହିଲି, ''ହେଲା କ'ଣ ? ଦରକାର ନାହିଁ ? ଏଥିରେ ମନା କରିବାର କ'ଣ ଅଛି ? ବାପା ମା' ନିଜ ପିଲାଙ୍କଠାରୁ ସାହାଯ୍ୟ ନ ନେବେ ତ ଆଉ କାହାଠାରୁ ନେବେ ? ପିଲାଙ୍କୁ ଆମେ ଏଇଥିପାଇଁ ତ ବଡ଼ କରନ୍ତି । କହ, କେତେ ପଇସା ଦରକାର । ମୋ କଥା ଶୁଣି ବାପାଙ୍କ ଆଖିରେ ଲୁହ ଜକେଇ ଆସିଲା । ଦୀର୍ଘଶ୍ୱାସ ଛାଡ଼ି କହିଲେ, ''ତୁ ମୋର ଝିଅ ନୋହୁ । ପୁଅ । ତୋର ଭାଇମାନେ ଥରୁଟିଏ ହେଲେ ମୋର ଅସୁବିଧା ବୁଝିଥା'ନ୍ତେ ?''

ଘର ଭିତରେ ଚାଲିଥିବା କଥାବାର୍ତ୍ତା ବାହାରେ ସମସ୍ତେ ଶୁଣୁଛନ୍ତି । ନିରୁଦା' ଉଠିଆସି ସାମାନ୍ୟ ଉଚ୍ଚ ଗଳାରେ କହିଲା, ''କ'ଣ ହେଲା ବେବି ?'' ମା' କହିଲା, ''ନା କିଛି ନୁହେଁ ।'' ନିରୁଦା କହିଲା, ''ଆମେ ସବୁ ପରା ଏଇଠି ବସିଛୁଁ । କିଛି ହେଇନି ଯଦି ଏସବୁ ଶୁଭାଯାଉଛି କେମିତି ?'' ବାପାଙ୍କୁ ଉଦ୍ଦେଶ୍ୟକରି ନିରୁଦା ପୁଣି କହିଲା, ''ଆଉ କାକା, ତୁମକୁ ଯଦି ପଇସାର ଦରକାର ଥିଲା, ମତେ କାହିଁକି କହିଲ ନାହିଁ । ସେ ତ ଦୁଇ ଚାରିଦିନପାଇଁ ଆସିଛି । ତା'ଠାରୁ ପଇସା ମାଗିବ ? ମୋ ପାଖରେ ନଥିଲେ ମୁଁ ଆଉ କାହା ପାଖରୁ ଉଧାର କରି ଆଣି ଦେଇଥାନ୍ତି । ତାକୁ ପଇସା ମାଗନା ।'' ମୁଁ କହିଲି, ''ନା ନା, କାହିଁକି ନ ନେବ ଯେ ? ନିଅ । ଏତିକି କହି ମୁଁ ବେଗ୍‌ରୁ କିଛି ପଇସା କାଢ଼ି ମା' ହାତରେ ଦେଲି । ''ରଖ ପଇସା । ଦରକାର ଯଦି କହ ଆହୁରି ଦେବି । ହେଲେ ମଦ ଫଦରେ ଖର୍ଚ୍ଚ କରିବ ନାହିଁ । ଅନ୍ୟଥା ମତେ ଭାରି ଖରାପ ଲାଗିବ ।'' ବାପାଙ୍କୁ ଶୁଣାଇ ଶୁଣାଇ ଏକଥା କହିଲି ମୁଁ । ମା' ଉତ୍ତର ଦେଲା, ''ନା ନା ଏଠିକି ଆସିବା ପରଠୁ ସେ ଆଉ ପିଇ ନାହାନ୍ତି ।'' ଅବାକ୍ ହୋଇ ମୁଁ ପଚାରିଲି, ''କ'ଣ ବାପା, ସତରେ ତୁମେ ମଦ ପିଇବା ଛାଡ଼ିଦେଲ ? ତା'ହେଲେ ତ ଖୁବ୍ ଭଲ ହୋଇଗଲଣି ଏ ଭିତରେ । ନିରୁଦା' କହିଲା, ''ଜାଣିଛୁ, ତାଙ୍କର ନିଶା ଛଡ଼ାଇଲା କିଏ ? ମୁଁ ସଫାସଫା କହିଦେଲି, ଏଠି ସେ ଧନ୍ଦା ଚଳିବନି । ନୋହିଲେ ଏକବସ୍ତ୍ର କରି ଦୁହିଁଙ୍କୁ ଏଠୁ ବାହାର କରିଦେବି । ଯିବ ଯୁଆଡ଼େ ଯିବ ।'' ମୁଁ ଭାବିଲି, ସେ ବସ୍ତ୍ର ହଳକ ଛଡ଼ା ସେମାନଙ୍କର ଆଉ କ'ଣ ଅଛି ଯେ । ଅଧାରୁ ଅଧିକ ଜିନିଷ ତ କୁଆଡ଼େ ଗଲା ଜଣା ନାହିଁ । ଜାଣି ଭୂତ ଖାଇଗଲା । ବଡ଼ ଆଲମିରା, ବଡ଼ ଟ୍ରଙ୍କ୍, ବଡ଼ ରେକ୍, ବଡ଼ ଟେବୁଲ୍,

ଟେବୁଲ୍ ପଙ୍ଖା, କିଛି ତ ନାହିଁ । ସବୁ ଖାଲି ହୋଇଗଲାଣି । ରିଟାୟାର୍ଡ଼ ହେଲା ପରେ କିଛି ନହେଲେ ମଣିଷ ଘରଟିଏ ତିଆରି କରି ସୁଖ ଶାନ୍ତିରେ ବାକି ଜୀବନ କାଟିଥାଏ । ହେଲେ ଘର କଥା ତ ପରେ, ଏମାନଙ୍କର ଠିକଣାଯାକ ବେଠିକ୍ ହୋଇଗଲାଣି । ଶୁଣିଥିଲି, ରିଟାୟାର୍ଡ଼ ହେଲା ପରେ ମିଳିଥିବା ପଇସାରୁ ମା'ପାଇଁ ଖୁବ୍ ଗହଣାଗାଣ୍ଠି ତିଆରି ହୋଇଥିଲା । ହେଲେ ଗହଣା ବି ତ କିଛି ଦେଖାଯାଉନି ।

ମୁଁ ଘରୁ ବାହାରିଲି । ମୋ ପଛେ ପଛେ ନିରୁଦା' ମଧ୍ୟ ଆସିଲା । ନିଜ ବଡ଼ ଝିଅକୁ କହିଲା, ''ବେଟା, ପିଇସି ବସିବାପାଇଁ ଚେୟାର୍ ଆଣି ଦେ ।'' ଚେୟାର୍‌ରେ ବସି ମୁଁ ଖୋଲା ପଡ଼ିଆକୁ ଅନାଉଥାଏ । ଏତିକିବେଳେ ମା' ଆସି ମୋ ପଛରେ ଛିଡ଼ାହେଲା । ପଛକୁ ଓଲଟି କହିଲି, ''ଛିଡ଼ା କାହିଁକି ହେଲୁ ? ବସୁନୁ ।'' ତା' ପରେ ରହ କହି ତା'ପାଇଁ ଚେୟାର୍‌ଟିଏ ଟାଣି ଆଣିଲି । ମା' ଓ ଝିଅ ଏବେ ପାଖାପାଖି ବସିଲୁ । ମା'କୁ କହିଲି, ''ମତେ ଶୁଣି ଖୁବ୍ ଭଲ ଲାଗିଲା ଯେ ତୁମେମାନେ ସେ ଗୁହ-ମୂତ ଖାଇବା ଛାଡ଼ିଦେଇଛ । ଏବେ ତୁ ଟିକେ ଧ୍ୟାନ ଦେଇଥିବୁ । ନୋହିଲେ ପୁଣି ନୂଆ କରି ଆରମ୍ଭ ହୋଇ ନଯାଉ ।'' ମା' ମୋ ଆଡ଼କୁ ଦେଖି ଅଳ୍ପ ଅଳ୍ପ ହସିଲା । ମୁଁ ବୁଝିଗଲି, ଆଜି ଦୁହେଁ ପିଇବେ । ମା' ଆଗତୁରା କହିସାରିଲାଣି । ଆଜି ଦିନକ ପିଇବାକୁ ଦେ । ଆଉ କେବେ ପିଇବିନି । ମୁଁ କିଛି କହିଲି ନାହିଁ । ଯୋଉ ଗାଈର ଗୁହ ଖାଇବାର ଅଭ୍ୟାସ ଯେତେ ଯାହା ହେଲେ ବି ସେ ତାକୁ ଛାଡ଼ିପାରିବ ନାହିଁ । ମୁଁ ମନେ ମନେ ଚିନ୍ତା କଲି । ସାମାନ୍ୟ ନୀରବତା ପରେ ପଚାରିଲି, ''ଘରର ବାକି ଜିନିଷପତ୍ର କୁଆଡ଼େ ଗଲା ?'' ମା' କହିଲା, ''ଆମେ ଆଗରୁ ଯେଉଁ କଲୋନୀରେ ଥିଲେ, ସେଠି ସବୁ ପଡ଼ିଛି । ଘର ତିଆରି ହେଇଯାଉ, ସବୁ ଆଣି ଆସିବି'' । ପୁଣି ପଚାରିଲି, ''ତୋ' ପାଇଁ କୁଆଡ଼େ ଗହଣା ଗାଣ୍ଠି ସବୁ ତିଆରି ହୋଇଥିଲା । କୁଆଡ଼େ ଗଲା ସେସବୁ ?'' ମା' କହିଲା, ''ଅଛି । ବେଙ୍କ୍‌ରେ ରଖା ହୋଇଛି ।'' କାଳେ ମୁଁ ଅଧିକ ପଚାରିବି ସେହି ଆଶଙ୍କାରେ ମା' କଥା ବଦଳେଇଦେଲା । ହସିହସି କହିଲା, ''ତୁ ତ କେତେ ମୋଟୀ ହେଇଯାଇଛୁ । ଗୋରୀ ବି । ପଞ୍ଜାବୀ ଝିଅ ପରି ଦିଶିଲୁଣି । ମତେ ଦେଖ କେତେ ଦୁର୍ବଳ ହୋଇଗଲିଣି ।

ମୁଁ କେବଳ ମା'ର କଥା ଶୁଣୁଥାଏ । ମୂଳରୁ ଶେଷ ଯାଏଁ ତା'ର ମିଛ । ଘରର ସବୁ ଜିନିଷ ମା'ର ବାପଘର ଲୋକଙ୍କ ଘରେ ବନ୍ଧାପଡ଼ିଛି । ସେମାନେ କହୁଛନ୍ତି, ଏତେ ଦିନ ଧରି ଆମେ ତୁମର ଖର୍ଚ୍ଚବାର୍ଚ୍ଚ କଥା ବୁଝିଲୁ । ଏବେ ଏତିକି ପଇସା ନଦେଲେ ଜିନିଷ ଫେରି ପାଇବ ନାହିଁ । ଚାକିରି ସରିଗଲା ପରେ ସରକାରୀ ଘର ଛାଡ଼ିବାକୁ ପଡ଼ିବାରୁ ବାପା ଯାଇ ମା' ପରିବାର ଲୋକଙ୍କ ଘରେ ଆଶ୍ରୟ ନେଲେ । ପାଖରେ ପଇସା ଥିଲା । ସେହି ଲୋଭରେ ସେମାନେ ମା-ବାପାଙ୍କୁ ନିଜ ପାଖରେ ଆଶ୍ରୟ ଦେଇଥିଲେ । ପଇସା ସରି ଆସିଲାରୁ କୁକୁରକୁ ତଡ଼ି ଦେଲା ପରି ଘରୁ ଦୂରେଇ ବାହାର କରିଦେଲେ । ସେତେବେଳେ ନିରୁଦା' ସେହି ପଡ଼ାରେ ଯାଇ ପରିବା ବିକ୍ରୀ କରୁଥିଲେ । ବାପାଙ୍କର ତାଙ୍କ ସହ ପରିଚୟ ଥିଲା । ବାପା-ମା'ଙ୍କ କଷ୍ଟ ଦେଖି କହିଲା, ''ତୁମେ ନିଜ ସମ୍ବନ୍ଧୀୟଙ୍କ ଘରେ କାହିଁକି ପଡ଼ିରହିଛ ? ଏଥିରେ କଳହ ବଢ଼େ । ଆଉ କେଉଁଠି ଯାଇ

ରହୁନ କାହିଁକି ?'' ବାପା ନିରୁପାୟ ହୋଇ ନିରୁଦା'ଙ୍କୁ ଭଡ଼ାଘର ଖୋଜିବାପାଇଁ କହିଥିଲେ । ନିରୁଦା' ଆମ୍ବେଦକର କଲୋନୀରେ ମୋର ଭାଉଜଙ୍କ ମାମୁଘର ପାଖରେ ଭଡ଼ାଘରଟିଏ ଯୋଗାଡ଼ କରିଦେଇଥିଲା । ସେଠି ମଧ୍ୟ ବାପା ବେଶି ଦିନ ରହିପାରିଲେ ନାହିଁ । ଅସଲରେ ଏମାନେ ଭଲ ଭାବରେ କେବେ ବି ରହିବା ଶିଖି ନାହାନ୍ତି । ଆରମ୍ଭରେ କିଛି ଦିନ ଭଦ୍ରଲୋକ ଭଳି ରହନ୍ତି । ମିଠାମିଠା କଥା । ପଡ଼ୋଶୀଙ୍କ ସାଙ୍ଗରେ ଏମିତି ମିଳିମିଶି ଯିବେ, ଲାଗିବ ଗୋଟାଏ ପେଟର ସମସ୍ତେ । ଯେମିତି ମିଶନ୍ତି, ସେମିତି ନିନ୍ଦା ସମାଲୋଚନା ବି କରନ୍ତି । ବସି ବସି ମୁଁ ବାପାମା'ଙ୍କ କଥା ଚିନ୍ତା କରୁଥାଏ । ଘରର ଜିନିଷ ସବୁ ଫେରାଇ ଆଣିବାକୁ କିଏ ଏମାନଙ୍କ ପକ୍ଷରୁ ଯାଇ କହିବ ? କିଏ ଜାଣିଶୁଣି ବିପଦକୁ ବରଣ କରିବ ? ଗହଣାର ବି ସେହି ଅବସ୍ଥା ହୋଇଥିବ । ମଦ ପିଇ ପଡ଼ିଥିବେ । ଦରଜା ଖୋଲା ଥିବ, କେହି ଆସି ଦେହରୁ ଗହଣାଯାକ ଖୋଲିନେଇ ଚାଲି ଯାଇଥିବ, ଜାଣି ବି ପାରି ନଥିବେ । ମା'ର ସତ କହିବାକୁ ସାହସ ନାହିଁ ।

ଏ ଭିତରେ ବାପା ବେଗ୍‌କୁ ସାଇକେଲ୍‌ରେ ଝୁଲାଇ ବୋତଲ ଆଣିବାକୁ ଚାଲି ଯାଇସାରିଥିଲେ । ଜଣା ପଡ଼ିଲାନି କେତେବେଳେ ଉଠି ଚାଲିଗଲେ । ଫେରିଲେ ଅଳ୍ପ ସମୟ ପରେ । ଭାରି ଖୁସି ହୋଇ କ'ଣ କ'ଣ ସବୁ କହୁଥାନ୍ତି । ଘର ଭିତରକୁ ପଶିଗଲେ । ମା'ବି । ମାଲ୍ ମିଳିଗଲା ପରେ ବାପାଙ୍କଠାରୁ ମା' ଅଧିକ ଖୁସୀ ଜଣାପଡୁଥାଏ । ମା' ଓ ବାପାଙ୍କ ଘର ଭିତରକୁ ଯିବା ପରେ ମୁଁ ନିରୁଦା'କୁ କହିଲି, ''ଦାଦା, ଜାଣିଛ ବାପା କୁଆଡ଼େ ଯାଇଥିଲେ ?'' ନିରୁଦା କହିଲା, ''ମତେ ସବୁ ଜଣା'' । ତୋର ଆସିବା ଖୁସିରେ ବହୁତ ଦିନ ପରେ ଆଜି ମନ ଖୋଲି ପିଇବେ । ମନା କରିବୁନି । ବାପାଙ୍କୁ ମଦ ପିଇବାକୁ ଗୋଟାଏ ବାହାନା ମିଳିଯାଇଥିଲା । ମହା ଆନନ୍ଦରେ ସେ ପିଇ ବସିଲେ । ତାଙ୍କୁ କିଛି ନକହି ମୁଁ ନିରୁଦା'ଙ୍କୁ ପଚାରିଲି, ''ଏଠି ପାଖରେ କୌଣସି ଏସ୍‌ଟିଡି ଫୋନ୍ ବୁଥ୍ ଅଛି ? ମୋତେ ଫୋନ୍ କରିବାପାଇଁ ଯିବାକୁ ହେବ ।'' ନିରୁଦା କହିଲା, ''ହଁ ଅଛି'' । ତୋର ଯେତେବେଳେ ଯିବାକୁ ହେବ କହିବୁ, ମୁଁ ସାଇକେଲ୍‌ରେ ନେଇଯିବି ।'' ମୁଁ କହିଲି, ''ଥରେ ଶଙ୍କରକୁ ଭେଟିବାକୁ ଯିବି । ତା'ର ବଡ଼ ପୁଅ ତା'ପାଇଁ ସାର୍ଟ୍‌ଟିଏ ପଠେଇଛି । ସେ ସବୁ ଦେଇ ଆସିବି । ତାକୁ କହିବି, ପିଲାଏ ଆସିଛନ୍ତି, ଯଦି ଇଚ୍ଛା, ଭେଟିକି ଯିବ ।'' ନିରୁଦା ପଚାରିଲା, ''କ'ଣ ଏମାନଙ୍କର ବାପା ଏଠି ରହେ ?'' ମୁଁ ହଁ କରିବାରୁ ସେ ପୁଣି ପଚାରିଲା, ''ତୋର ସେଠି ରହିବା କେତେ ବର୍ଷ ହେଲାଣି ?''ଉତ୍ତର ଦେଲି, ''ଚାରି ବର୍ଷ । ନିରୁଦା ପଚାରିଲା, ''ଏ ମଝିରେ କ'ଣ ସେ ଥରେ ବି ତତେ ଭେଟିବାପାଇଁ ଆସିନି ?'' ମୁଁ କହିଲି, ''ନା, ହେଲେ ସେଥିରେ କ'ଣ ଅଛି ? ମୁଁ ପିଲାଙ୍କୁ ନେଇ ସେଠି ଭଲରେ ଅଛି, ଆଉ ସେ ଏଠି ନିଶ୍ଚୟ ଖୁସିରେ ରହୁଥିବ ।''

ମୁଁ ନିରୁଦା' ସହିତ କଥାଭାଷା କରୁଥାଏଁ । ଠିକ୍ ସେତିକିବେଳେ ଲୁଙ୍ଗି ଓ ଟିସାର୍ଟ ପିନ୍ଧି ଜଣେ ପ୍ରାୟ ଚାଳିଶ ବର୍ଷ ବୟସର ପତଳା ଲୋକ ସେଠି ପହଞ୍ଚିଲା । ବିଡ଼ି ପିଉଥାଏ । ଭାରି ଖୁସ୍ ଜଣାପଡୁଥାଏ ସେ । ମତେ ଦେଖି ନିରୁଦା'କୁ ପଚାରିଲା, କାକାର ଝିଅ ଆସିଲା । ଜ୍ୱାଇଁ କାହିଁ ?'' ନିରୁଦା କହିଲେ, ''ଜୋଇଁ ତ ଏଠି ରହୁଛି ।'' ଲୋକଟି ଯେତେବେଳେ ପଚାରିଲା

କେଉଁଠି ରହେ, ନିରୁଦା କହିଲା, ''ଆରେ ଦୁର୍ଗାପୁର ବଜାର ପାଖରେ ଯେଉଁ ଡେକୋରେଟର ପେଣ୍ଡାଲ୍ ନାହିଁ ? ସେଠି ସେ କାମ କରେ ।'' ମୋର ପିଲା ଅଗଣାରେ ଖେଳୁଥିଲେ । ସେମାନଙ୍କ କଥା ପଡ଼ିବାରୁ ନିରୁଦା ଇସାରାରେ ଦେଖାଇଦେଲା ।

ବାପା ଘର ଭିତରେ ବୋତଲ ନେଇ ବସିଥାନ୍ତି । ନିରୁଦା' ସବୁ କଥା ଲୋକଟି ଆଗରେ ସତ ସତ ବଖାଣି ଦେଉଥିବାରୁ ସେ ଶୀଘ୍ର ସାମନାକୁ ଆସି ଠିଆହେଲେ । ତାଙ୍କୁ ଦେଖି ଦୁହେଁ ଚୁପ୍ ହେଇଗଲେ । କିଛି କ୍ଷଣ ପରେ ସେହି ଲୋକଟି ହସି ହସି ବାପାଙ୍କୁ କହିଲା, ''ଆଜି କାକା ମଣିଷ ଭଳିଆ ଦିଶୁଛି ।'' ତା' କଥାର ଉଦ୍ଦେଶ୍ୟ ବୁଝିପାରି ବାପା ହୋ ହୋ ହୋଇ ହସିଲେ । କହିଲେ, ''ଜାଣିଛୁ, ଆଜି କେତେ ଖୁସୀ ମୁଁ ?'' ସେ କଥାବାର୍ତ୍ତା ଭିତରେ ଘର ଭିତରକୁ ବାରମ୍ବାର ଚାଲିଯାଆନ୍ତି ଓ ପିଇ କି ଫେରନ୍ତି । ଏଥର ଫେରି ସେ ମତେ ପଚାରିଲେ, ''ତୁ କ'ଣ ଲେଖୁଥିଲୁ, ତାର କ'ଣ ହେଲା ?'' ମୁଁ କହିଲି, ''ସେ ତ କେବେଠୁଁ ସରିଗଲାଣି । ତା' ପାଇଁ ମୁଁ ଆସିଛି ଏଥର । ତା'ର ହିନ୍ଦୀ ଅନୁବାଦ ଛପା ହେଲାଣି । ସେହି କାମରେ ମୁଁ କଲିକତା ଯିବି ।'' ମୋ କଥା ଶୁଣି ବାପା ବହୁତ ଖୁସୀ ହେଲେ । ହସିହସି କହିଲେ, ''ଦେଖା ତ ସେ ବହି ଟିକେ ।'' ମୁଁ ବହି ଆଣିବାକୁ ଭିତରକୁ ଗଲି । ମା' ଖଟ ପାଖରେ ତଳେ ଗ୍ଲାସ୍ ନେଇ ବସିଛି । ମତେ ଦେଖି ସେ ଡରିଗଲା । ଗ୍ଲାସ୍‌କୁ ଖଟତଳେ ଲୁଚାଇବାକୁ ଚେଷ୍ଟାକଲା । ମୋ ପାଇଁ ଏ ଦୃଶ୍ୟ କୋଉ ନୂଆ ଯେ ? ତଥାପି ମୋର ସମ୍ମାନ କରୁଛି ମା' । ଭଲ କଥା । ଏସବୁ ଚିନ୍ତା କରି ମୁଁ ଗ୍ଲାସ୍ ଦେଖିନଥିବାର ଅଭିନୟ କଲି ଏବଂ ସୁଟ୍‌କେଶ୍‌ରୁ ବହି ଆଣି ଅଗଣାକୁ ଆସିଲି । ସୁଟ୍‌କେଶ୍ ଖୋଲା ରହିଗଲା । ଲୋକଟି ଯିବାକୁ ବସିଥିଲା । ବାପା ତାକୁ ଅଟକେଇ ଥାଆନ୍ତି । ମୋ ହାତରୁ ବହିଟିକୁ ନେଇ ସେ ଦୁଇଚାରି ପୃଷ୍ଠା ଓଲଟ ପାଲଟ କଲେ । ଖୁସିରେ ବହିଟିକୁ ତା' ହାତକୁ ବଢ଼େଇଦେଇ କହିଲେ, ''ଦେଖ୍, ମୋର ଝିଅ ଏ ବହି ଲେଖିଛି ।'' ବହିଟିକୁ ଧରି ଲୋକଟି ମତେ ପଚାରିଲା, ''ସତରେ ତୁ ଲେଖିଛୁ ଏ ବହି ?'' ମୋର ଉତ୍ତର ଦେବା ପୂର୍ବରୁ ବାପା କହିଲେ, ''ହଁ ପରା ।'' ତା' ପରେ ପୁଣି ପଚାରିଲା, ''ତୁ ଲେଖାପଢ଼ା ଜାଣୁ ?'' ମୁଁ କହିଲି, ହଁ, ସେଠିକି ଯାଇ ଶିଖି ଯାଇଛି ।'' ସେ ବହିଟିର ପୃଷ୍ଠା ଓଲଟାଇ କହିଲା, ''ବାପରେ ବାପ, ଏଇଟା ତ ହିନ୍ଦୀ । ମୋର ବାପ ବି ଜାଣି ନଥିବ । ତୁ କ'ଣ ହିନ୍ଦୀରେ ଲେଖିଛୁ ? ମୋ ପୂର୍ବରୁ ବାପା ଜବାବ ଦେଲେ, ନାରେ ନା ବହିଟା ପରା ଅନୁବାଦ ହୋଇଛି ।'' ଯା' ପରେ ଘରକୁ ପ୍ରାୟ ଷାଠିଏ ବର୍ଷ ବୟସର ଏକ ଗାଢ଼ ଚିକ୍କଣ କଳା ଲୋକ ଆସିଲା । ଲୁଙ୍ଗି ପିନ୍ଧିଥାଏ । ତାକୁ ମଧ୍ୟ ବାପା ଖୁସିରେ ମୋର ବହି ଦେଖାଇଲେ । କହିଲେ, ତୁମେ ଟିକେ ଦେଖୁଛ ଦାଦା, ଏଇ ବହି ମୋର ଝିଅ ଲେଖିଛି । ପଢ଼ି ଶୁଣାଇବ ତ ।'' ସେ ପଚାରିଲେ, ''ତୁମ ଝିଅ କ'ଣ ଲେଖକ ?'' ବାପା ହଁ କହି ତାଙ୍କ ହାତରେ ବହିଟିକୁ ଦେଲେ । ତା'ପରେ ଘରକୁ ଯିଏ ଆସେ, ବାପା ଖୁସିରେ ତାକୁ ମୋର ବହି ଦେଖାନ୍ତି । ଏତେ ଖୁସି ବାପାଙ୍କୁ ଆଗରୁ କେବେ ଦେଖି ନଥିଲି ମୁଁ । ସେ ଭାବୁଥିଲେ, ବୋଧେ ତାଙ୍କ ପରିବାରର ଅନେକ ଲୋକ ଆଗରୁ ସ୍କୁଲ୍ ପାଠ ପଢ଼ିଛନ୍ତି । ହେଲେ କେହି ସାହିତ୍ୟ ନାମରେ କେହି କିଛି ଲେଖିଥିବାର ନଜିର ନାହିଁ । ପରିବାରରେ ଯାହା କେହି କରି ନଥିଲେ ଆଜି ତାଙ୍କ ଝିଅ କରି ଦେଖାଇଦେଲା !

ସଂଧ୍ୟା ହେବାକୁ ବସିଲା । ମୋର ଆସିବାର ଅନେକ ସମୟ ହୋଇଗଲାଣି । ହେଲେ କାହିଁ କୋଉଠି ଆଢୁଆଳ ଟିକେ ଖୋଜି ପାଉ ନଥିଲି । ଭୀଷଣ ପରିସ୍ରା ମାଡୁଥିଲା ମୋତେ । ଅଟକେଇବା ଖୁବ୍ କାଠିକର ହେଲାଣି । ନିରୁଦା'ର ପତ୍ନୀଙ୍କୁ ପଚାରିଲି, ''ଭାଉଜ ତୁମେମାନେ ପରିସ୍ରା କରିବାକୁ କୋଉଠିକି ଯାଅ ।'' ସେ କହିଲେ, ଚାଲ୍ ଆମେ କ୍ଷେତଆଡୁ ବୁଲିଆସିବା ।'' ଏତିକି କହି ସେ ମୋତେ କ୍ଷେତକୁ ନେଇଗଲେ । ଘର ଆଗରେ ଯେତେ ଦୂର ଯାଏ ଆଖି ଯିବ, ନିରୁଦା' କ୍ଷେତ । କଥାବାର୍ତ୍ତା କରି କରି ଆମେ କ୍ଷେତର ଆଡ଼ି ଉପରେ ଚାଲୁଥାଉଁ । ସୋରିଷ ଫସଲ ପାରି ହେଲା ପରେ ଆଳୁର ଫସଲ । ତା'ପରେ ମୂଳା । ସାମାନ୍ୟ ବିରକ୍ତ ହୋଇ କହିଲି, ''କ'ଣ ଭାଉଜ ମୋର ପେଟ ଫାଟିଯାଉଛି । କହୁନ କୋଉଠି ବସିବି ?'' କ୍ଷେତ ମଝିରେ ଏକ କୋଣକୁ ଦେଖାଇ ଭାଉଜ କହିଲେ, ''ସେଇଠି ବସି ଯାଉନୁ ।'' ମୁଁ କହିଲି, ''ସେଠି ପରା ଜଣେ କେହି ଅଛି ।'' ଭାଉଜ କହିଲେ, ''ଆରେ ସେ ତ ବହୁତ ଦୂରରେ । ତୁ ବସୁନୁ ସେଇଠି । ମୁଁ ପୁଣି କହିଲି, ''ସେ ପରା ଆମ ଆଡ଼େ ଦେଖୁଛି ।'' ଭାଉଜ କହିଲେ, ''ଦେଖୁଥାଉ । ସେଥିରେ କ'ଣ ଅଛି । ଲୋକମାନେ ତ ରାସ୍ତାକଡ଼ରେ ନିଜ ପେଣ୍ଟର ଚେନ୍ ଖୋଲି ପରିସ୍ରା କରନ୍ତି । ସେମାନଙ୍କୁ ତ ଲାଜ ମାଡ଼େନି । ଆମ ସ୍ତ୍ରୀ ଲୋକଙ୍କୁ ହିଁ ସବୁ ଲାଜ । ତୁ ବସ୍ ସେଇଠି । ସେ ଦେଖୁଛି ତ ଦେଖୁଥାଉ । ମୋର ବି ଆଉ ଅଟକିବାର କ୍ଷମତା ନଥିଲା । ହେ ଭଗବାନ ! ପେଟରେ ଯେମିତି ମାଠିଆରେ ମାଠିଆଏ ପାଣି ଭର୍ତ୍ତି ହେଇ ରହିଥିଲା । ବେଲୁନ୍ ଭଳିଆ ହେଇଯାଇଥିଲା ପେଟଟା । ମୁଁ ଆଶ୍ୱସ୍ତ ହେଲି । ଏବେ ଖୁବ୍ ହାଲ୍କା ଲାଗୁଥାଏ । ମୁଁ ଛିଡ଼ା ହେଇ ଦେଖେ ତ ସେ ଶଳା ସେହି ଜାଗାରେ ଛିଡ଼ା ହୋଇ ଆମ ଆଡ଼େ ଉଣ୍ଡୁଥାଏ । ମୁଁ ଭାଉଜକୁ ପଚାରିଲି, ଲୋକଟା କ'ଣ ପାଗଳ ନା କ'ଣ ? ଭାଉଜ କହିଲେ, ''ହଁ ଝିଅଙ୍କ ପାଇଁ ସେ ପାଗଳ ।'' ଚାରିଆଡ଼କୁ ଅନାଇ ମୁଁ କହିଲି, ''ଭାଉଜ, ଆଉ କେତେ ଦୂର ଯିବା ? ଅନ୍ଧାର ହେବାକୁ ବସିଲାଣି । ଫେରିବା । ଆଗରେ ଜଙ୍ଗଲ ନା ?'' ଭାଉଜ କହିଲେ, ''ଆରେ ଜଙ୍ଗଲ ନୁହଁ, ସେଇଟା ପରା କାଁଶ ବଣ । ତା' ପଛକୁ ଅଛି ଦାମୋଦର ନଦୀ ।'' ନଦୀର ନାଁ ଶୁଣି ମୁଁ ଭାରି ଖୁସୀ । କହିଲି, ''ଆଗରୁ କାହିଁକି କହିଲ ନାହିଁ । ମୁଁ ତ ଖିଆପିଆ ଛାଡ଼ି ନଦୀକୁ ଯାଇଥାନ୍ତି । କାଲି ସକାଳେ ଯାଇ ପ୍ରଥମେ ମୁଁ ନଦୀ ବାଲିରେ ବସିବି । ତୁମେ ମୋ ସାଙ୍ଗରେ ଆସିବ ଟି ?'' ସେ କହିଲେ, ''ମୁଁ ଯଦି ଆସି ନପାରେ', ତା'ହେଲେ ମୋର ବଡ଼ ଝିଅ ତୁମ ସାଙ୍ଗରେ ଆସିବ ।'' ଆମେ ଆଉ ଆଗକୁ ଗଲୁନି । ଫେରିବା ବାଟରେ ଭାଉଜ କହିଲେ, ''ବୁଝିଲ, ଇୟେ ସବୁ କ୍ଷେତ ଆମର । ତୁମେ ଠିକ୍ କରି ଦେଖିପାରିଲନି । ଏବେ ତ ଅନ୍ଧାର ହେଲାଣି । ଚାଲ ସକାଳେ ଆସିବା ।''

ଘରକୁ ନଆସୁଣୁ, ନିରୁଦା' ବଡ଼ଝିଅକୁ କହିଲା, ''ଟିକିଏ ଚା' ତିଆରି କଲୁ । ପିଇସୀର ସଂଧ୍ୟାରେ ଚା' ପିଇବାର ଅଭ୍ୟାସ ଅଛି ।'' ମୋତେ ଚାହିଁ ପୁଣି କହିଲେ, ''କ'ଣ ଚା' ପିଇବୁ ତ ?'' ମୁଁ କିଛି କହିଲି ନାହିଁ । ଭାଉଜ ଝିଅକୁ ଡାକି କ'ଣ କିଛି କହିଲେ, ମୋତେ ଶୁଣାଗଲା ନାହିଁ । ଝିଅ ତା' ବାପା ପାଖକୁ ଯାଇ ଧୀରେ କରି କହିଲା, ''ବାପା, ରେଜା ପଇସା ଅଛି ଯଦି ଦେଲ, ଚା' ପତି କିଣିକି ଆଣିବି । ନିରୁଦା' ମୋର ବାପାଙ୍କ ଘରକୁ ନିର୍ଦ୍ଦେଶ କରି କହିଲା,

''ଆମ ଘରେ ନାହିଁ ଯଦି ସେଇଠି ଦେଖୁନୁ ।'' ବଡ଼ ଝିଅ ମୋ ବାପାଙ୍କ ଘରକୁ ଯିବାକୁ ବେଶି ପସନ୍ଦ କରେ ନା । ମଦ ପାଣି ପିଇ ବାପା କାହାକୁ କ'ଣ କହନ୍ତି ଜାଣି ପାରନ୍ତି ନାହିଁ । କିଏ କହିବ ଏବେ ସେ ହୋସ୍‌ରେ ଅଛନ୍ତି, ନା ବେହୋସ୍ । ନିଶା ଛାଡ଼ିଲେ କହିବେ, ମୁଁ ତ କହି ନଥିଲି ଏ ସବୁ । ପରେ ତାଙ୍କର କିଛି ମନେ ନଥାଏ । ହୁଏତ ଏହି ଝିଅ ସହିତ ବି ସେ କେତେବେଳେ ଦୁର୍ବ୍ୟବହାର କରିଛନ୍ତି ! ସେଇଥିପାଇଁ ସେ ରାଗରେ ତାଙ୍କ ଘରକୁ ଚା' ପତି ମାଗିବାପାଇଁ ଯିବାକୁ ଚାହୁଁନି । ସେ ମା' ପାଖରେ ଯାଇ ଫେରାଦ ହେଲା, ''ବାପା ମତେ ତାଙ୍କ ଘରକୁ ଯାଇ ଚା' ପତି ଆଣିବାପାଇଁ କହୁଛନ୍ତି । ମୁଁ ସେଠିକି ଯିବିନି । ଯିବାର ଅଛି ଯଦି ତୁ ଯା ।'' ନିରୁଦା ପାଟି କରି କହିଲା, ''କ'ଣ ହେଲା ? ତୁ ତାଙ୍କ ଘରକୁ ଯାଉନୁ କାହିଁକି ? ମୁଁ କହୁଛି ପରା ତୁ ଯା' । ଅବଶ୍ୟ ନିରୁଦା' ବୁଝିଗଲା, ଝିଅକୁ କାକା କ'ଣ କିଛି କହିଛନ୍ତି । ନୋହିଲେ, ସେ ମନା କରନ୍ତା ନି । ଜାଣିଶୁଣି କାକା ଖରାପ କଥା କହିନଥିବେ । ହେଲେ ଜାଣିଶୁଣି ଖରାପ କଥା କହିଲେ ବି କ'ଣ କରିହେବ ଯେ ? ଦରକାର ପଡ଼ିଲେ ସେ ତ ନିରୁଦାକୁ ଗାଳିଫଜିତ ବି କରିବେ । ତଥାପି ନିରୁଦା' ଏମାନଙ୍କର କଥାକୁ ଭୁଲ୍ ବୁଝେ ନାହିଁ । ଅନ୍ୟଥା ବାପା-ମା ଏଠି ରହି ପାରନ୍ତେ ନାହିଁ । ନିରୁଦା' ମା' ବାପାଙ୍କୁ ପୂରାପୂରି ନିଜର ଭଳି ମାନ୍ୟ କରେ । ଅବଶ୍ୟ ସବୁ ଠିକ୍ ଥିଲେ ମା'ବାପା ବି ନିରୁଦା'କୁ ଖୁବ୍ ଭଲ ପାଆନ୍ତି । ନିଜ ସନ୍ତାନ ପରି ।

ନିରୁଦା'ର ବଡ଼ଝିଅ ବାପଠାରୁ ଗାଳିଖାଇ ମୋ ବାପାଙ୍କ ଘରକୁ ଚା'ପତି ମାଗିବାପାଇଁ ଗଲା । ହେଲେ ଘର ଭିତରକୁ ପଶିଲା ନାହିଁ । ଦରଜା ବାହାରୁ ମୋ ମା'କୁ ଡାକିଲା । ''ଆଈ, ଚା' ପତି ଅଛି ଯଦି ଟିକିଏ ଦେ । ପିଇସୀ ଲାଗି ଚା' ତିଆରି କରିବି । ମା' ଖଟରେ ମୁଣ୍ଡ ଆଡ଼କୁ ପିଠି କରି ବସିଥାଏ । ବାପା ତଳେ ଗଡ଼ୁଥାନ୍ତି । ଝିଅର ଡାକ ଶୁଣି ବାପା କହିଲେ, ''ତୋର ପିଇସୀକୁ ଚା' କରି ଦେବୁ । ମତେ ଦେବୁନି ? ଝିଅ ବି ଥଟ୍ଟା କରିବାରେ ଓସ୍ତାଦ । କହିଲା, ''ତୁମେ ତ ଆଜି ଥଣ୍ଡା ଚା' ପିଉଛ । ଗରମ ଚା'ର କ'ଣ ଦରକାର ।'' ବାପା ହସିହସି ଚୁପ୍ ଶାଳୀ କହିଲେ ଓ ବାହାରକୁ ଆସି ଚେୟାର୍‌ରେ ବସିଲେ । ମା' ଖଟ ଉପରେ ବସିଥାଏ । କହିଲା, ଦେଖିଲୁ, ଥାକରେ ଚା'ର ଡବା ଅଛି । ନେଇଯା । ତଥାପି ଝିଅ ଘରଭିତରକୁ ଗଲା ନାହିଁ । ଭାଉଜ ତା'ପରେ ବିରକ୍ତ ହୋଇ ନିଜେ ଚା' ପତି ନେଇଗଲେ । କେବଳ ଚା' ପତି ନୁହେଁ, କେବେ ତେଲ ନାହିଁ ତ କେବେ ସର୍ଫ ଓ ଆଉ କେବେ ସାବୁନ । ନେଇ ଆସ ସେ ଘରୁ । ଯେ ନାହିଁ, ସେ ନାହିଁ, ସଦାବେଳେ ଲାଗିଥାଏ । ମା' ବାପା ମଧ୍ୟ ଏମାନଙ୍କ ଘରୁ ବହୁତ ସାହାଯ୍ୟ ପାଆନ୍ତି । ବାପା ନିରୁଦା ଘରକୁ ଆସି ରହିବା ଦିନୁ ପରିବା କିଣିବାଲାଗି ଦୋକାନକୁ ଯାଇ ନଥିବେ । ଚୁଲିରେ ଭାତ ବସେଇ ମା' ନିରୁଦା'ର ଝିଅ ବା ପୁଅକୁ କହିବ, ''ଗଲୁ, କ୍ଷେତରୁ ମୂଳା ଦି'ଟା ଖୋଳି ଆଣିବୁ । ଆଳୁ, କୋବି, ମଟର ଚଣା, ଟମାଟୋ ବି ନିରୁଦା'ଙ୍କ କ୍ଷେତରୁ ଆସେ । ଦୁଇ ପରିବାର ମଧ୍ୟରେ ଭଲ ମିଳାମିଶା ରହିଛି ।

ନିରୁଦା'ର ସ୍ତ୍ରୀ ଚୁଲିରେ ଶୁଖିଲା ତାଳପତ୍ର ଲଗେଇ ଚା' ତିଆରି କରୁଥାନ୍ତି । ମୁଁ ରନ୍ଧାଘରକୁ ଯାଇ ତାଙ୍କ ପାଖରେ ବସିଲି । ଭାଉଜ ମଝିଆଁ ଝିଅକୁ କହିଲେ, ''ତୋ ପିଇସୀଙ୍କ ପାଇଁ ପୀଢ଼ାଟିଏ

ଆଣ ।'' ସେଇଠି ବସି ମୁଁ ବାପାଙ୍କ କଥା ଚିନ୍ତାକଲି । ଆଗ ଅପେକ୍ଷା ସେ କେତେ ବଦଳିଗଲେଣି । ହୁଏତ ଗାଧୋଇଲା ବେଳେ ସାବୁନ୍ ଲଗାଉ ନାହାନ୍ତି । ଆଗରୁ ତାଙ୍କ ଦେହର ରଙ୍ଗ ଏତେ କଳା ନଥିଲା । ଆଗରୁ ସେ ସଫାସୁତୁରା କପଡ଼ା ପିନ୍ଧୁଥିଲେ । ଆଜିକାଲି କପଡ଼ା ମଇଳା ହେଲେ ବି ବଦଳାଇବାର ନାଁ ନେଉନାହାନ୍ତି । ଆଗରୁ ଦାଢ଼ି ବଢ଼ିବାକୁ ଦେଉନଥିଲେ । ଟିକିଏ ଦାଢ଼ି ନ ହେଉଣୁ ସେଫ୍‌ଟି ରେଜର୍‌ରେ ଖିଅର ହେଉଥିଲେ । ଗୋଟାଏ ଗିନାରେ ପାଣି ନିଅନ୍ତି । ସାମନାରେ ଦର୍ପଣ ରଖନ୍ତି । ଯେତେବେଳେ ସେ ଖିଅର ହୁଅନ୍ତି, ମୁଁ ପାଖରେ ବସି ଦେଖୁଥାଏ । ଦର୍ପଣରେ ନିଜ ଚେହେରା ଦେଖି ଗାଲରେ ସାବୁନର ଫେଣ ବାହାର କରନ୍ତି । ବାଁ ହାତରେ ଗାଲକୁ ଟାଣି ଡାହାଣ ହାତରେ ଧୀରେଧୀରେ ରେଜର ଚଲାନ୍ତି । ଛୋଟ ଛୋଟ ଦାଢ଼ିବାଳ ଓ ସାବୁନ ଫେଣ ଗାଲରୁ କଢ଼ା ହୁଏ । ଖିଅର ହେଲା ପରେ ଗାଲରେ ଫିଟିକିରି ପଥରକୁ ଘଷନ୍ତି । ମତେ ଚୁପ୍‌ଚାପ୍ ତାଙ୍କ ପାଖରେ ଖାଲିରେ ଖାଲିରେ ବସିଥିବାର ଦେଖି ରାଗରେ ଆଖି ଉଠେଇ ଦେଖନ୍ତି । ମୁଁ ଚଟ୍‌କରି ଦଉଡ଼ି ପଳାଏ । ଯାଇଁ କେଉଁଠି ବହିଟିଏ ଧରି ବସିଲେ ବା ଆଉ କିଛି କାମ କଲେ ନିସ୍ତାର ମିଳିବାର ଆଶା ଥାଏ । ମାତ୍ର ମୋର ଯାହା ଖୁସି ତାହା କରେ । ଘର କାମ କଲେ ମା' ଖୁସି ହୁଏ ଏବଂ ମା'କୁ ଖୁସି ଦେଖିଲେ ବାପା ବି ଖୁସୀ ହୁଅନ୍ତି ।

ନିରୁଦା'ର ବଡ଼ଝିଅ 'ପିଇସୀ ଚା' ନିଅ, ପିଇସୀ ଚା' ନିଅ' କହି ଥକି ଗଲାଣି । ଦୁଇ ତିନିଥର ସେ ଡାକିବା ପରେ ମୁଁ ଚମକି ପଡ଼ିଲି । କହିଲି, ''ଏଁ, ଆଣି ଦେ ।'' କପ୍‌କୁ ଆଗରେ ରଖି କହିଲି, ''ତୋ ଅଜାଙ୍କ ଚା' କେଉଁଠି ? ମତେ ଦେ; ମୁଁ ଦେଇଆସିବି ।'' ଚା ନେଇ ଘର ଭିତରକୁ ପଶିଲା ପରେ ମୋର ନଜର ପଡ଼ିଲା ବାପାଙ୍କ ଆଙ୍ଗୁଠି ଉପରେ । ତାଙ୍କ ଡାହାଣ ହାତର ତିନୋଟି ଆଙ୍ଗୁଠିରେ ରୁପାର ମୁଦି ରହିଥିଲା । ତହିଁରୁ ଗୋଟିଏ ବି ନାହିଁ । ତା' ଜାଗାରେ ଘୋଡ଼ା ନାଳ ଅର୍ଥାତ୍ ଲୁହା ପାତିରେ ତିଆରି ମୁଦିଟିଏ ରହିଛି । ମା' ମୋ ପାଖକୁ ଆସି ଠିଆହେଲା । ପଚାରିଲି, ''ତୁ ଚା' ପିଇବୁ ?'' ଝିଅକୁ କହିଲି, ''ଆଈପାଇଁ ଚା' ଆଣିନୁ ?'' ମା' କହିଲା, ମୁଁ ଚା' ପିଇବିନି । ଏବେ ସେ ଚା' କାହିଁକି ପିଇବ ନାହିଁ- ତାର କାରଣ କାହାକୁ ଅବୁଝା ନଥିଲା । ନିରୁଦା'ର ବଡ଼ ଝିଅ କହିଲା, ''ଆଈ ଏବେ ଗରମ ଚା' ପିଇବ ଯଦି ଥଣ୍ଡା ଚା' ପୁଣି କେବେ ପିଇବ ।'' ତା' କଥା ଶୁଣି ସମସ୍ତଙ୍କୁ ହସ ମାଡୁଥିଲା । ମାତ୍ର ଡରରେ କେହି ହସିଲେନି । ମଜା କଲେ ମା' କ'ଣ କହିଦେବ କାଳେ ! ହେଲେ ନିରୁଦା'ର ଝିଅ ହସ ସମ୍ଭାଳି ନପାରି ହିଃ ହିଃ ହୋଇ ହସି ପକାଇଲା । ସବୁ ବୁଝି ବିଚାରି ବାପା କଥାଟାକୁ ଘୋଡ଼ାଇବାକୁ ବୃଥା ଚେଷ୍ଟା କଲେ, ଜାଣି ଶାଗ ଦେଇ ମାଛକୁ ଘୋଡ଼ୁଛନ୍ତି । କହିଲେ, ''ରାନୀ, ମତେ ଖୁବ୍ ଥଣ୍ଡା । କିଛି ଘୋଡ଼ି ହେବାକୁ ଦେ ।'' ମା'କୁ ଦେଖିଲେ ହିଁ ଜଣାପଡୁଥିଲା ଯେ ସେ ଖୁବ୍ ପିଇଛି । ହୁଏତ ସେ ଭାବୁଥିବ, ତା ପିଇବା କଥା କେହି ଜାଣିପାରିବେନି । ହେଲେ ମଣିଷ ତ ଆଉ ପଶୁ ନୁହେଁ ଯେ ଦେଖିଲା ଶୁଣିଲା ପରେ ବି ବୁଝି ପାରିବନି । ସବୁ ଜଣାପଡ଼ି ଯାଉଥାଏ । ଛାଡ଼ ।

ସନ୍ଧ୍ୟା ବେଳକୁ ଟିକିଏ ଥଣ୍ଡା ଲାଗୁଥାଏ । ଅବଶ୍ୟ ବାପା ଯେତିକି ଥଣ୍ଡା ତା'ଠାରୁ ଅଧିକ ବଢ଼େଇ କହୁଥିଲେ । କଥାବାର୍ତ୍ତା ମଝିରେ ମୋର ମନେ ପଡ଼ିଲାନି ଯେ ବାପାଙ୍କ ଲାଗି ସାଲ୍ ଓ

ମା' ଲାଗି ଶାଢ଼ି ନେଇ ଆସିଛି । ବାପା ଥଣ୍ଡା ଲାଗିବା କଥା କହିବାରୁ ମନେ ପଡ଼ିଲା । ମୁଁ ଶୀଘ୍ର ଚା' ପିଇ କପ୍‌ଗୁଡ଼ିକୁ ଧୋଇବା ସକାଶେ ହେଣ୍ଡପମ୍ପ୍ ଆଡ଼କୁ ଯିବାକୁ ବାହାରିଲି । ଭାଉଜ କହିଲେ, "ଠାକୁରଝି, ତୁମେ ସେଇଠି ରଖିଦିଅ କପ୍‌ଗୁଡ଼ିକୁ । ସବୁଗୁଡ଼ିକୁ ଏକା ସାଙ୍ଗରେ ମୁଁ ଧୋଇ ଆଣିବି ।" ତାଙ୍କ ମୁହଁରୁ 'ଠାକୁରଝି' (ନଣନ୍ଦପାଇଁ ସମ୍ବୋଧନ) ଶୁଣି ଖୁବ୍ ଭଲ ଲାଗିଲା । ମୋର ତିନି ଜଣ ବଡ଼ ଭାଇ । କାହାରି ସ୍ତ୍ରୀ ମତେ 'ଠାକୁରଝି' ବୋଲି ସମ୍ବୋଧନ କରିବାର ଶୁଣିନି ।

ମୁଁ କପ୍ ରଖି ଘରକୁ ଗଲି ଏବଂ ସୁଟ୍‌କେଶ୍‌ରୁ ସାଲ୍ ଓ ଶାଢ଼ି କାଢ଼ିଲି । ଶାଢ଼ିକୁ ଖଟ ଉପରେ ରଖିଦେଇ ସାଲ୍‌କୁ ବାପାଙ୍କ ହାତରେ ଦେଲି । ମୋ ଆଡ଼କୁ ଦେଖି ଖୁସିରେ ତାଙ୍କ ଆଖିରେ ଲୁହ ଜକେଇ ଆସିଲା । ସେ ଭାବିଲେ, ବୋଧେ ଆଜି ଯାଏ ତାଙ୍କର କୌଣସି ପିଲାଠାରୁ ସେ ଉପହାରଟିଏ ସୁଦ୍ଧା ପାଇନାହାନ୍ତି । ଏକ ଦୀର୍ଘଶ୍ୱାସ ଛାଡ଼ି ସେ ଆଖିରୁ ଲୁହ ପୋଛିଲେ । ବାପାଙ୍କ ହାତରେ ସାଲ୍ ଦେଖି ମା'ର ମନ ସାମାନ୍ୟ ଉଦାସ ହୋଇପଡ଼ିଲା । ମୁଁ ଘରଭିତରକୁ ଯାଇ ଶାଢ଼ିଟିକୁ ଆଣିଲି ଓ ପୂର୍ବବତ୍ ତା' ହାତରେ ଦେଲି । ଦୁହିଁଙ୍କୁ ପାଦଛୁଇଁ ପ୍ରଣାମ କଲି । ନିରୁଦା'ର ପିଲାଏ ଚକିତ ହୋଇ ଦେଖୁଥାନ୍ତି । ପିଲାଙ୍କୁ ଦେଖି ମୋ ମନରେ ସେମାନଙ୍କ ପାଇଁ ସ୍ନେହ ବଢ଼ିଗଲା । ପିଲାଙ୍କୁ କିଛି ଦେଇ ପାରିଥିଲେ କେତେ ଖୁସି ଲାଗି ନଥାନ୍ତା ! ଭାବିଲି, ଷଷ୍ଠୀ ପାଖକୁ ଯଦି ଯାଇ ନପାରେ ତା' ପାଇଁ ଆଣିଥିବା ଶାଢ଼ିଟିକୁ ଭାଉଜକୁ ଦେବି । ମା ଶାଢ଼ିଟିକୁ ପାଇ ବହୁତ ଖୁସୀ ହେଲା । ତାକୁ ଓଲଟ ପାଲଟ କରି କହିଲା, "ଶାଢ଼ି ଉପରେ ଛାପା ଭାରି ସୁନ୍ଦର ହୋଇଛି । ତୋର ଭାଇମାନଙ୍କୁ ଧଳା ସାଲ୍‌ଟିଏଲାଗି କେତେ ଥର କହିଲିଣି । ହେଲେ ଆଜି ପର୍ଯ୍ୟନ୍ତ ଆସି ପାରିଲାନି । ଅନ୍ତତଃ ତୁ' ତ ଆଣିଦେଲୁ । ଦେଖ, ତୋ' ବାପା ଆଜି ଖୁସୀ ! ଆନନ୍ଦାଶ୍ରୁରେ ବାପାଙ୍କ ଆଖି ପତା ଓଦା ହୋଇଯାଇଥାଏ । ବାଷ୍ପରୁଦ୍ଧ କଣ୍ଠରେ କହିଲେ, "ଝିଅ, ହୁଏତ ଏହା ତୋ' ସାଙ୍ଗରେ ମୋର ଶେଷ ଦେଖା । ମତେ ଜଣା ଯା ପରେ କ'ଣ ସେ କହିବେ । ସେ ପାଟି ଖୋଲିବା ଆଗରୁ ମୁଁ କହିଲି, "କ'ଣ ? କାହିଁକି ? ମୁଁ କ'ଣ ମରିଯାଉଛି କି ?" ମୋର ଏତିକି ନ କହୁଣୁ ବାପା ମୋ ପାଟିରେ ହାତ ରଖିଦେଇ କହିଲେ, ଏମିତି ଅଶୁଭ କଥା କହିବୁନିରେ ଝିଅ । ମା' ଷଷ୍ଠୀ ତୋର ମଙ୍ଗଳ କରନ୍ତୁ । ଶହେ ବର୍ଷ ବଞ୍ଚିଥା ତୁ । ମୁଁ କହିଲି, "ତାହେଲେ ଭେଟ କେମିତି ହେବନି । ମୁଁ ତ ମଝିରେ ମଝିରେ ଆସୁଥିବି ।"

ବାପାଙ୍କର ମୋ ସାଙ୍ଗରେ ସ୍ନେହ ସରାଗର କଥାକୁ ମା' ସହ୍ୟ କରିପାରିଲାନି । ମା'ର ଚେହେରାରୁ ତା' ମନକଥା ଜାଣି ହେଉଥାଏ । ମା' ଈର୍ଷାଯୋଗୁଁ ରାଗୁଥାଏ ।" ବାପା ସେ ପ୍ରତି ଧ୍ୟାନ ଦେଲେ ନାହିଁ । ପଚାରିଲେ, " ଆଜି ରାତିରେ କ'ଣ ଖାଇବା ତିଆରି ହେଉଛି । ମା' ରାଗରେ ଗରଗର ହେଇ ଭିତରକୁ ଚାଲିଗଲା । କହିଲା, ସେ ଆଜି ରାନ୍ଧିପାରିବ ନାହିଁ । ବାପା ମା'ର ରାଗକୁ ବୁଝିପାରିଲେ । କହିଲେ, "ଆରେ କ'ଣ ହେଲା ତୋର ? ମୋ ଝିଅ ସହିତ ମୁଁ ଦୁଇଚାରି ପଦ ଭଲରେ କଥା ସୁଦ୍ଧା ହେବି ନାହିଁ ?" ବାପାଙ୍କୁ ଚୁପ୍ ରହିବାକୁ କହି ମୁଁ ଅଗଣାରେ ଖେଳୁଥିବା ପିଲାଙ୍କୁ ଦେଖିବାକୁ ଗଲି । ସେତେବେଳକୁ ଭାଉଜ ବାସନ ଧୋଇବା ଆରମ୍ଭ କଲେଣି । ମୁଁ କହିଲି, "ଭାଉଜ, ମୁଁ ହେଣ୍ଡପମ୍ପ୍ ମାରୁଛି, ତୁମେ ବାସନ ଧୁଅ । ନୋହିଲେ ତୁମେ ହେଣ୍ଡପମ୍ପ୍

ମାର, ମୁଁ ବାସନ ଧୋଇବି ।'' ଭାଉଜ କହିଲେ, ''ତୁମେ ଯାଇ ବସିଲ । ଏବେ ସରିଯିବ ।'' ମୁଁ କହିଲି, ''ଅନେକ ଦିନ ହେଲା ମୁଁ ଏ କାମ ଛାଡ଼ି ଦେଇଛି । ପ୍ରତ୍ୟେକ କାମଲାଗି ଅଭ୍ୟାସ ଅବ୍ୟାହତ ରହିବା କଥା । ଏହାଦ୍ୱାରା, କାହିଁ କୁଆଡ଼େ ଗଲେ ଅସୁବିଧା ଲାଗେନି ।''

ମା' ଏମିତି ରାଗି ଘର ଭିତରକୁ ଚାଲିଗଲା କାହିଁକି ? ବୋଧେ ତା'ର ପୁରୁଣା ଅଭ୍ୟାସ ଯାଇନି । ବାପା ରିଟାୟାର୍ଡ଼ ପରେ କେତେ ଅଶାନ୍ତି, କେତେ ଝଗଡ଼ାଝାଟିରେ ଏମାନଙ୍କର ଦିନ କଟିଛି । ତଥାପି କିଛି ଶିଖିଲେନି । ଆଜି ଯାଏ ବୁଝି ପାରିଲେ ନାହିଁ ଯେ ବେଶି ଗର୍ବ ଅହଂକାର ଦିନେ ମାଟି ହୋଇଯିବ ।

ସେଦିନ ରାତିରେ ମା' ସତକୁ ସତ ରନ୍ଧାବଢ଼ା କଲାନି । ନିରୁଦା'ର ସ୍ତ୍ରୀ ସମସ୍ତଙ୍କ ପାଇଁ ଖାଇବା ତିଆରି କଲେ । ତାଙ୍କ ଘର ବାରଣ୍ଡାରେ ସେ ବାପା-ମା, ମୋ ପିଲାଙ୍କୁ ଓ ମତେ ଖାଇବାକୁ ଦେଲେ । ଏଠାରେ ମୋତେ ଯଥେଷ୍ଟ ସ୍ନେହ ଆଦର ମିଳୁଛି । ପିଲାଏ ବି ଖୁସୀ ଅଛନ୍ତି । କୁହାଯାଏ, ମାମୁ ଘର ଭାତ କରେ ଉତପାତ । ସତରେ କ'ଣ ସେମିତି ହୁଏ ? ମୋର ପିଲା ଯେଉଁ ଆଦର ନିରୁଦା'ଠାରୁ ପାଉଛନ୍ତି, ସେତିକି ସେମାନେ ନିଜ ମାମୁମାନଙ୍କଠାରୁ କେବେ ପାଇନଥିବେ । ଖିଆପିଆ ସରିଲା ପରେ ନିରୁଦା' ମତେ କହିଲା, ''ଦୁଇ ଦିନ ଧରି ତୁମେ ସବୁ ଟ୍ରେନ୍‌ରେ ବସି ଥକି ପଡ଼ିଥିବ । ଆଉ ଡେରି କରନା । ଏଇ ଘରେ ହେଉ ବା ସେ ଘରେ ପିଲାଙ୍କୁ ନେଇ ଶୋଇପଡ଼ ।'' ବାପା କହିଲେ, ''ନା ନା, ସେ ଆମ ଘରେ ଶୋଇବ । ଖଟରେ । ମୁଁ ଓ ତା'ର ମା' ଏଇ ବାରଣ୍ଡାରେ ଶୋଇଯିବୁ ।'' ଆଗରୁ ବାପା-ମା' କେବେ ତାଙ୍କ ଖଟ ଛୁଆଙ୍କ ପାଇଁ ବି ଛାଡ଼ନ୍ତିନି । ଆମ ଛୁଆମାନେ ବି ସେତିକି ଆଶା କରନ୍ତି ନାହିଁ । ଆଉ ଆଜି ମୋତେ କେତେ ଆଦର ଯତ୍ନ ! ବାପା ମୋର ବିଛଣା ଝାଡ଼ିଝୁଡି ଦେଲେ । ନିଜ ବିଛଣା ନିରୁଦା'ର ବାରଣ୍ଡାକୁ ନେଇଗଲେ ।

ମୁଁ ଖଟରେ ଶୋଇଶୋଇ ବାପା-ମାଙ୍କ କଥା ଭାବୁଥିଲି । ଆଗକୁ ଏମାନଙ୍କର ଦିନ କେମିତି କଟିବ ଯେ ! କୌଣସି ଜାଗାରେ ସେମାନେ ଭଲରେ ରହିପାରନ୍ତିନି । ଏଠି କେତେ ଦିନ ରହୁଛନ୍ତି କେଜାଣି ! ଏଠି ରହିଯିବେ ଯଦି ବାପାଙ୍କ ଲାଗି ଖୁବ୍ ଭଲ ହେବ । ନିରୁଦା'ର ପରିବାର ତାଙ୍କୁ ନିଜର ମନେ କରନ୍ତି । ତାଙ୍କ ପିଲାଏ ମଧ୍ୟ ଅଜା ଆଈଙ୍କୁ ଖୁବ୍ ଭଲ ପାଆନ୍ତି । ପାଖ ପଡ଼ୋଶୀଙ୍କ ସ୍ନେହରେ ବି ଊଣା ନାହିଁ । ସମସ୍ତଙ୍କ ସହିତ ବାପାଙ୍କ ସମ୍ବନ୍ଧ ସର୍ବଦା ଭଲ ରହିବ-ଯାର କ'ଣ କିଛି ଭରସା ଅଛି ? ମଦ ତ ଆଜି ଯାଏ ଛାଡ଼ିପାରି ନାହାନ୍ତି । ତା' ଯୋଗୁଁ ନିଜ ଉପରେ ତାଙ୍କର ନିୟନ୍ତ୍ରଣ ରହେନି । ନିଶାରେ କାହାକୁ କ'ଣ କହିବେ ଜାଣିପାରନ୍ତିନି । ସେହି ସ୍ଥିତିରେ କିଏ ଖରାପ ଭାବିଲା ଯଦି ସବୁ ବିଗିଡ଼ିଯିବ । ତେବେ ବାପାଙ୍କୁ ଏହି ଜାଗା ବି ଛାଡ଼ି ଯିବାକୁ ପଡ଼ିବ । ନିଜେ ଜାଗା କିଣି ଘର କରିବେ ଯଦି, ସେଠି ବି ତ ପାଖ ପଡ଼ୋଶୀଙ୍କ ପାଇଁ ବାପା-ମାଙ୍କ ବଦଭ୍ୟାସ ଅସହ୍ୟ ହେବ । ଏସବୁ ଭାବି ଭାବି ମତେ ନିଦ ଲାଗିଗଲା ।

ସକାଳେ ବାସନକୁସନର ଠଣ୍ଠଣ୍ ଆବାଜରେ ମୋର ନିଦ ଭାଙ୍ଗିଲା । ମା' ଷ୍ଟୋଭ୍‌ରେ ଚା' ତିଆରି କରୁଥାଏ । ଆଗରୁ ସକାଳ ଚାରିଟାରେ ଉଠି ବାପାଙ୍କ ଲାଗି ଚା' ତିଆରି କରୁଥିଲା ।

ସେ ଅଭ୍ୟାସ ଆଜି ବି ରହିଛି । ବାପା ଚଟାଣରେ ପଡ଼ିଥିବା ବିଛଣାରେ ବସି କହିଲେ, "ବେଟା ଉଠ୍ । ତୋ' ମା' ଚା' ତିଆରି କରୁଛି । ମୁହଁ ହାତ ଧୋଇ ଆସ ।" ବାପା ନିରୁଦା'କୁ ବି ଚା' ପିଇବାଲାଗି ଡାକିଲେ । ସେ ଓ ତା' ସ୍ତ୍ରୀ ଆସିଲେ । ଆମେ ସମସ୍ତେ ଏକାଠି ବସିଲୁ । ସମସ୍ତେ ଖୁସ୍ ଜଣାପଡୁଥାନ୍ତି । ମତେ ବି ଭଲ ଲାଗୁଥାଏ । ଆମେ ଚା' ପିଇଲୁ । ବାପା ପଚାରିଲେ, "ତୋର ଛୁଆମାନେ ସକାଳୁ କ'ଣ ଖାଆନ୍ତି ? ଚା' ପିଅନ୍ତିନି ବୋଧେ !" ମୁଁ କହିଲି, "ସକାଳୁ ସେମାନେ ରୁଟି ଓ କ୍ଷୀର ଖାଆନ୍ତି । ଏଠି ତ ମିଳିଯବ ବୋଧେ !" ନିରୁଦା' କହିଲା, "ଆମେ ସେ ଘରକୁ ଯିବା, ଯଦି ସେ ସବୁ ମିଳିଯିବ ।" ମୁଁ ପଚାରିଲି, "ଆଉ କୋଉ ଘର ?" ନିରୁଦା କହିଲା, "ଟିକିଏ ଟାକ୍ । ତତେ ମୁଁ ସେ ଘରକୁ ନେଇଯିବି ।" ସମସ୍ତଙ୍କୁ ଖାଲି ଚା' ପିଉଥିବାର ଦେଖି ମୁଁ ମା'କୁ ପଚାରିଲି, "ତୁମେମାନେ ସମସ୍ତେ ଖାଲି ଚା' ପିଅ ?" ମା' କହିଲା, "ମୁଁ କ'ଣ କରିବି ? ତୋର ବାପାଙ୍କୁ କହେ, ବିସ୍କୁଟ୍ ଫିସ୍କୁଟ୍ ଟିକେ ଆଣିବ, ଆଣିଲେ ସିନା !" ମୁଁ କହିଲି, "ରହ, ମୁଁ ଦେଖେ । ମୋର ପିଲାଙ୍କ ବିସ୍କୁଟ୍ ଥିବ ।" ପିଲାଙ୍କ ପାଇଁ ଆଣିଥିବା ଭଲ ଲୁଣିଆ ବିସ୍କୁଟ୍ ସୁଟ୍‌କେଶ୍‌ରୁ କାଢ଼ିଲି । କ'ଣ ମନହେଲା କେଜାଣି, ଷଷ୍ଠୀପାଇଁ ଆଣିଥିବା ଶାଢ଼ି ବି ସାଙ୍ଗରେ ଆଣି ଆସିଲି । ଦୁଇ ହାତରେ ମୁଁ ନିରୁଦା'ର ସ୍ତ୍ରୀକୁ ଶାଢ଼ି ଦେଇ କହିଲି, "ଭାଉଜ, ଏଇଟା ତୁମ ପାଇଁ ।" ସେ କେତେ ଆନନ୍ଦରେ ଦୁଇ ହାତରେ ଶାଢ଼ିଟିକୁ ନେଇ କହିଲେ, "ଠାକୁରଝି, ତୁମେ ସମସ୍ତଙ୍କୁ କେତେ ଭଲ ପାଅ ସତରେ ।" ଉତ୍ତର ନଦେଇ କେବଳ ମୁଁ ସାମାନ୍ୟ ହସିଦେଲି । ସେ ମୁଣ୍ଡ ତଳକୁ କରି ଶାଢ଼ିକୁ ଛୁଉଁଥାନ୍ତି । କହିଲେ, ମୋର ନିଜ ନଣନ୍ଦଠାରୁ ମତେ କେବେ ଶାଢ଼ି ତ ପଛ କଥା, ସ୍ନେହ ଆଦର ଟିକେ ହେଲେ ମିଳିଥାନ୍ତା ! ସେ ଯେବେ ଆସେ, ତା' ମଝିଆଁ ଓ ସାନଭାଇକୁ ଭେଟି ଫେରିଯାଏ । ଆମ ଘରକୁ ଆସେନା ।"ବାପା ଉଦାସ ହୋଇ କହିଲେ, "ଛାଡ଼୍ ବେଟା । ଭୁଲିଯା ସେସବୁ । ଯାହାକୁ ଯାହା ଭଲ ଲାଗେ, ସେ ତାହା କରେ ।"

ମୋର ସୁଟ୍‌କେଶ୍‌ରୁ ନିରୁଦା'ର ସ୍ତ୍ରୀକୁ ଶାଢ଼ିଦେବା କଥା ମା'କୁ ଭଲ ଲାଗିଲା ନାହିଁ । ସୁଟ୍‌କେଶ୍ ପାଖରେ ଛିଡ଼ା ହୋଇ ସେ ହସି ହସି କହିଲା, "ଦେଖିବା କେତେ କପଡ଼ା ଆଣିକି ଆସିଛୁ ।" ପୁଣି ଗୋଟିଏ ଶାଢ଼ିକୁ ହାତରେ ଛୁଇଁ କହିଲା, ଏଇ ଶାଢ଼ିଟି ତୁ ଭାଉଜକୁ ଦେଇଥାନ୍ତୁ ।" ମୁଁ କହିଲି, ନା ପୁରୁଣା ଶାଢ଼ି କେମିତି ଦେବି ? ତାକୁ ତ ମୁଁ କେତେ ଥର ପିନ୍ଧି ସାରିଲିଣି ।" ସତ କଥା, ସ୍ତ୍ରୀମାନଙ୍କର ଶାଢ଼ି ଓ ଗହଣା ଉପରେ ଲୋଭ କେବେ ସରିଯାଏନା । ମା' ପାଖରେ ଦୁଇ ତିନି ବାକ୍ସ ହେବ କପଡ଼ା ରହିଛି । ତଥାପି ସେ ମୋର ଶାଢ଼ି ଉପରେ ଲୋଭ ରଖିଛି । ନିଜପାଇଁ ମାଗି ପାରୁନି । ତେଣୁ ନିରୁଦା'ର ସ୍ତ୍ରୀର ନାମ ନେଇ ମାଗୁଛି । ସେହି ଶାଢ଼ିଟି ତାତୁସ୍ ଏବଂ ରମେଶ ଜୀ କେତେ ସଉକରେ ସରସ୍ୱତୀ ପୂଜା ଦିନ ମୋ ପାଇଁ କିଣି ଆଣିଥିଲେ ଖଦୀ ଭଣ୍ଡାରରୁ । ସେମାନଙ୍କ ଉପହାରକୁ ମୁଁ ଆଉ ଜଣକୁ ବା ଦିଅନ୍ତି କେମିତି ଯେ ! ମା'କୁ ଏକଥା ଖରାପ ଲାଗିଲା । ହେଲେ ମୁଁ ବା କ'ଣ କରିବି !

ଆମେ ସବୁ କଥାବାର୍ତ୍ତା କରୁଥାଉ; ନିରୁଦା'ର ପିଲାଏ ବି ନିଦରୁ ଉଠି ସେଠି ଆସି ପହଞ୍ଚିଲେ । 'ଏମାନେ ଏତେ ଶୀଘ୍ର ଉଠିପଡ଼ନ୍ତି ?' ବୋଲି ମୁଁ ପଚାରିଲାରୁ ନିରୁଦା'ର ସ୍ତ୍ରୀ କହିଲେ, "ନା ନା

ତୁମେ ସବୁ ଆସିଛ, ସେଇଥିପାଇଁ ସକାଳୁ ଉଠିଛନ୍ତି ।'' ମୋର ଛୁଆ ତ ଏଠି ଖୁସିରେ ଅଛନ୍ତି । ତା' ସହିତ ସେମାନଙ୍କୁ ପାଇ ନିରୁଦା'ର ପିଲା ବି ଖୁସୀ ଅଛନ୍ତି । କିଛି ବେଳ ଉତ୍ତାରୁ ପିଲାଏ ଅଗଣାକୁ ଚାଲିଗଲେ । ମୁଁ ପଡ଼ିଥିବା ବିଛଣାକୁ ଚଉତିବାରେ ଲାଗିଲି । ବାପା କହିଲେ, ''ତୁ ରଖି ଦେ ବେଟା । ତୋ ମା' ସେ କାମ କରିବ ।''

ବାପା, 'ତୁ ରଖି ଦେ, ତୁ ଛାଡ଼ି ଦେ' କହି ମୋତେ କୌଣସି କାମ କରିବାକୁ ଦଉ ନାହାନ୍ତି । ଅଥଚ ଚାରି ବର୍ଷ ତଳେ ଯେବେ ବି ତାଙ୍କ ଘରକୁ ମୁଁ ଆସେ, ମା'କୁ କହନ୍ତି, ''ରାନୀ, ତୁ ରହ । ସେ କାମ ବେବି କରିବ ଯେ'' । ମାତ୍ର ଦେଖିବ ଯଦି, ଏ ଘରର ସବୁ କାମ ତ ଅସଲରେ ନିରୁଦା'ର ସ୍ତ୍ରୀ ଓ ତାଙ୍କ ଝିଅମାନେ କରୁଛନ୍ତି ।

ମା' ବିଛଣା ଚଉତି ବାହାରକୁ ଗଲା । ନିରୁଦା'ର ମଝିଆଁ ଝିଅ ଗୋବର ପାଣିନେଇ ଘର ଛରାପାଣି ଦେବାକୁ ଆସିଲା । ଗୋବର ପାଣିର ବାଲିଟିକୁ ଦରଜା ବାହାରେ ରଖି ପ୍ରଥମେ ଘର ଝାଡ଼ୁ କଲା । ତା'ପରେ ନୁଡ଼ା ଘଷିବାକୁ ଲାଗିଲା; ଦରଜା ପାଖରେ ଠିଆ ହୋଇ ମୁଁ ତା କାମ ଦେଖୁଥାଏ ।'' ଅନେକ ଦିନ ହେଲା ମୁଁ ଗୋବର ପାଣିରେ ଲିପି ନାହିଁ । ଭାବିଲି, ମୁଁ ଲିପିଦେବି । ତା' ହାତରୁ ସରକା ପୋଛା ନେଇ କହିଲି, ''ମତେ ଦେ, ଦେଖିବା ମୁଁ ପାରୁଛି ନା ନାହିଁ ।'' ତା' ମା' ଅଗଣାରୁ ଠିଆ ହୋଇ ଦେଖୁଥିଲେ । ପାଟି କରି କହିଲେ, ''ନା ନା ତୁମଦ୍ୱାରା ଏ କାମ ହେବନି । ତାକୁ କରିବାକୁ ଦିଅ ।'' ତାଙ୍କ କଥା ନ ମାନି ମୁଁ ଲିପିବାକୁ ଲାଗିଲି । ଘର ଭିତରୁ ଦରଜା ଯାଏଁ ଲିପିବାରେ ସନ୍ତୁଷ୍ଟି ଆସିଲା । ତା'ପରେ ସେମାନଙ୍କ ଅଗଣା ଲିପିବାକୁ ପହଞ୍ଚିଗଲି । ମୋର ଗୋବର ଲିପା ଦେଖି ମୋର ଝିଅ ଖେଳ ଛାଡ଼ି ମୋ ପାଖକୁ ଆସିଲା । ବଡ଼ ଗେହ୍ଲା ହୋଇ କହିଲା, ''ମମ୍ମି ମୁଁ ବି ଲିପିବି । ମତେ ଟିକିଏ ଦଉନୁ ।'' ମୁଁ ତାକୁ ପାଟିକଲି । ତୋ ଦ୍ୱାରା ହେବନି । ଏଠି ଘାଣ୍ଟି ହ'ନା । ସେ ଯାଇ ତା' ଖେଳଘରକୁ ଲିପିବାରେ ଲାଗିଲା । ନିରୁଦା' କୁଆଡ଼େ ଯାଇଥିଲା । ମୋର କାମ କରିବା ଦେଖି କହିଲା, ''ତୁ ଏସବୁ କ'ଣ କରୁଛୁ ? ରଖି ଦେ । ସେମାନଙ୍କୁ କରିବାକୁ ଦେ । ଚାଲ୍, ଆମେ ସେ ଘରୁ ବୁଲିଆସିବା । ଡେରି ହେଲାଣି, ତୋର ପିଲାଏ ସକାଳେ କ୍ଷୀର ପିଅନ୍ତି ପରା ! ଦେଖିବା କୋଉଠି ମିଳିବ ?''

ମା' କହିଲା, ''ତୁ ଏଭଳି ଯିବୁ ଯଦି ଲୋକ କ'ଣ କହିବେ ? ମୋର କପଡ଼ା ପିନ୍ଧି ଯା ।'' ମୁଁ କହିଲି, ''କାହିଁକି ? ମୁଁ କ'ଣ ମଇଳା ଦିଶୁଛି ?'' ମା' କହିଲା, ''ମଇଳା କଥା ନୁହେଁ ।'' ମୁଁ ପଚାରିଲି, ''ତ' କୋଉ କଥାପାଇଁ ମନା କରୁଛୁ ?'' ମା' କହିଲା, ''ଏଠି କେହି ସୁଟ୍ ସାଲ୍‌ୱାର୍ ପିନ୍ଧନ୍ତି ନାହିଁ ।'' ମୁଁ ଉତ୍ତର ଦେଲି, ''ସେଇଥିପାଇଁ ତ ମୁଁ ଏହି ଡ୍ରେସ୍ ପିନ୍ଧି ଯିବି । ଚାଲ ଦାଦା ।''

ନିରୁଦା' ସାଇକେଲ୍‌ରେ ମୋତେ ନେଇଗଲା । ସାଇକଲ୍ ପଛରେ ମତେ ଠିକ୍ କରି ବସି ଆସୁନଥାଏ । ଓହ୍ଲାଇପଡ଼ି କହିଲି, ''ଆଉ କେତେଦୂର ଦାଦା । ଚାଲ ଚାଲିଚାଲି ଯିବା । ବାଟରେ ରାସ୍ତାଘାଟ ଦେଖିହେବ । କିଛି ସମୟ ପରେ ମୁଁ ପୁଣି ସାଇକେଲ୍ ପଛରେ ବସିଲି । ଆମେ ସେ ଜାଗାରେ ପହଞ୍ଚିଲୁ । ନିରୁଦା'ର ଏହି ଘର ଖୁବ୍ ବଡ଼ ଓ ସୁନ୍ଦର ମନେହେଲା । ଗାଁ ମଝିରେ ପକ୍କା ଘର । ଘରକୁ ଲାଗି ଚୌଡ଼ା ମାଟି ରାସ୍ତା । ତା' କଡ଼ରେ ତେଜରାତି ଦୋକାନ । ନିରୁଦା'ର

ମଝିଆଁ ଭାଇଙ୍କର ଆର୍ଥିକ ସ୍ଥିତି ଭଲ । ସେ ଗାଁରେ ରହି ଚାଷ କରେ । ସାନ ଭାଇ ବେପାର କରେ । ମଝିଆଁ ଭାଇର ଝିଅଟିଏ, ଦୁଇଟି ପୁଅ । ସାନ ଭାଇର ବାହାଘର ସରିଛି, ହେଲେ ପିଲାପିଲି ହୋଇ ନାହାନ୍ତି । ମଝିଆଁ ଭାଇର ପୁଅଝିଅଙ୍କ ପାଇଁ ତା'ର ଖୁବ୍ ସ୍ନେହ ଆଦର । ପିଲାଏ ନିଜ ମା'ଠାରୁ ଅଧିକ ଖୁଡ଼ୀ ପାଖରେ ରହନ୍ତି । ଖୁଡ଼ୀ ସେମାନଙ୍କ ଖିଆପିଆ, ଗାଧୁଆ ପାଧୁଆ ସ୍କୁଲ୍ ଯିବା କଥା ବୁଝେ । ମା'କୁ ମନେ ପକାନ୍ତି ନାହିଁ । କିଛି କ'ଣ ଦରକାର ପଡ଼ିଲେ ମା' ଥିଲେ ବି ଖୁଡ଼ୀକୁ ପଚାରନ୍ତି । ସଦାବେଳେ ନାନା ପ୍ରଶ୍ନ । ଏଇଟା କୋଉଠି ଅଛି, ସେଇଟା କୋଉଠି ଅଛି । ତା'ର ଅର୍ଥ ନୁହେଁ ଯେ ସେମାନଙ୍କ ମା' କେବଳ ବସିଥାଏ । ସଦାବେଳେ ଘର କାମରେ ଲାଗିଥାଏ । ଘରେ ପଲକୁ ପଲ ଗାଈଗୋରୁ, ଛେଳି ଅଛନ୍ତି । ସେମାନଙ୍କ କାମ କରିବାକୁ ପଡ଼େ । ଏମିତିରେ ଗୋରୁଗାଈଙ୍କର ସେବା ନିରୁଦା'ର ମା'ଙ୍କ ଦାୟିତ୍ୱ । ନିରୁଦା'ର ବାପା ନାହାନ୍ତି । ସେମାନେ ବାଂଲା ଦେଶରେ ରହୁଥିବା ବେଳେ ତାଙ୍କର ମୃତ୍ୟୁ ହୋଇ ସାରିଛି । ସେହିଦିନଠାରୁ ନିରୁଦା'ର ମା' ନିଜ ବଡ଼ ପୁଅର ସହଯୋଗରେ ସାନ ପିଲାଙ୍କୁ ବଡ଼ କରିଛନ୍ତି । ପାଠଶାଠ ପଢ଼େଇ ଯୋଗ୍ୟ କରିଛନ୍ତି । ପରେ ସେମାନଙ୍କ ପରିବାର ଭାରତ ଫେରିଲେ । ପରିଶ୍ରମ ବଳରେ ସୁଦିନ ଦେଖିଲେ । ଏବେ ସେମାନେ ସଂପନ୍ନ ସ୍ଥିତିରେ । ହେଲେ ନିରୁଦା' ଯେଉଁ ଗରିବକୁ ସେହି ଗରିବ । ତଥାପି ଆପଦ ବିପଦରେ ପୂରା ପରିବାର ପରସ୍ପରକୁ ସାହାଯ୍ୟ ସହଯୋଗ କରନ୍ତି । ଅନ୍ୟଥା ନିରୁଦା ସହିତ ସେମାନଙ୍କ ବ୍ୟବହାର ଭଲା ଠିକ୍ ଥାଆନ୍ତା ? ଏବଂ ତା' ବି ଯେତେବେଳେ ନିରୁଦା' ଏକାକୀ ଯାଇନଥିଲା, ସାଙ୍ଗରେ ମୁଁ ଥିଲି । ନିରୁଦା'ର ମଝିଆଁ ଭାଇ ବାଲ୍ଟିରେ କ୍ଷୀର ଦୁହିଁ ବାରଣ୍ଡାରେ ରଖିଲା ଓ ଆମ ସହିତ ମୋଡ଼ାରେ ବସିଲା ।

ଜଣେ ଅଚିହ୍ନା ଝିଅକୁ ନିରୁଦା' ସହିତ ଦେଖି ସମସ୍ତେ ମୋ ଆଡ଼କୁ ଅନାଉଥା'ନ୍ତି । ମଝିଆଁ ଭାଇ ମୋ' କଥା ପଚାରିବାରୁ ନିରୁଦା କହିଲା, ''ଆମର ସେଠି ଯେଉଁ କାକା ରହନ୍ତି, ତାଙ୍କ ଝିଅ ଯେ। କାଲି ଆସିଛି । ଦିଲ୍ଲୀରେ ରହେ ।'' ନିରୁଦା'ର ମା' ମୋର ବସିବାଲାଗି ଏକ ମୋଡ଼ା ଆଣି ଦେଲେ । ତେଣିକି ଚା' ତିଆରିବାଲାଗି ଭିତରକୁ ଚାଲିଗଲେ । ନିରୁଦା'ର ମା'ଙ୍କ ଦେହର ରଂଗ କଷା । ବୟସ ଅଧିକ, ତଥାପି ଘର କାମ ସହଜରେ କରିପାରୁଛନ୍ତି । ବାଂଲାଦେଶର ଗାଁ ଲୋକ ଟିକିଏ ଅଲଗା ଦେଖାଯାଆନ୍ତି । ପରିପକ୍ୱ ଶରୀରରେ ଶାଢ଼ି ପିନ୍ଧିଛନ୍ତି । କେତେ ଆପଣାର ପରି ମତେ ମା' ମା' କରି କଥା କହୁଛନ୍ତି, ଜାଣି ବହୁତ ପୁରୁଣା ପରିଚୟ । ମଝିଆଁ ଭାଇ ପଚାରିଲେ, ''ତୁ ତ ଆସିଲୁ, ହେଲେ ଜୋଇଁ କେଉଁଠି ? ମିଛ କହିଲା ବେଳେ ମୋର ଓଠ ଥରେ; ଛାତି ଧକ୍‌ଧକେଇ ଯାଏ । ମୁଁ କେବଳ, ଏଁ, କୋଇଁ ?'' କହିଲି । ନିରୁଦା' ମୋ ତରଫରୁ ଉତ୍ତର ଦେଲା, ''ଜୋଇଁ ତ ଏଇଠି ରହେ ।'' ଲୋକଙ୍କର ଏ ସବୁ ପ୍ରଶ୍ନ ଶୁଣି ମତେ ଭାରି ଚିଡ଼ି ମାଡ଼େ । ନିଜର ନାଁ ବଞ୍ଚେଇ ରଖିବାଲାଗି ବାପା ଅସଲି କଥାକୁ ଘୋଡ଼େଇ ରଖିଛନ୍ତି । ହେଲେ ସେ ବୁଝି ପାରନ୍ତି ନାହିଁ ଯେ ମିଛ ସର୍ବଦା ସତକୁ ଢାଙ୍କି ପାରେ ନାହିଁ । ପିଲାଏ ଆସିବେ ଯେତେବେଳେ ଅସଲ କଥା କି ଲୁଚି ରହିବ ? ସଫା ସଫା କହି ଦେଇଥାନ୍ତେ ଯଦି ଜୋଇଁ ମୋର ଝିଅକୁ ପସନ୍ଦ କଲାନି । ରୋଜ୍ ରୋଜ୍ ଝଗଡ଼ାଝାଟି

ଚାଲିଲା । ଶେଷରେ ବିରକ୍ତ ହୋଇ ଝିଅ ତା'ର ପିଲାଙ୍କୁ ନେଇ ଘରୁ ଚାଲିଗଲା । ଏବେ ସେ ପିଲାଙ୍କୁ ନେଇ ଏକାକୀ ରହେ । ବଦନାମ ହେବା ଡରରେ ବାପା ଏସବୁ କିଛି କାହାକୁ କହି ନାହାନ୍ତି । ହେଲେ ଶେଷରେ କ'ଣ ଜଣାପଡ଼ିଲାନି ? ନିରୁଦା'ର ମଝିଆଁ ଭାଇ ଏବଂ ବୋହୂମାନଙ୍କୁ ସେ କଥା ଶୁଣି ଖରାପ ଲାଗିଲା । ଚା' ପିଆ ସରିଲା ପରେ ନିରୁଦା' କହିଲା, ''ଆଜି ତା'ପାଇଁ କିଛି କ୍ଷୀର ଦରକାର । ତା' ପିଲାମାନେ ଜଳଖିଆରେ କ୍ଷୀର ପିଅନ୍ତି ।'' ମଝିଆଁ ଭାଇ କହିଲେ, ''ନେଇଯା ।'' ମା'କୁ ଡାକି କହିଲେ, ''ମା' ବଡ଼ ବୋତଲରେ ତା'ପାଇଁ କ୍ଷୀର ଭର୍ତ୍ତି କରିଦେ ।'' ବୋତଲକୁ ବେଗ୍‌ରେ ରଖି ନିରୁଦା' ମତେ କହିଲା, ''ଚାଲ କ୍ଷେତ ଆଡ଼ୁ ବୁଲି ଆସିବା । ମଟର ଚଣା ତୋଳିବା ଭଳିଆ ହେଇଗଲାଣି । କିଛି ତୋଳି ନେବା ।'' ଆମେ ଯିବାକୁ ବାହାରିଲୁ । ନିରୁଦା'ର ଛୋଟ ଭାଇର ସ୍ତ୍ରୀ କହିଲେ, ''ନା ନା ଏବେ କିମିତି ଯିବ ? ଖାଇପିଇ ଯିବ । ମୁଁ ଏଇକ୍ଷିଣା ତିଆରି କରିଦେବି ।'' ଏତିକି କହି ସେ ମୋର ହାତ ଧରି ଅଟକାଇଲେ । ମୁଁ କହିଲି, ''ନା ଭାଉଜ, ଆସିବା ବେଳେ ପିଲାଙ୍କୁ କହିନି । ମୋତେ ଖୋଜୁଥିବେ ।'' ମଝିଆଁ ଭାଇ ପଚାରିଲେ, ''ତୁ ପିଲାଙ୍କୁ ନେଇକି କାହିଁକି ଆସିଲୁନି ?'' ତାଙ୍କ କଥା ଶୁଣି ମତେ ଖୁସି ଲାଗିଲା । କହିଲି, ''ନା ଦାଦା, ଆସନ୍ତା ଥର ପିଲାଙ୍କୁ ନେଇ ଆସିବି ଆଉ ଭାଉଜ ହାତରନ୍ଧା ଖାଇକି ଯିବି ।'' ନିରୁଦା' ସାଇକଲ୍ ନେଇ ଘରୁ ବାହାରି ସାରିଥିଲା । ମୁଁ ସାନ ଭାଇର ସ୍ତ୍ରୀ ସହିତ କଥା ହେଉଁ ହେଉଁ ଗେଟ ଯାଏ ପହଞ୍ଚିଗଲି । ଶେଷରେ, ''ତା'ହେଲେ ଆସିଲି ମୁଁ ?'' କହି ଅଟକି ଗଲି ଟିକିଏ । ସେ ମୁଣ୍ଡ ଓ ହାତକୁ ଦେଖି କହିଲେ, ''ସେ ତ ବଞ୍ଚିଛି । ତୁମେ ଶଙ୍ଖା ଆଉ ସିନ୍ଦୂର ପିନ୍ଧୁନ କାହିଁକି ? ଆମର ଏଠି ସ୍ୱାମୀ ଜୀବିତ ଥିଲେ ସ୍ତ୍ରୀ କେବେ ଏମିତି ବିନା ଶଙ୍ଖା ଆଉ ସିନ୍ଦୂରରେ ରହନ୍ତି ନାହିଁ । ଏଥିରେ ସ୍ୱାମୀର ଅମଙ୍ଗଳ ହୁଏ ।'' ସେପଟେ ନିରୁଦା' କହୁଥାଏ, 'ଡେରି ହେଲାଣି । ଶୀଘ୍ର ଆ' । ମୁଁ କେବଳ 'ହଁ' କହି ହସିଦେଲି ଏବଂ ତା'ହେଲେ ଆସୁଛି କହି ବାହାରି ଆସିଲି ।

ରାସ୍ତାରେ ଜଣେ ଲୋକ ନିରୁଦାକୁ ପଚାରିଲା, ''ନିରୁ! ୟେ କିଏ ?'' ନିରୁଦା' କହିଲା, ''ମୋର ଭଉଣୀ ।'' ରାସ୍ତାରେ ଏକ କୁକୁଡ଼ା ଫାର୍ମ ପଡ଼ିଲା । ନିରୁଦା' କହିଲା, ''ତୁ ଏମିତି ବେଳାରେ ଆସିଲୁ ଯେ ତତେ କିଛି ଭଲକରି ଖାଇବାକୁ ବି ଦେଇହେଲାନି । ବର୍ଷର ଏହି କିଛି ଦିନ ହାତ ଖାଲି ହେଇଯାଏ ।'' ମୁଁ କହିଲି, ''ଖାଇବାରେ କ'ଣ ସବୁ ଥାଏ ? କାଲିଠାରୁ ତୁମମାନଙ୍କର ଯେଉଁ ସ୍ନେହ ଆଦର ପାଉଛି, ସେ କି ମୋ ପାଇଁ କମ୍ ? କିଏ ଦେବ ମୋତେ ଏସବୁ ?'' ମୁଁ ପୁଣି କହିଲି, ''ଦାଦା, ଚାଲ କୁକୁଡ଼ା ଫାର୍ମ ଦେଖି ଆସିବା । ସୁବିଧା ହୁଏ ଯଦି କୁକୁଡ଼ାଟିଏ କିଣିନେବା ।'' ନିରୁଦା' ଯିବାକୁ ଚାହୁଁ ନଥିଲା । ହେଲେ ବାଧ୍ୟ କଲି । ଭିତରେ ବୁଢ଼ା ଲୋକ ଜଣେ କୁକୁଡ଼ାମାନଙ୍କୁ ଦାନା ଦେଉଥାଏ । ମୁଁ ତାକୁ କୁକୁଡ଼ାଟିଏ ଦେଖାଇବାପାଇଁ କହିଲି । ବୋଧହୁଏ ସେ ମୋର କଥା ଶୁଣି ପାରି ନଥିଲା । ସାମନାରେ କିଏ ଛିଡ଼ା ହୋଇଛି ଜାଣିବାଲାଗି ସେ ମୁଣ୍ଡ ଉପରକୁ କଲା । ତେଣିକି ପୁଣି ନିଜ କାମରେ ମନ ଦେଲା । ଟିକିଏ ପାଖକୁ ଯାଇ ମୁଁ କହିଲି, ''କ'ଣ ମଉସା, ଗୋଟିଏ କୁକୁଡ଼ା ଦେଖାଇବାକୁ ମୁଁ କହିଲି । ଶୁଭାଯାଏନି କି ତୁମକୁ ?'' ବୁଢ଼ା ତଥାପି ଧ୍ୟାନ ଦେଲା ନାହିଁ । କେବଳ ମୋ ଆଡ଼କୁ ଥରେ ନଜର ଦେଇ ସେ ଭିତରକୁ ଚାଲିଗଲା ।

ନିରୁଦା' ପାଞ୍ଚହାତ ଦୂରରେ ରାସ୍ତା ଉପରେ ଛିଡ଼ା ହୋଇଥାଏ । ମୁଁ ଆଶ୍ଚର୍ଯ୍ୟ ହୋଇ ତାକୁ ଯାଇ କହିଲି, ''ଦାଦା, ଲୋକଟି କାଲା ବୋଧେ । ଶୁଣି ପାରେନା । ମୁଁ କହୁଛି କୁକୁଡ଼ା ଦେଖାଇବା ଲାଗି । ହେଲେ ସେ ମୋତେ ଦେଖି ଚୁପ୍‌ଚାପ୍ ତା' କାମ କରିଚାଲିଛି ।'' ନିରୁଦା' ପଚାରିଲା, ''ସେଠି ଆଉ କେହି ନାହାନ୍ତି କି ?'' ମୁଁ କହିଲି, ''ନା ତ କେହି ଦେଖାଯାଉ ନାହାନ୍ତି ।'' ନିରୁଦା' କହିଲା, ''ତା'ର ଜୋଇଁ କୁଆଡ଼େ ଯାଇଥିବ । ଫାର୍ମ ତା' ଜୋଇଁର । କୁଆଡ଼େ ଯିବାର ଥିଲେ ତା' ଶଶୁରକୁ ବସେଇଦେଇ ଯାଏ । ଚାଲ ଦେଖିବା । ବୁଢ଼ାଟି ପୂରାପୂରି କାଲା । ତାକୁ କେବଳ ଇସାରାରେ କହିହୁଏ । ତା' ବି ବୁଝିବ ନା ନାହିଁ ସନ୍ଦେହ । ଭାରି ରାଗି ଲୋକଟା । ଛୋଟିଆ ଛୋଟିଆ କଥାରେ ରାଗିଯାଏ ।'' ନିରୁଦା' ଆରାମରେ ସିଧା ଭିତରକୁ ପଶିଗଲା ଓ ଇସାରାରେ କୁକୁଡ଼ାଟିଏ ମଗେଇ ଆଣିଲା । ତରାଜୁରୁ କୁକୁଡ଼ାଟିକୁ କାଢ଼ି ବୁଢ଼ା କହିଲା, ''ଶହେ ତିନି ଟଙ୍କା'' । ନିରୁଦା' ଇସାରାରେ ଶହେ ଟଙ୍କା ଦେବ ବୋଲି କହିଲା । ଏତିକିରେ ବୁଢ଼ା ରାଗିଯାଇ କୁକୁଡ଼ାକୁ ଝିଙ୍କିନେଇ ଭିତରକୁ ଚାଲିଗଲା । ମୁଁ ବୁଝି ପାରିଲି ନାହିଁ । ମୂର୍ଖଙ୍କ ଭଳି କେବଳ ହିଁ ହିଁ ହୋଇ ହସିଲି । ସେମିତି ହସି ହସି ଦାଦାକୁ ପଚାରିଲି, ''ଲୋକଟି ଏମିତି କାହିଁକି କଲା ?'' ଦାଦା କହିଲା, ''ଆରେ ତାକୁ ମାତ୍ର ତିନି ଟଙ୍କା ଊଣା କରିବାକୁ କହିଲି । ସେତିକିରେ ସେ ରାଗିଯାଇ କୁକୁଡ଼ାକୁ ହାତରୁ ନେଇଗଲା । ମୁଁ କହିଲି, ''ତାକୁ କୁକୁଡ଼ାଟିକୁ ଦେବାକୁ କହ । ତାର ହାବଭାବ ଦେଖି ଲାଗୁଛି, ଟଙ୍କାଏ ବି ସେ ଊଣା କରିବ ନାହିଁ ।'' ଶେଷରେ ମୁଁ ଶହେ ତିନି ଟଙ୍କା ଦେଲି । କୁକୁଡ଼ାକୁ ଦେବା ଆଗରୁ ସେ ଅଧଘଣ୍ଟା ଧରି ପଇସା ଗଣିବାରେ ସମୟ ବିତାଇ ଦେଲା । ମୁଁ ତ ହସ ସମ୍ଭାଳି ପାରୁ ନଥାଏ ।

କୁକୁଡ଼ା ନେଇ ସେଠାରୁ ଆସିବା ବେଳେ ବି ମୋର ହସ ଅଟକୁ ନଥାଏ । ରାସ୍ତାରେ ନିରୁଦା'ର ଜଣେ ପରିଚିତ ଦେଖା ହେଲେ । ପଚାରିଲେ, ''କ'ଣ ହେଲା ?'' କୋଉ କଥାକୁ ନେଇ ଏତେ ହସ ?'' ନିରୁଦା' କହିଲା, ''ସେଇ ଶଳା ବୁଢ଼ା ଯୋଉ କଥା କରୁଛି, ନ ହସିବା ଲୋକ ହସିବ । କୁକୁଡ଼ାର ଦାମ୍ କହିଲା ଶହେ ତିନି ଟଙ୍କା । ଶଳା ତିନି ଟଙ୍କା ବି ଛାଡ଼ିବନି । ସେଥିରେ କିଛି କଥା ନାହିଁ । ହେଲେ କୁକୁଡ଼ାକୁ ନେଇ ଭିତରକୁ ଚାଲିଯାଉଛି ।'' ଲୋକଟି କହିଲା, ''ଆରେ, ତିନି ଟଙ୍କା ତ ବଡ଼ କଥା । ସେଦିନ ଆଠଣା ପଇସାପାଇଁ ମତେ ଦହଗଞ୍ଜ କରିଦେଲା । ମୋର ଝିଅ-ଜୋଇଁ ଆସିଥିଲେ । ଘରେ କୁଣିଆଁ ଭର୍ତ୍ତି । ଲାଜରେ ମୋର ମୁଣ୍ଡ ତଳକୁ ହେଇଗଲା । ମୋର ଜୋଇଁ ଦରଜା ପାଖରେ ବସି ଚା ପିଉଥାଏ । ବୁଢ଼ା ଅଧଘଣ୍ଟାପାଇଁ ବି ଅଟକି ପାରିଲା ନାହିଁ । କୁକୁଡ଼ା କିଣି ମୁଁ କହିଲି, ମୋ ପାଖରେ ଏବେ ଆଠଣା ରେଜା ନାହିଁ । ମୋ ପୁଅ ଏବେ ଆସିବ । ତା'ଠାରୁ ଆଠଣା ନେଇ ମୁଁ ଦେଇ ଆସିବି ତୁମକୁ । କୁକୁଡ଼ା ନେଇ ଘରେ ନପହଞ୍ଚୁଣୁ ବୁଢ଼ା ହାଜର । ହେ ଭଗବାନ । ଆଠଣା ଦେଲା ପରେ ପିଣ୍ଡା ଛାଡ଼ିଲା । ନିରୁଦା' କହିଲା ''ବାପ୍‌ରେ ବାପ୍, କି ବୁଢ଼ା ହୋ ।'' ଆମେ ଆଉ ସେଠି ଅଟକିଲୁ ନାହିଁ । ଡେରି ହେବା ଦେଖି ଶୀଘ୍ର ଚାଲି ଆସିଲୁ ।

ନିରୁଦା'କୁ କ୍ଷେତ ଭିତରକୁ ଯିବାର ଦେଖି ମୁଁ ପଚାରିଲି ''ତୁମେ ସେଆଡ଼େ କୁଆଡ଼େ ଯାଉଛ ?'' ସେ କହିଲା, ''କ'ଣ ପନିପରିବା ନେବାନି ? ମଟର ଚଣା, ଆଳୁ, ମୂଳାର ଫସଲ

ସବୁ ଲଗାଲଗି ହୋଇ ରହିଥିଲେ । ମୁଁ ପଚାରିଲି, "ୟେ ସବୁ କାହାର ଫସଲ ?" ସେ ଉତ୍ତର ଦେଲା, "ଏ ସବୁ ମୋ ମଝିଆଁ ଭାଇର । ବର୍ଷକ ଯାକ ପନିପରିବା ତାକୁ କିଣିବାକୁ ପଡ଼େନା । ସବୁ କ୍ଷେତରୁ ମିଳିଯାଏ । ତୁ ମଟର ଚଣା ତୋଳ । ମୁଁ ଯାଇ ଆଳୁ ଖୋଳି ଆଣେ । ମଟର ଚଣାର ଫସଲ ଏତେ ମାତ୍ରାରେ ଦେଖି ମୋତେ ଭାରି ଖୁସି ଲାଗୁଥାଏ । ଏଇଟା ତୋଳିବି ନା ସେଇଟା ହେଇ ମୁଁ ଏପଟ ସେପଟ ହେଉଥାଏ । ଏ ଭିତରେ ନିରୁଦା' ଆଳୁ, ଫୁଲକୋବି, ମୂଳା ଆଉ ଟମାଟୋ ତୋଳି ନେଇ ଆସିଲା । ମତେ ପଚାରିଲା, "ଦେଖିବା କେତେ କ'ଣ ତୋଳିଲୁ ?" ମୁଁ ତାକୁ ମଟର ଚଣା ତକ ଦେଖାଇଦେବାରୁ କହିଲା, "ହେ ଭଗବାନ, ଏତେ ସମୟ ଧରି ତୁ ଏତିକି ମାତ୍ର ତୋଳିଲୁ ?" ଏତିକି କହି ସେ ଗୋଟାଏ ମିନିଟ୍‌ରେ ଅଧବେଗ ମଟର ଚଣା ତୋଳି ଆଣିଲା । କହିଲା, "ହେଇଗଲା, ଏବେ ଘରକୁ ଯିବା ।"

ଆଗରୁ ବାପାଙ୍କୁ କିଛି ଜଳଖିଆ ମିଳୁ ନ ମିଳୁ କିଛି ଫରକ ପଡ଼ୁ ନଥିଲା । ହେଲେ ଆଜିକାଲି ସେ ଜଳଖିଆରେ, ଗରମ ଗରମ ଭାତରେ ଘିଅ ଦେଇ ଆଳୁ ଓ ଅମୃତଭଣ୍ଡାର ଭର୍ତ୍ତା ସାଙ୍ଗରେ ଖାଇବାର ଅଭ୍ୟାସ କରିଥିଲେ । ବାପା ବାହାର ଅଗଣାରେ ବସି ଖାଉଥାନ୍ତି । ମା ବି ସାଙ୍ଗରେ । ଆଶ୍ଚର୍ଯ୍ୟ ହୋଇ ମୁଁ ପଚାରିଲି, "ସକାଳୁ ସକାଳୁ ଭାତ ଖାଇବାର ଅଭ୍ୟାସ କେବେଠାରୁ ଆରମ୍ଭ କଲଣି ?" ଖାଉ ଖାଉ ସେ ମୋ ଆଡ଼େ ଅନେଇଲେ । କହିଲେ, "ଆଉ କ'ଣ କରିବା ।" ମୋତେ ଲାଗିଲା, ବାପା ବାଧ୍ୟରେ ସକାଳୁ ଭାତ ଖାଉଛନ୍ତି । ନିରୁଦା' କହିଲା, "ଏହି ଅଭ୍ୟାସ ମୋ ଯୋଗୁ ହୋଇଛି । କ'ଣ ଠିକ୍ ହେଇନି ?" ମୁଁ କହିଲି, ଠିକ୍ କ'ଣ ବହୁତ ଭଲ ହେଇଛି । ନହେଲେ ସକାଳୁ ମଦ ପିଇବା ଆରମ୍ଭ ହୁଅନ୍ତାଣି । ମତେ କହିଲେ, "ବେଟା, ତୁ ବି ଖାଇଦେ ।" ମୁଁ କହିଲି, "ନା ଏବେ ମୁଁ ଖାଇବି ନାହିଁ । ରନ୍ଧା ସରିଗଲେ ଦୁଇ ପ୍ରହରେ ଖାଇବି ।" ବାପା କହିଲେ, "ତାହେଲେ ଘରେ ମୁଢ଼ି ମିକ୍ସର ଥିବ । ସେଥିରୁ ନେଇ ଖାଇପକା ।" 'ହଉ ଖାଇବି' କହି ମୁଁ ନିରୁଦା'ର ସ୍ତ୍ରୀ ପାଖକୁ ଗଲି । ତଳେ ବସି ସେ ଶାଗ ବାଛୁଥିଲେ ।

କିଛି ସମୟ ପରେ ନିରୁଦା'ର ମଝିଆଁ ଝିଅ ଗୋଟାଏ ବଡ଼ କଟୋରା (ବଡ଼ ଗିନା)ରେ ଚନାଚୁର, ପିଆଜ, କଞ୍ଚା ଲଙ୍କା ଏବଂ ସୋରିଷ ତେଲ ଦେଇ ମୁଢ଼ି ନେଇ ଆସିଲା । ମୁଢ଼ି ଦେଖି ମୋ ଝିଅ ବି ମୋ ପାଖରେ ଆସି ବସିଗଲା । ବାପା ମୋର ଝିଅକୁ ନିର୍ଦ୍ଦେଶ କରି କହିଲେ, "ମା'କୁ ଖାଇବାକୁ ଦେ । ତୁମେମାନେ ଅଲଗା କରି ଖାଅ ।" ନିରୁଦା' ନିଜ ଝିଅକୁ ଡାକି କହିଲା, "ଶୁଣ୍, ତାକୁ ବି ଦେ । ଘରକୁ ଡାକି ନେ ତାକୁ ।" ତା' ଝିଅ ମୋର ପିଲାଙ୍କ ଲାଗି ଦୁଇଟି ଗିନାରେ କ୍ଷୀର ଆଉ ମୁଢ଼ି ନେଇ ଆସିଲା । ମୁଢ଼ି ଖାଉଖାଉ ମୋର କୁକୁଡ଼ା କଥା ମନେପଡ଼ିଲା । ନିରୁଦା' ତାକୁ ଏକ ବାଉଁଶ ଟୋକେଇରେ ରଖିଦେଇଥିଲା । ଗୋଡ଼ ବନ୍ଧା ଥିବାରୁ ସେ ଫଡ଼ଫଡ଼ ହେଉଥାଏ । ଉଠିବାକୁ ଚେଷ୍ଟା କରେ, ହେଲେ ଉଠିପାରେନା । ଆଉ କିଛି ବେଳ ପରେ ତା'ର ମୁଣ୍ଡ କଟି ଅଲଗା ହୋଇଯିବ । ତାକୁ ଆମେ ରାନ୍ଧି ଖାଇବୁ । ତା'ର ଗୋଡ଼କୁ ଖୋଲି ଦେଲେ କ'ଣ ହେବ ଯେ ?" ଚାଲି ଯାଇ

ପାରିବନି । ତା'ର ବଞ୍ଚିବାର ବାଟ ଆଉ ନାହିଁ । ତାକୁ କେମିତି ରନ୍ଧା ଯିବ ସେ ନେଇ ଯୋଜନା ଚାଲିଛି । ନିରୁଦା'ର ସ୍ତ୍ରୀ କହିଲେ, ''ମା, ମାଂସ ତୁମେ ତିଆରି କର, ନୋହିଲେ ବେବି କରିବ । ସେ ତ ଖୁବ୍ ଭଲ ରାନ୍ଧିବା ଶିଖିଛି ।''

ବେବିର ଧ୍ୟାନ ଆଉ କେଉଁଠି ଥାଏ । ସେ କୁକୁଡ଼ା କଥା ଚିନ୍ତା କରୁଥାଏ । ତେଣୁ, ସେମାନଙ୍କ କଥା ଶୁଣି କେବଳ ଏଁ ଏଁ କରୁଥାଏ । ନିରୁଦା'ର ସ୍ତ୍ରୀ ଶାଗ ବାଛୁବାଛୁ ବେବିର ଗାଲକୁ ଛୁଇଁ କହିଲା, ''ଏ, କ'ଣ ଭାବୁଛ ? ମୁଁ କ'ଣ କହୁଛି, ଶୁଣୁଛ ?''

ମୁଁ ଚମକି ପଡ଼ି କହିଲି, ''ନା ମ କିଛି ନାହିଁ । କ'ଣ କହୁଥିଲ ତୁମେ ?'' ଭାଉଜ କହିଲେ, ''ମୁଁ କହୁଛି ମାଂସ ତୁମେ ରାନ୍ଧିବ ।'' ମୁଁ କହିଲି, ''କାହିଁକି ? ଆଉ ତୁମେ ?'' ସେ କହିଲେ, ''ମତେ ଭଲ କରି ରାନ୍ଧି ଆସେନି ।''ମୁଁ କହିଲି, ''ନା ମ, ଭଲ ହେବ । ନୋହିଲେ ମା' ରାନ୍ଧୁ । ଜାଣିଛ, ମା' ମାଛ-ମାଂସ ଖୁବ୍ ବଢ଼ିଆ ରାନ୍ଧେ । ମୁଁ ଏବେ ଯିବି । ତୁମ ବଡ଼ ଝିଅ କୁଆଡ଼େ ଗଲା ? ତା' ସାଙ୍ଗରେ ନଦୀ ଦେଖିବାକୁ ଯିବି ।'' ବଡ଼ ଝିଅ କ'ଣ ଗୋଟେ କରୁଥିଲା । ମୋ କଥା ଶୁଣି, ଖୁସିରେ ହଁ, ହଁ ଚାଲ ପିଇସୀ ନଦୀକୁ ଯିବା' କହି ଚାଲି ଆସିଲା । କହିଲା, 'ବୁଝିଲ ପିଇସୀ, ମୁଁ ଏଇ ଘରେ ଜନମ ହେଇ ଏଇଠି ବଡ଼ ହେଲି, ହେଲେ ଆଜି ଯାଏ ଦାମୋଦର ନଦୀକୁ ଭଲ ଭାବେ ଦେଖି ପାରିଲି ନାହିଁ । ଆଜି ଯିବା ଚାଲ । ତୁମେ ଯିବା ପରେ ଆଉ ମୋତେ ନଦୀ ଦେଖିବାକୁ ସୁଯୋଗ ମିଳିବ ନାହିଁ । କୁଆଡ଼େ ଯିବାକୁ ମିଳେନା ଏଠି । ତା' ମା' ତା ଉପରେ ପାଟି କଲା, ''ନଦୀରେ କ'ଣ ଦେଖିବାର ଅଛି ? ପୁଣି ସାମାନ୍ୟ ନରମ ଗଳାରେ କହିଲା, ''ତୋ ପିଇସୀ ତ ଏବେ ରହିବ । ପରେ କେତେବେଳେ ନେଇକି ଚାଲିଯିବୁ । ଘରେ କେତେ କାମ ପଡ଼ିଛି ।'' ମୁଁ କହିଲି, ''ପରେ ଆଉ କେତେବେଳେ ଯିବି ଭାଉଜ, ମୁଁ ତ ବେଶି ଦିନ ରହିବି ନାହିଁ । ତା' ପାଇଁ ଆଉ କୋଉ କାମ ରହିଯିବ ଯେ ! ଚାଲ ଚାଲ ।'' ମୋ କଥା ଶୁଣି ସବୁଯାକ ଛୁଆ ଖୁସିରେ ବାହାରି ପଡ଼ିଲେ ।

ନିରୁଦା'ର ଚାରୋଟି ଛୁଆ ଆଉ ମୋର ଦୁଇଟି । ସମସ୍ତେ ମହା ଆନନ୍ଦରେ ନଦୀ ଦେଖିବାକୁ ବାହାରିଲେ । କ୍ଷେତ, ଖଳା, ଲତା, ଗୁଳ୍ମ, ଜଙ୍ଗଲ, କାଂଶବଣ ଆଦି ପାରି ହୋଇ ଆମେ ଖୁବ୍ ଉତ୍ସାହରେ ଚାଲିଥାଉ । କାଂଶ ବଣରେ କାଇଁଶ କାଟୁଥିବା କିଛି ଲୋକ ନିରୁଦା'ର ବଡ଼ ଝିଅକୁ ଚିହ୍ନିଥିଲେ । ପଚାରିଲେ, ''ତୁମେ ସବୁ କୁଆଡ଼େ ବାହାରିଲ ? ଆଉ ତୁମ ସାଙ୍ଗରେ ଇଏ କିଏ ?'' ଝିଅ କହିଲା, ''ମୋର ପିଇସୀ । ଆମେ ସବୁ ନଦୀ ଦେଖିବାକୁ ଯାଉଛୁ ।'' ସେମାନେ ପୁଣି ପଚାରିଲେ, ''କ'ଣ ନଦୀ ଆଗରୁ କେବେ ଦେଖିନା ?'' ମୁଁ କହିଲି, ''ଦେଖିଥିଲେ ବି ସେ ନଦେଖିଲା ପରି ।'' କାଂଶବଣ ପାରି ହେଲା ପରେ ନଦୀ ଭଳି ଛୋଟିଆ ନାଳଟିଏ ପଡ଼ିଲା । ଆଣ୍ଠୁଯାଏ ତହିଁରେ ପାଣିଥାଏ । ସଫା ପାଣି । ଆରପଟକୁ ଯିବାପାଇଁ ବି ରାସ୍ତାଥାଏ । ନିରୁଦା'ର ବଡ଼ଝିଅ ଠିକ୍ ରାସ୍ତାରେ ଯାଇ କେନାଲ୍ ପାରି କଲା । ହେଲେ ତା'ର ଭଉଣୀମାନେ ପାଣି ଭିତର ଦେଇ ଗଲେ । ସେମାନଙ୍କ ଦେଖାଦେଖି ମୁଁ ବି ଚପଲକୁ ହାତରେ ନେଲି ଆଉ ପାଣି ଭିତରେ ଚବର ଚବର ହେଇ ପାରି ହେଲି । ମୋର ଦେଖାଦେଖି ନିରୁଦା'ର ପୁଅ ଓ ମୋର ପିଲାଏ ବି

ସବୁ ଲଗାଲଗି ହୋଇ ରହିଥିଲେ । ମୁଁ ପଚାରିଲି, ''ଯେ ସବୁ କାହାର ଫସଲ ?'' ସେ ଉତ୍ତର ଦେଲା, ''ଏ ସବୁ ମୋ ମଝିଆଁ ଭାଇର । ବର୍ଷକ ଯାକ ପନିପରିବା ତାକୁ କିଣିବାକୁ ପଡ଼େନା । ସବୁ କ୍ଷେତରୁ ମିଳିଯାଏ । ତୁ ମଟର ଚଣା ତୋଳ । ମୁଁ ଯାଇ ଆଳୁ ଖୋଳି ଆଣେ । ମଟର ଚଣାର ଫସଲ ଏତେ ମାତ୍ରାରେ ଦେଖି ମୋତେ ଭାରି ଖୁସି ଲାଗୁଥାଏ । ଏଇଟା ତୋଳିବି ନା ସେଇଟା ହେଇ ମୁଁ ଏପଟ ସେପଟ ହେଉଥାଏ । ଏ ଭିତରେ ନିରୁଦା' ଆଳୁ, ଫୁଲକୋବି, ମୂଳା ଆଉ ଟମାଟୋ ତୋଳି ନେଇ ଆସିଲା । ମତେ ପଚାରିଲା, ''ଦେଖିବା କେତେ କ'ଣ ତୋଳିଲୁ ?'' ମୁଁ ତାକୁ ମଟର ଚଣା ତକ ଦେଖାଇଦେବାରୁ କହିଲା, ''ହେ ଭଗବାନ, ଏତେ ସମୟ ଧରି ତୁ ଏତିକି ମାତ୍ର ତୋଳିଲୁ ?'' ଏତିକି କହି ସେ ଗୋଟାଏ ମିନିଟ୍‌ରେ ଅଧବେଗ ମଟର ଚଣା ତୋଳି ଆଣିଲା । କହିଲା, ''ହେଇଗଲା, ଏବେ ଘରକୁ ଯିବା ।''

ଆଗରୁ ବାପାଙ୍କୁ କିଛି ଜଳଖିଆ ମିଳୁ ନ ମିଳୁ କିଛି ଫରକ ପଡ଼ୁ ନଥିଲା । ହେଲେ ଆଜିକାଲି ସେ ଜଳଖିଆରେ, ଗରମ ଗରମ ଭାତରେ ଘିଅ ଦେଇ ଆଳୁ ଓ ଅମୃତଭଣ୍ଡାର ଭର୍ତ୍ତା ସାଙ୍ଗରେ ଖାଇବାର ଅଭ୍ୟାସ କରିଥିଲେ । ବାପା ବାହାର ଅଗଣାରେ ବସି ଖାଉଥାନ୍ତି । ମା ବି ସାଙ୍ଗରେ । ଆଶ୍ଚର୍ଯ୍ୟ ହୋଇ ମୁଁ ପଚାରିଲି, ''ସକାଳୁ ସକାଳୁ ଭାତ ଖାଇବାର ଅଭ୍ୟାସ କେବେଠାରୁ ଆରମ୍ଭ କଲଣି ?'' ଖାଉ ଖାଉ ସେ ମୋ ଆଡ଼େ ଅନେଇଲେ । କହିଲେ, ''ଆଉ କ'ଣ କରିବା ।'' ମୋତେ ଲାଗିଲା, ବାପା ବାଧ୍ୟରେ ସକାଳୁ ଭାତ ଖାଉଛନ୍ତି । ନିରୁଦା' କହିଲା, ''ଏହି ଅଭ୍ୟାସ ମୋ ଯୋଗୁ ହୋଇଛି । କ'ଣ ଠିକ୍ ହେଇନି ?'' ମୁଁ କହିଲି, ଠିକ୍ କ'ଣ ବହୁତ ଭଲ ହେଇଛି । ନହେଲେ ସକାଳୁ ମଦ ପିଇବା ଆରମ୍ଭ ହୁଅନ୍ତାଣି । ମତେ କହିଲେ, ''ବେଟା, ତୁ ବି ଖାଇଦେ ।'' ମୁଁ କହିଲି, ''ନା ଏବେ ମୁଁ ଖାଇବି ନାହିଁ । ରନ୍ଧା ସରିଗଲେ ଦୁଇ ପ୍ରହରେ ଖାଇବି ।'' ବାପା କହିଲେ, ''ତାହେଲେ ଘରେ ମୁଢ଼ି ମିକ୍ସ୍‌ଚର ଥିବ । ସେଥିରୁ ନେଇ ଖାଇପକା ।'' 'ହଉ ଖାଇବି' କହି ମୁଁ ନିରୁଦା'ର ସ୍ତ୍ରୀ ପାଖକୁ ଗଲି । ତଳେ ବସି ସେ ଶାଗ ବାଛୁଥିଲେ ।

କିଛି ସମୟ ପରେ ନିରୁଦା'ର ମଝିଆଁ ଝିଅ ଗୋଟାଏ ବଡ଼ କଟୋରା (ବଡ଼ ଗିନା)ରେ ଚନାଚୁର, ପିଆଜ, କଞ୍ଚା ଲଙ୍କା ଏବଂ ସୋରିଷ ତେଲ ଦେଇ ମୁଢ଼ି ନେଇ ଆସିଲା । ମୁଢ଼ି ଦେଖି ମୋ ଝିଅ ବି ମୋ ପାଖରେ ଆସି ବସିଗଲା । ବାପା ମୋର ଝିଅକୁ ନିର୍ଦ୍ଦେଶ କରି କହିଲେ, ''ମା'କୁ ଖାଇବାକୁ ଦେ । ତୁମେମାନେ ଅଲଗା କରି ଖାଅ ।'' ନିରୁଦା' ନିଜ ଝିଅକୁ ଡାକି କହିଲା, ''ଶୁଣ୍, ତାକୁ ବି ଦେ । ଘରକୁ ଡାକି ନେ ତାକୁ ।'' ତା' ଝିଅ ମୋର ପିଲାଙ୍କ ଲାଗି ଦୁଇଟି ଗିନାରେ କ୍ଷୀର ଆଉ ମୁଢ଼ି ନେଇ ଆସିଲା । ମୁଢ଼ି ଖାଉଖାଉ ମୋର କୁକୁଡ଼ା କଥା ମନେପଡ଼ିଲା । ନିରୁଦା' ତାକୁ ଏକ ବାଉଁଶ ଟୋକେଇରେ ରଖିଦେଇଥିଲା । ଗୋଡ଼ ବନ୍ଧା ଥିବାରୁ ସେ ଫଡ଼ଫଡ଼ ହେଉଥାଏ । ଉଠିବାକୁ ଚେଷ୍ଟା କରେ, ହେଲେ ଉଠିପାରେନା । ଆଉ କିଛି ବେଳ ପରେ ତା'ର ମୁଣ୍ଡ କଟି ଅଲଗା ହୋଇଯିବ । ତାକୁ ଆମେ ରାନ୍ଧି ଖାଇବୁ । ତା'ର ଗୋଡ଼କୁ ଖୋଲି ଦେଲେ କ'ଣ ହେବ ଯେ ?'' ଚାଲି ଯାଇ

ପାରିବନି । ତା'ର ବଞ୍ଚିବାର ବାଟ ଆଉ ନାହିଁ । ତାକୁ କେମିତି ରନ୍ଧା ଯିବ ସେ ନେଇ ଯୋଜନା ଚାଲିଛି । ନିରୁଦା'ର ସ୍ତ୍ରୀ କହିଲେ, ''ମା, ମାଂସ ତୁମେ ତିଆରି କର, ନୋହିଲେ ବେବି କରିବ । ସେ ତ ଖୁବ୍ ଭଲ ରାନ୍ଧିବା ଶିଖିଛି ।''

ବେବିର ଧ୍ୟାନ ଆଉ କେଉଁଠି ଥାଏ । ସେ କୁକୁଡ଼ା କଥା ଚିନ୍ତା କରୁଥାଏ । ତେଣୁ, ସେମାନଙ୍କ କଥା ଶୁଣି କେବଳ ଏଁ ଏଁ କରୁଥାଏ । ନିରୁଦା'ର ସ୍ତ୍ରୀ ଶାଗ ବାଛୁବାଛୁ ବେବିର ଗାଲକୁ ଛୁଇଁ କହିଲା, ''ଏ, କ'ଣ ଭାବୁଛ ? ମୁଁ କ'ଣ କହୁଛି, ଶୁଣୁଛ ?''

ମୁଁ ଚମକି ପଡ଼ି କହିଲି, ''ନା ମ କିଛି ନାହିଁ । କ'ଣ କହୁଥିଲ ତୁମେ ?'' ଭାଉଜ କହିଲେ, ''ମୁଁ କହୁଛି ମାଂସ ତୁମେ ରାନ୍ଧିବ ।'' ମୁଁ କହିଲି, ''କାହିଁକି ? ଆଉ ତୁମେ ?'' ସେ କହିଲେ, ''ମତେ ଭଲ କରି ରାନ୍ଧି ଆସେନି ।''ମୁଁ କହିଲି, ''ନା ମ, ଭଲ ହେବ । ନୋହିଲେ ମା' ରାନ୍ଧୁ । ଜାଣିଛ, ମା' ମାଛ-ମାଂସ ଖୁବ୍ ବଢ଼ିଆ ରାନ୍ଧେ । ମୁଁ ଏବେ ଯିବି । ତୁମ ବଡ଼ ଝିଅ କୁଆଡ଼େ ଗଲା ? ତା' ସାଙ୍ଗରେ ନଦୀ ଦେଖିବାକୁ ଯିବି ।'' ବଡ଼ ଝିଅ କ'ଣ ଗୋଟେ କରୁଥିଲା । ମୋ କଥା ଶୁଣି, ଖୁସିରେ ହଁ, ହଁ ଚାଲ ପିଇସୀ ନଦୀକୁ ଯିବା' କହି ଚାଲି ଆସିଲା । କହିଲା, 'ବୁଝିଲ ପିଇସୀ, ମୁଁ ଏଇ ଘରେ ଜନମ ହେଇ ଏଇଠି ବଡ଼ ହେଲି, ହେଲେ ଆଜି ଯାଏ ଦାମୋଦର ନଦୀକୁ ଭଲ ଭାବେ ଦେଖି ପାରିଲି ନାହିଁ । ଆଜି ଯିବା ଚାଲ । ତୁମେ ଯିବା ପରେ ଆଉ ମୋତେ ନଦୀ ଦେଖିବାକୁ ସୁଯୋଗ ମିଳିବ ନାହିଁ । କୁଆଡ଼େ ଯିବାକୁ ମିଳେନା ଏଠି । ତା' ମା' ତା ଉପରେ ପାଟି କଲା, ''ନଦୀରେ କ'ଣ ଦେଖିବାର ଅଛି ? ପୁଣି ସାମାନ୍ୟ ନରମ ଗଳାରେ କହିଲା, ''ତୋ ପିଇସୀ ତ ଏବେ ରହିବ । ପରେ କେତେବେଳେ ନେଇକି ଚାଲିଯିବୁ । ଘରେ କେତେ କାମ ପଡ଼ିଛି ।'' ମୁଁ କହିଲି, ''ପରେ ଆଉ କେତେବେଳେ ଯିବି ଭାଉଜ, ମୁଁ ତ ବେଶି ଦିନ ରହିବି ନାହିଁ । ତା' ପାଇଁ ଆଉ କୋଉ କାମ ରହିଯିବ ଯେ ! ଚାଲ ଚାଲ ।'' ମୋ କଥା ଶୁଣି ସବୁଯାକ ଛୁଆ ଖୁସିରେ ବାହାରି ପଡ଼ିଲେ ।

ନିରୁଦା'ର ଚାରୋଟି ଛୁଆ ଆଉ ମୋର ଦୁଇଟି । ସମସ୍ତେ ମହା ଆନନ୍ଦରେ ନଦୀ ଦେଖିବାକୁ ବାହାରିଲେ । କ୍ଷେତ, ଖଳା, ଲତା, ଗୁଳ୍ମ, ଜଙ୍ଗଲ, କାଂଶବଣ ଆଦି ପାରି ହୋଇ ଆମେ ଖୁବ୍ ଉତ୍ସାହରେ ଚାଲିଥାଉ । କାଂଶ ବଣରେ କାଇଁଶ କାଟୁଥିବା କିଛି ଲୋକ ନିରୁଦା'ର ବଡ଼ ଝିଅକୁ ଚିହ୍ନିଥିଲେ । ପଚାରିଲେ, ''ତୁମେ ସବୁ କୁଆଡ଼େ ବାହାରିଲ ? ଆଉ ତୁମ ସାଙ୍ଗରେ ଇଏ କିଏ ?'' ଝିଅ କହିଲା, ''ମୋର ପିଇସୀ । ଆମେ ସବୁ ନଦୀ ଦେଖିବାକୁ ଯାଉଛୁ ।'' ସେମାନେ ପୁଣି ପଚାରିଲେ, ''କ'ଣ ନଦୀ ଆଗରୁ କେବେ ଦେଖିନା ?'' ମୁଁ କହିଲି, ''ଦେଖିଥିଲେ ବି ସେ ନଦେଖିଲା ପରି ।'' କାଂଶବଣ ପାରି ହେଲା ପରେ ନଦୀ ଭଳି ଛୋଟିଆ ନାଳଟିଏ ପଡ଼ିଲା । ଆଣ୍ଠୁଯାଏ ତହିଁରେ ପାଣିଥାଏ । ସଫା ପାଣି । ଆରପଟକୁ ଯିବାପାଇଁ ବି ରାସ୍ତାଥାଏ । ନିରୁଦା'ର ବଡ଼ଝିଅ ଠିକ୍ ରାସ୍ତାରେ ଯାଇ କେନାଲ୍ ପାରି କଲା । ହେଲେ ତା'ର ଭଉଣୀମାନେ ପାଣି ଭିତର ଦେଇ ଗଲେ । ସେମାନଙ୍କ ଦେଖାଦେଖି ମୁଁ ବି ଚପଲକୁ ହାତରେ ନେଲି ଆଉ ପାଣି ଭିତରେ ଚବର ଚବର ହେଇ ପାରି ହେଲି । ମୋର ଦେଖାଦେଖି ନିରୁଦା'ର ପୁଅ ଓ ମୋର ପିଲାଏ ବି

ପାଣିରେ ଚାଲିଲେ । କେନାଲ ସେପଟେ ଛୋଟିଆ ଜଙ୍ଗଲଟିଏ । ତା ଭିତର ଦେଇ ରାସ୍ତା ଯାଇଛି । ମଝି ଜଙ୍ଗଲରୁ ବିରାଟ ଦାମୋଦର ନଦୀ ଦିଶୁଛି । ମୁଁ ଦୌଡ଼ି ଦୌଡ଼ି ବାଲିଚର ଉପରେ ଧପ କରି ବସି ପଡ଼ିଲି । ପିଲାଏ ସେଠି ଖେଳକୁଦ ଆରମ୍ଭ କରିଦେଲେ । ମନ କରୁଥାଏ, ସେମାନଙ୍କ ଭଳି ସାନ ହୋଇଯାଆନ୍ତି କି ? ବାଲିଘର ତିଆରି କରି ଖେଳନ୍ତି କି ? ବାଲିରେ ମୁଁ କେତେ କ'ଣ ତିଆରି କରି ଲିଭାଇ ଦିଏ । ପିଲାଏ ବାଲିର ପାହାଡ଼ ଘର ଏବଂ ଆଉ କେତେ କ'ଣ ତିଆରି କଲେ । ପିଲାଙ୍କ ସାଙ୍ଗରେ ଖେଳୁଖେଳୁ ମୁଁ କହିଲି, ''ଦେଖିବ, ମୁଁ ବାଲିରୁ ପାଣି ବାହାର କରିବି ।'' ଗୋଟିଏ ଜାଗାରେ ହାତ ପଶେଇ ପାଣି ବାହାର କଲି । ମୋର ଦେଖାଦେଖି ମୋର ଝିଅ ବି ବାଲିରୁ ପାଣି ବାହାର କଲା । କହିଲା, ''ମା' ଦେଖ, ମୁଁ ବି ସାନ ପୋଖରୀଟିଏ କରିଛି । ମୋର ଛୁଆମାନଙ୍କୁ ଆଣିଥାନ୍ତି ଯଦି କେତେ ଭଲ ନହୋଇ ଥାନ୍ତା । ସମସ୍ତଙ୍କୁ ଅନ୍ତତଃ ଭଲକରି ଗାଧୋଇ ଦେଇଥାନ୍ତି ।'' ତା'ର ବଡ଼ମାନଙ୍କ ଭଳି କଥା ଶୁଣି ମୁଁ ଆଚ୍ଛା କହି ହସିଦେଲି ।

ଦାମୋଦର ନଦୀ ବୋଧହୁଏ ମୁଁ ଆଗରୁ ବି ଦେଖିଛି । ହେଲେ ଏତେ ସୁନ୍ଦର ଦେଖି ନଥିଲି । ମନ କରୁଥିଲା ପହଁରି ପହଁରି ପାଣିକୋଇଲି ପକ୍ଷୀ ପରି ପାଣିରେ କେଉଁଠି ବୁଡ଼ ପକାନ୍ତି । ପୁଣି ଆଉ କେଉଁଠି ମୁଣ୍ଡ ଟେକି ଦିଅନ୍ତି । ଶେଷରେ ମୁଁ ଆଉ ନିଜକୁ ସମ୍ଭାଳି ପାରିଲି ନାହିଁ । ପାଣିରେ ଯାଇ ପଶିଗଲି । ପିଲାଙ୍କୁ କହିଲି, ''ତେଲ ସାବୁନ ଆଣିଲନି । ଏଠି କିଛି ବେଳ ଗାଧୋଇ ଯାଇଥାନ୍ତେ !'' ମୋ କଥା ଶୁଣି ନିରୁଦା'ର ମଝିଆଁ ଝିଅ କହିଲା, ''ମୁଁ ତ ଗାଧୋଇକି ଯିବି ।'' ତା'ପରେ ସେ ଫଟାଫଟ ପାଣିରେ ପଶିଗଲା । ତାକୁ ଦେଖି ମୁଁ ଗହୀର ପାଣିକୁ ଚାଲିଗଲି । ନିରୁଦା'ର ବଡ଼ ଝିଅ ନଦୀ ଖଣ୍ଡିରେ ଥାଇ ପାଟିକଲା, ''ଏ ପିଇସୀ, ବେଶି ଭିତରକୁ ଯାଆନା । ସେଠି ଚୋରାବାଲି ଥାଇପାରେ । ଏବେ ବାହାରି ଆସ ।'' ମୁଁ କହିଲି, ''ଆଚ୍ଛା ଆଚ୍ଛା ଏମିତି କଥା ।'' ତା'ପରେ ଶୀଘ୍ର ଶୀଘ୍ର ପାଣିରୁ ବାହାରି ଆସି ଓଦା କପଡ଼ାରେ ବାଲିରେ ଧପ୍ କରି ଯାଇ ବସିଲି । ସେ କହିଲା, ଏବେ ଚାଲ ଫେରିବା । ବେଶି ଡେରି ହେଲେ ମା' ବକବକ କରିବ । ବାଲି ଉପରେ ଅଧା ଶୋଇ ମୁଁ କହିଲି, ''ଠହର, ଯିବା ତ । କେମେରା ଥିଲେ ଆମେ କେତେ ଫଟୋ ନେଇଥା'ନ୍ତେ । ଦୂରରୁ ସେ ବ୍ୟାରେଜ୍ (ନଦୀବନ୍ଧ) କେତେ ସୁନ୍ଦର ଦିଶୁଛି ନା । ନିରୁଦା'ର ମଝିଆ ଝିଅ ପଚାରିଲା, ''ତୁମ ପାଖରେ କେମେରା ବି ଅଛି ?'' ମୁଁ କହିଲି, ''ଏବେ ତ ନାହିଁ । ହେଲେ କଲିକତା ଯିବି ତ, ସେଠୁ ନେଇ ଆସିବି ।''

କେତେ ସୁନ୍ଦର ନଦୀ ! ନଦୀ ସେ ପାରିରେ ଗାଁ, ବଡ଼ ବଡ଼ ଗଛ ଲତା ଏବଂ ମଝିରେ ମଝିରେ ଟାଣ ଜମି । ପାଣି ଉପରେ ବିଜୁଳି ତାର । ଗୋଟାଏ ବିଜୁଳି ଖମ୍ବରୁ ଚଢ଼େଇ ବସା ତଳକୁ ଝୁଲୁଛି । ଖମ୍ବରେ ଚାରି ପାଞ୍ଚଟି କୁଆ ବସିଛନ୍ତି । ଗୋଟାଏ ମା' କୁଆ ତା'ର ସାନ ଛୁଆ ମୁହଁରେ ଖାଇବା ଦେଉଛି ଏବଂ ଛୁଆକୁଆ କା' କା' କରୁଛି । କେମେରାରେ ଏହା କେତେ ସୁନ୍ଦର ଦିଶନ୍ତା ! ବ୍ୟାରେଜ୍ ଉପର ଦେଇ ବାଙ୍କୁଡ଼ା, ବର୍ଦ୍ଧମାନ, ଦୁର୍ଗାପୁର ଯିବା ଆସିବା କରୁଥିବା ଗାଡ଼ିର ଫଟୋ ବି ନେଇ ପାରିଥାନ୍ତି ! ବାଲି ଉପରେ ଦେହ ପ୍ରସାରି ମୁଁ କଳ୍ପନାରେ ବୁଡ଼ି ଯାଇଥାଏଁ । ନିରୁଦା'ର ବଡ଼ ଝିଅ କହିଲା, ''ଚାଲ ପିଇସୀ ବହୁତ ଡେରି ହେଲାଣି ।'' ମୁଁ ହଁ

କହି କପଡ଼ାରେ ଲାଗିଥିବା ବାଲିକୁ ପାଣିରେ ସଫା କଲି । ମଝିଆ ଝିଅ ତା' ନାନୀକୁ କହିଲା, "ଦିଦି, ତୁ ପିଇସୀକୁ ସଡ଼କ ସଡ଼କରେ ବାଟ କଢ଼ା । ପଡ଼ା ଦେଖିବ ।" ମୁଁ ବି ସେ ପ୍ରସ୍ତାବରେ ରାଜି ହୋଇଗଲି । ଜଙ୍ଗଲ, କଣ୍ଟାବଣ ଆଦି ପାରିହୋଇ ପିଲାଏ ପଡ଼ା ମଝି ରାସ୍ତାରେ ମତେ ବାଟ କଢ଼ାଇ ନେଉଥିଲେ । ଲୋକଙ୍କ ଅଗଣା ପାଖଦେଇ ଆମେ ଚାଲୁଥିଲୁ । ମୁଁ କହିଲି, "ରାସ୍ତା ନାହିଁ ନା କ'ଣ ! ଲୋକଙ୍କର ଘର ବାଟ ଦେଇ କାହିଁକି ଯାଉଛ ?" ଗୋଟାଏ ଘର ଅଗଣାରେ ତୁଳସୀ ଚଉରାରେ ତୁଳସୀ ଗଛଟି ଶୁଖି ଗଲାଣି । ପାଣି ଦିଆ ହୋଇନି । ଜଣେ ସ୍ତ୍ରୀ ଲୋକକୁ କହିଲି, "ସେହି ଗଛରେ ପାଣି ଦଉନ, ମରିଯାଉଛି ।" ସ୍ତ୍ରୀ ଲୋକଟି ସାମାନ୍ୟ ନାରାଜ ହୋଇ କହିଲା, ସେ କ'ଣ ମୋ ଘର ଯେ ସେଠି ଯାଇ ପାଣି ଦେବି ?" ପଚାରିଲି, "ଘର ଲୋକ କ'ଣ ନାହାନ୍ତି ?" ସେ ଆହୁରି ବିରକ୍ତ ହୋଇ କହିଲା, "ମୁଁ ଜାଣିନି ।" ମୁଁ ଆଉ କିଛି କହିଲି ନାହିଁ । ଭାବିଲି, ଯଦି ଘର ଲୋକ ନାହାନ୍ତି, ତୁ କ'ଣ କରୁଛୁ ସେଠି ? ଗଛରେ ପାଣି ମୁନ୍ଦେ ଦେଇ ଦେଲେ ତୋ' ହାତରେ କ'ଣ ନୋଳ ପଡ଼ିଯିବ ?

ଆମେ ସବୁ ଲୋକଙ୍କ ଘର ରାସ୍ତା ଛାଡ଼ି ଏବେ ଏକ ପ୍ରଶସ୍ତ ରାସ୍ତାରେ ଚାଲୁଥିଲୁ । ବୁଲିବୁଲି ଗାଁ ଦେଖିବା ଖୁବ୍ ଭଲ ଲାଗିଲା । ମୋର ଦେହର ଓଦା କପଡ଼ା ବାଟରେ ହିଁ ଶୁଖିଗଲା । ଘରେ ପହଞ୍ଚିଲା ବେଳକୁ ରନ୍ଧା ସରିଗଲାଣି । ସମସ୍ତେ ଅପେକ୍ଷା କରିଛନ୍ତି । ଏକା ସାଙ୍ଗରେ ବସି ଖାଇବେ । ଖାଇବା ସବୁ ବାହାର ବାରଣ୍ଡାରେ ରଖା ହୋଇଥାଏ । ବସିବା ଲାଗି ଆସନ ସବୁ ପଡ଼ିଥାଏ । ନଦୀକୁ ଯିବା ଆଗରୁ ଯେଉଁ କୁକୁଡ଼ା ଟୋକେଇରେ ଛଟପଟ ହେଉଥିଲା ଏବେ ସେ କଟା ହୋଇ ମାଂସ ତରକାରିରେ ପରିଣତ ହୋଇସାରିଲାଣି । ଜନ୍ମ କାହିଁକି ବା ହୋଇଥିଲା ଯେ ସେ ?

ସାବୁନ ଓ ତେଲ ନେଇ ମୁଁ ଗାଧୋଇବାକୁ ଗଲି । ଆଗ ଛୁଆଙ୍କୁ ଗାଧୋଇ ଦେଲି । ନିରୁଦା'ର ମଝିଆ ଝିଅ ହେଣ୍ଡପମ୍ପ୍ ମାରୁଥାଏ । ତାକୁ କହିଲି, "ଏବେ ତୁ ଗାଧୋଇ ପଡ଼ । ମୁଁ ପାଣି ମାରିବି ।" ସେ କହିଲା, "ନା ପିଇସୀ, ମୁଁ ନଦୀରେ ଗାଧୋଇ ସାରିଛି । ତୁମେ ସାବୁନ ଲଗାଇବାକୁ ଦେବ ଯଦି ପୁଣି ଥରେ ଗାଧୋଇବି ।" ମୁଁ କହିଲି, "ଆରେ ! ସେଇଟା କ'ଣ ପଚରାଯାଏ ? ନେ ଲଗା ।" ତା'ପାଇଁ ମୁଁ ପାଣି ମାରିବାରୁ ସେ ମନା କରି କହିଲା, "ପିଇସୀ, ତୁମେ ପାଣି ମାରନା । ମୁଁ ନିଜଲାଗି ବାଲ୍ଟିରେ ପାଣି ମାରି ଭର୍ତ୍ତି କରିଦେବି ।"

ସମସ୍ତେ ଖାଇ ବସିଲେ । ବାପା ବି । ମା' ଭାତ ବାଢୁଥାଏ । ନିରୁଦା'ର ସ୍ତ୍ରୀ ଅଇଁଠା ହେବା ପୂର୍ବରୁ ନିଜ ଥାଳିରୁ ଦୁଇ ଖଣ୍ଡି ମାଂସ ବାପାଙ୍କ ଥାଳିରେ ରଖିଦେଲା । ତା' ପରେ ନିଜେ ଖାଇବା ଆରମ୍ଭ କଲା । ମା' ଆଡ଼ ଆଖିରେ ଏହା ଦେଖିନେଲା । କିନ୍ତୁ ସେତେବେଳେ କିଛି କହିଲା ନାହିଁ । ବାପା ମା'କୁ କହିଲେ, "ରାନୀ ଏବେ ନିଜପାଇଁ ଖାଇବା ପରଷ । ସମସ୍ତଙ୍କ ପାଇଁ ବାଢ଼ି ସାରିବା ପରେ ମା' ନିଜପାଇଁ ବାଢ଼ିଲା । ବାପା ନିଜ ଥାଳିରୁ ଦୁଇ ଖଣ୍ଡି ମାଂସ ମା' ଥାଳିରେ ଦେବାକୁ ବସିଲେ । ମା' ରାଗିଯାଇ କହିଲା, "ମୋ ଥାଳିରେ କିଛି ଦିଅନା । ନୋହିଲେ ମୁଁ କହି ରଖୁଛି ମୋଟେ ଖାଇବି ନାହିଁ ।" କେହି ନ ବୁଝିଲେ ବି ମୁଁ ବୁଝି ପାରୁଥିଲି ମା'ର ରାଗର କାରଣ । ତାକୁ

କହିଲି, ''ଆଚ୍ଛା ଠିକ୍ ଅଛି । ବାପା ଦେବେନି । ଶାନ୍ତିରେ ତୁ' ଖା ଆଉ ଅନ୍ୟମାନଙ୍କୁ ବି ଖାଇବାକୁ ଦେ ।'' ମୋର କଥା ଶୁଣି ସେ ଆହୁରି ରାଗିଯାଇ କହିଲା, ''ତୁମେ ସବୁ ଖାଅ । ମୁଁ କାହାରି ଅଇଁଠା ଖାଏନି ।'' ସାମାନ୍ୟ ହସିଦେଇ କହିଲି, ''ବାପାଙ୍କ ଅଇଁଠା ବି ଖାଉନା । ମୋ କଥାର ଅର୍ଥ ବୁଝି ପାରିଲା ନା ନାହିଁ କେଜାଣି ଟିକିଏ ନରମି ଯାଇ କହିଲା, ''ହଁ, ତୋ ବାପାଙ୍କ ଅଇଁଠା ଖାଇବି । ଆଉ କାହାରି ନୁହେଁ ।'' ଖାଉଖାଉ ମୁଁ ନରମ ଗଳାରେ କହିଲି, ''ମା, ଭାଉଜ ଯେତେବେଳେ ବାପାଙ୍କ ଥାଳିରେ ମାଂସ ଦେଲେ, ସେତେବେଳକୁ ସେ ଖାଇବା ଆରମ୍ଭ କରି ନଥିଲେ । ତୁ ମିଛଟାରେ ଅଇଁଠା କଥା ଉଠେଇଉଛୁ ।'' ମୋ କଥା ଶୁଣି ମା' ଆହୁରି ରାଗିଗଲା । ଏମିତି ଯାତ୍ରୁ ସ୍ୟାତ୍ରୁ ବକିଲା ଯେ ମୁଁ ଶୁଣି ହତଭମ୍ବ ହୋଇ ପଡ଼ିଲି । ବାପା ତାକୁ କହିଲେ, ''ତୁ ଅନ୍ୟମାନଙ୍କୁ ଖାଇବାକୁ ଦେବୁ ନା ନାହିଁ ?'' ମା' ଖାଇବା ଛାଡ଼ି ଚୁପ୍ ହୋଇ ବସିଲା । ଆଗ ଭଳି ବାପା ତାକୁ ଆଉ ଖୋସାମତ କଲେ ନାହିଁ । ଥରେ ଦୁଇଥର ଖାଇବାକୁ କହି ନିଜେ ଖାଇବାରେ ଲାଗିଲେ । ଆଗ ତ ମା' ଥରେ ଖାଇବା ମନା କଲେ, ବାପା ନିଜେ ଖାଇବା ଛାଡ଼ିଦେବେ । ଏବେ ମନେ ହେଉଛି, ମା'ର ରାଗରୋଷରେ ତାଙ୍କୁ ଫରକ ପଡୁନି ବୋଧେ । ଭାବୁଛନ୍ତି, ଯାହାକୁ ଭୋକ ଲାଗିବ, ସେ ବଳେ ଖାଇବ । ମା' ମୁହଁ ଫୁଲେଇ ବସିଥାଏ । ନିରୁଦା'ର ବଡ଼ ଝିଅ ମୋ ଆଡ଼କୁ ଦେଖି ମୁରୁକି ମୁରୁକି ହସୁଥାଏ । ମୁଁ ତାକୁ ଚୁପ୍ ରହିବାକୁ ଇସାରାରେ କହିଲି । ମା'ର ରୁଷିବା ଦେଖି ସବୁ ଛୁଆ ମନେମନେ ମଜାକ୍ କରୁଥାନ୍ତି । ନିରୁଦା'ର ପୁଅ ହସି ହସି କହିଲା, ''ଆଈକୁ କ'ଣ ହେଲା ? ବୋଧହୁଏ ତା'ମୁଣ୍ଡରେ ଭୂତ ପଶିଯାଇଛି । ବାଲ୍‌ଟିଏ ପାଣି ମୁଣ୍ଡରେ ଢାଳିଦେବା କି ? ଭୂତ ଛାଡ଼ି ଚାଲିଯିବ ।'' ତା' କଥା ଶୁଣି ସବୁ ଛୁଆ ଜୋର୍ ଜୋର୍‌ରେ ହସିଲେ । ନିରୁଦା'ର ସ୍ତ୍ରୀ ପାଟିକଲା, ''ତୁମକୁ ସବୁ ବହୁତ ମଜା ମିଳୁଛି ନା ।''

ଏହି ସମୟରେ ଧଳା ଧୋତି ଆଉ କୁର୍ତ୍ତାପିନ୍ଧା ଜଣେ ଶ୍ୟାମଳ ରଂଗର ବାଙ୍ଗାଲୀ ଲୋକ ''ହାଲ୍‌ଦାର୍‌ଦା', ହାଲ୍‌ଦାରଦା'' କହି ଘରକୁ ଆସିଲେ । ବାପା ଖାଇବା ଛାଡ଼ି 'ଆସ ମାଷ୍ଟରଜୀ ଆସ, ବସ' କହି ତାଙ୍କୁ ଚେଆର୍‌ଟିଏ ବଢ଼େଇଦେଲେ । ସେ ନ ବସୁଣୁ ବାପା ଘରୁ ମୋ ବହିଟି ଆଣି ତାଙ୍କ ହାତରେ ଦେଲେ । ଏଇ ବହିଟି ମୋ ଝିଅ ଲେଖିଛି, ହେଇ ଯେ ଖାଇ ବସିଛି । ନିରୁଦା'ର ପୁଅ କହିଲା, ''ପିଇସୀ, ସେ ପରା ଆମ ସ୍କୁଲ୍‌ର ହେଡ୍‌ମାଷ୍ଟର । ମାଷ୍ଟରଜୀ ମୋତେ ଦେଖି କହିଲେ, ବାଃ ରେ, ଯା ଉପରେ ଲକ୍ଷ୍ମୀଙ୍କ କୃପା ରହିଛି । କୋଉଠି ରହେ ସେ ?'' ବାପା କହିଲେ, ''ଦିଲ୍ଲୀରେ'' । ମାଷ୍ଟରଜୀଙ୍କ କଥା ମା'କୁ ଭଲ ଲାଗିଲା ନାହିଁ । ସେ ମୋ ଆଡ଼କୁ ରାଗିକି ଅନାଉଥାଏ ।

ମାଷ୍ଟରଜୀଙ୍କୁ ଦେଖି ମୋର ସ୍କୁଲ୍ ଶିକ୍ଷକ ବଙ୍ଗାଳୀ ମାଷ୍ଟରଜୀଙ୍କ କଥା ମନେପଡ଼ିଲା । ବୟସ, ଦେହର ରଙ୍ଗ, ଗଠନ ଆଉ ପରିଧାନ ସବୁ ତାଙ୍କ ଭଳି । ମନ ହେଉଥାଏ, କୁନି ବେବି ହେଇ ହାତରେ ବହି ଧରି ତାଙ୍କ ପାଖରେ ପାଠ ବହି ପଢ଼ନ୍ତି । ପିଲାଦିନର ସ୍ମୃତି ମୋ ଆଖି ଆଗରେ ଝଲସିଗଲା । ମୋର ଅନୁଭବ ହେଲା, ମାଷ୍ଟରମାନେ କେତେ ଶ୍ରଦ୍ଧାରେ ବେବିକୁ ପାଠ ପଢ଼ାଉଛନ୍ତି । ଦିଦିମାନେ ତାକୁ କେତେ ସ୍ନେହରେ ଡାକୁଛନ୍ତି । ବେବି କାନ୍ଦ କାନ୍ଦ ହେଇ ସାର୍

ଆଉ ଦିଦିମାନଙ୍କ ଆଗରେ ଛିଡ଼ା ହେଇଛି । ଗଣିତ ସାର ଭାରି ରାଗନ୍ତି । କେଉଁ ଭୁଲ୍‌ପାଇଁ ତାକୁ ଖୁବ୍ ଜୋର୍‌ରେ ପାଟି କରୁଛନ୍ତି । ଅଚାନକ ମୁଁ ପ୍ରକୃତିସ୍ଥ ହେଲି । ଖାଉ ଖାଉ ମୁଁ କୁନି ବେବି ପାଖରେ ପହଞ୍ଚି ଯାଇଥିଲି । ନିରୁଦା'ର ମଝିଆ ଝିଅ ବାରମ୍ବାର ପଚାରୁଥାଏ, ''ପିଇସୀ, କ'ଣ ହେଲା ? ଖାଉନ ଯେ ?'' ତା'ପରେ ଶୀଘ୍ର ଖାଇସାରି ମୁଁ ହେଣ୍ଡପମ୍ପ୍‌ରେ ଯାଇ ହାତ ଧୋଇଲି ଏବଂ ଚେୟାର୍‌ଟିଏ ନେଇ ମାଷ୍ଟରଜୀଙ୍କ ପାଖରେ ଯାଇ ବସିଲି । ମାଷ୍ଟରଜୀ ବାପାଙ୍କୁ କହିଲେ, ''ବାଃ, ହାଲ୍‌ଦାର୍‌ବାବୁ, ଆପଣଙ୍କ ଝିଅ ତ ବହୁତ ଭଲ କାମଟିଏ କରିଛି । ବାଃ, କେତେ ସୁନ୍ଦର ! ବହିର ପୃଷ୍ଠା ଓଲଟାଉ ଓଲଟାଉ ସେ ପୁଣି କହିଲେ, ''ହେଲେ ଝିଅ, ମୁଁ ତ ହିନ୍ଦୀ ଭଲ ଭାବେ ଜାଣେନା । ତୁ କ'ଣ ହିନ୍ଦୀରେ ଲେଖିଛୁ ?'' ମୁଁ କହିଲି, ''ନା, ନା, ମୁଁ ତ ବଙ୍ଗଳାରେ ଲେଖିଛି । ତାକୁ ହିନ୍ଦୀରେ ଅନୁବାଦ କରାଯାଇଛି । ସେ କହିଲେ, ତୁ ବହୁତ ଭଲ କାମଟିଏ କରିଛୁ । ଜୀବନରେ ଏଇଟା ସବୁଠାରୁ ମହତ୍ତ୍ୱପୂର୍ଣ୍ଣ କାମ । ହଁ, ଏଇଟା ତୋର ପ୍ରଥମ ବହି ନା ଆଗରୁ ବି କିଛି କ'ଣ ଲେଖିଛୁ ?'' ମୁଁ କହିଲି, ''ପ୍ରଥମ ଲେଖା । ଆଗରୁ କେବେ କିଛି ଲେଖିନି ।'' ମାଷ୍ଟରଜୀଙ୍କ ସ୍କୁଲ୍ ଖୋଲା ଥିଲା । ଖାଇବା ଛୁଟି ବେଳେ ବାପାଙ୍କ ସହ ଦେଖା କରିବାକୁ ଚାଲିଆସିଥିଲେ । ସେ ଯିବାକୁ ବାହାରିଲେ । କହିଲେ, ''ମୁଁ ଯାଏ । ମୋର କ୍ଲାସ୍ ଅଛି । ପରେ ଆସିବି ।'' ମୁଁ କହିଲି, ''ଆପଣ ଆଶୀର୍ବାଦ ଦିଅନ୍ତୁ, ଆଶୀର୍ବାଦ ଥିଲେ ହୁଏତ ଭବିଷ୍ୟତରେ ପୁଣି କିଛି ଲେଖିପାରିବି ।'' ତାଙ୍କର ପାଦଛୁଇଁ ମୁଁ ପ୍ରଣାମ କଲି । ମୋ ମୁଣ୍ଡରେ ହାତରଖି ସେ କହିଲେ, ''ନିଶ୍ଚୟ ନିଶ୍ଚୟ । ନିଶ୍ଚୟ ଲେଖିବୁ । ଆରମ୍ଭ କରିଛୁ ଯେତେବେଳେ, ଆଗକୁ ଆହୁରି ଲେଖିବୁ । ଦେଖୁନୁ ଏଇଥିପାଇଁ ତୋ ବାପା ଆଜି କେତେ ଖୁସୀ ଅଛନ୍ତି । ଏବେ ଯାଏଁ । ତୋ ସାଙ୍ଗରେ କେତେ କଥା ହେବାର ଅଛି । ପୁଣି ଆସିଲେ କଥା ହେବା ।''ତାଙ୍କ ଗଲା ପରେ ଭାବିଲି ସ୍କୁଲ୍ ଆଡୁ ବୁଲି ଆସିଲେ ଭଲ ଲାଗନ୍ତା । ନିରୁଦା'ର ପୁଅକୁ କହିଲି, ''ତୁମ ସ୍କୁଲ୍‌କୁ ମତେ ନେଇଯିବୁ ରେ ?'' ସେ ବହୁତ ଖୁସି ହୋଇ କହିଲା, ''ଚାଲ ଏବେ ଚାଲ ।'' ମୁଁ କହିଲି, ''ନା ଏବେ ନାହିଁ । ଏବେ ତ କ୍ଲାସ୍ ଚାଲିଥିବ ।''

ଗାଁ ସ୍କୁଲ୍ ଦେଖିବାର ଅନୁଭବ ଅପୂର୍ବ । ପିଲାଙ୍କ ଖେଳକୁଦ ଧାଁଦୌଡ଼ ଦେଖିବାକୁ ଖୁବ୍ ଭଲ ଲାଗେ । ପଢ଼ା ଲେଖା ତ ସହର ପିଲାଙ୍କ ପରି ଗାଁ ପିଲା ବି କରନ୍ତି । ମାତ୍ର ଗାଁର ସ୍କୁଲ୍‌ପିଲା ଅଲଗା ଜଣାପଡ଼ନ୍ତି । କପଡ଼ାଲତା ବା ଖାଇବା ପିଇବାକୁ ନେଇ ସେମାନେ କଦାପି ଅଳି କରନ୍ତି ନାହିଁ । କେବେ କହିବେନି ଡ୍ରେସ୍ ନାହିଁ ବା ଟିଫିନ୍ ନାହିଁ ଯଦି, ତାହେଲେ ସ୍କୁଲ୍ ଯିବିନି । ସେସବୁ ସହରୀ ପିଲାଙ୍କ ଢଙ୍ଗ । ଆଉ କାହିଁକି ବା ନ କହିବେ ଯେ ! ସହରରେ ବାପା ମା ତ ପିଲାଙ୍କ ଟିଫିନ୍‌ପାଇଁ ଗୋଟାକ ପରେ ଗୋଟିଏ ନୂଆ ଜିନିଷ ଆଣି ରଖନ୍ତି । କଟ୍‌ଲେଟ୍, ମେଗି, ଟୋଷ୍ଟ, ସେଣ୍ଡୱିଚ୍ ଆଉ କେତେ ଜିନିଷ । ପଖାଳ ଆଉ ବାସି ରୁଟି ଖାଇବାରେ ଅଭ୍ୟସ୍ତ ଗାଁ ପିଲା । ଏସବୁର ଧାର୍ ଧାରନ୍ତି ନାହିଁ । ଟିଫିନ୍ ନେଇ ସ୍କୁଲ୍ ଯିବା କଥା ସେମାନେ ଚିନ୍ତା ସୁଦ୍ଧା କରନ୍ତି ନାହିଁ । ଅନେକଙ୍କ ପାଇଁ ତ ଟିଫିନ୍ ଆଣିବା ସମ୍ଭବ ହୁଏନା । ଯେଉଁ ପିଲା ଟିଫିନ୍ ନେଇ ଯାଆନ୍ତି ସେମାନେ ଚିନ୍ତା କରନ୍ତି ନାହିଁ ଯେ ସେମାନେ ଖାଇବେ ଆଉ ବାକିମାନେ

ଅଖିଆ ରହିବେ । ସହରୀ ସ୍କୁଲ୍ ପିଲା ତ ଅନେକ ସମୟରେ ମହଙ୍ଗା ଜିନିଷ ସବୁ ଟିଫିନ୍‌ରେ ସାଙ୍ଗ ପିଲାଙ୍କ ଆଗରେ ନିଜ ବଡ଼ିମା ଦେଖାଇବାକୁ ନିଅନ୍ତି । ଶୁଣିଲା ପରେ ଲାଗେ, ଯେମିତି ସେମାନେ ଖାଇବା ଜିନିଷ ନୁହେଁ ପଇସା ଖାଉଛନ୍ତି । ଗାଁ ପିଲାଙ୍କ ପରି ଗାଁ ସ୍କୁଲ୍‌ର ମାଷ୍ଟରଜୀ ମଧ୍ୟ ସାଧାସିଧା, ସରଳ କିସମର ।

ମୁଁ ଚେଆର୍‌ରେ ବସିଥାଏ । ଖିଆସାରି ନିରୁଦା' ହାତ ମୁହଁ ଧୋଇଲା ଏବଂ ପାଖକୁ ଆସି କହିଲା, ''ତୁ ଶଙ୍କରକୁ ଭେଟିବାକୁ ଯିବା କଥା କହୁଥିଲୁ ପରା । ତେବେ ଚାଲ୍ ।'' ମୁଁ କହିଲି, ''ଏତେଦୂର ମୁଁ ସାଇକେଲ୍ ପଛରେ ବସି କ'ଣ ଯାଇପାରିବି ?'' ସେ କହିଲା, ''ହଁ ମ ଯାଇ ପାରିବୁ ଯେ । ଏବେ ଶୀଘ୍ର ବାହାର । ନୋହିଲେ ଫେରୁଫେରୁ ରାତି ହେଇଯିବ ।'' ମୋର ବଡ଼ପୁଅ ତା' ବାପପାଇଁ କିଛି କପଡ଼ା କିଣି ପଠାଇଥିଲା । ତାକୁ ସାଙ୍ଗରେ ନେଲି । ନିରୁଦା'କୁ ପଚାରିଲି, ''ଦାଦା, ତୁମେ ମୋ ସହିତ କ'ଣ ସେଠି ବିଭିନ୍ନ ଘର ବୁଲି ପାରିବ ? ମୋର ଆଉ କେତେ ଜଣଙ୍କୁ ସେଠି ଭେଟିବାର ଅଛି ।'' ସେ କହିଲା, ''ଚାଲ ତ ଆଗ । କୋଉଠି କୋଉଠିକୁ ଯିବୁ ଦେଖିବା ।''

ସାଇକେଲ୍‌ରେ ଯାଉଯାଉ ସନ୍ଧ୍ୟା ହେବାକୁ ବସିଲା । ଭାବିଲି, ସମସ୍ତଙ୍କୁ କ'ଣ ଭେଟି ହେବ ? ପ୍ରଥମେ ମୁଁ ମୋ' ଦାଦାର ମାମୁ-ଶଶୁର ଘରକୁ ଗଲି । ସେମାନେ ଆମ୍ବେଦକର କଲୋନୀରେ ରହନ୍ତି । ଘରେ ନ ପଶୁଣୁ ଦେଖିଲି, ସେଠି ତିନି ଚାରି ଜଣ ସ୍ତ୍ରୀ ଲୋକ ଏବଂ ଅନେକ ଛୁଆ ଟିଭି ଦେଖୁଛନ୍ତି । ନିରୁଦା' ମୋର ଦାଦାଙ୍କ ମାଇଁଶାଶୂକୁ ଯାଇ କହିଲା, ''ତୁମ ଘରକୁ କୁଣିଆ ଆସିଲେଣି । ମୁଁ ସେତେବେଳେ ଗେଟ୍ ପାଖରେ ଠିଆ ହେଇଥାଏ । ନିରୁଦା' କଥା ଶୁଣି ମାଇଁ ବାହାରକୁ ଆସିଲେ । ମତେ ଦେଖି ସେ ଆଶ୍ଚର୍ଯ୍ୟ ହୋଇଗଲେ । ମୁଁ କହିଲି, ''ମାଇଁ ମତେ ଚିହ୍ନି ପାରୁଛଟି ?'' ମୋର ଦାଦା ତାଙ୍କୁ ମାଇଁ ଡାକେ । ତେଣୁ ମୁଁ ବି ମାଇଁ ଡାକୁଥିଲି । ନୋହିଲେ, ତାଙ୍କ ବଂଲାଦେଶୀ ଭାଷାରେ ମାଇଁକୁ ସେମାନେ ମାଓଇ ନା ଫାଓଇ କ'ଣ କୁହନ୍ତି । ସେ ମୋ କଥା ବୁଝି ପାରିଲେ ନାହିଁ । ମୋ ତୁଣ୍ଡରୁ ମାଓଇ ଠିକ୍ କରି ବାହାରେନା । ତା'ପରେ ନିରୁଦା' ତାଙ୍କ ସାଙ୍ଗରେ ବଂଲାଦେଶୀ ବୋଲିରେ କଥା ହେଲା । ସେ ଠିକ୍ ବୁଝିଗଲେ । ଆଉ କାହିଁକି ବା ନବୁଝିବେ ଯେ ! ଦୁହେଁ ତ ବଂଲାଦେଶୀ । ମାଇଁ କହିଲେ, ''ଆଛା ଆଛା, ହାସିର ନଣନ୍ଦ ! ଆସ ଆସ, ଭିତରକୁ ଆସ । ମତେ ସେ ପାଖରେ ବସେଇଲେ । ସେମାନଙ୍କ ଘରେ ରେଣୁ ମଧ୍ୟ ଟିଭି ଦେଖୁଥିଲା । ସେତେବେଳେ ମୁଁ ଯେଉଁ ପଡ଼ାରେ ରହୁଥିଲି ସେହି ପଡ଼ାରେ ରେଣୁ ଭଡ଼ାଘରେ ରହୁଥିଲା । ତା'ର ଭିଣେଇ ତାକୁ ନେଇ ଚାଲି ଆସିଥିଲା । ପଡ଼ାରେ ସମସ୍ତେ ସେମାନଙ୍କୁ ପତିପତ୍ନୀ ବୋଲି ମନେ କରୁଥିଲେ । ସେହି ପଡ଼ାରେ ସେମାନଙ୍କର ଗୋଟିଏ ପୁଅ ଜନ୍ମ ହେଲା । ରେଣୁର ନାନୀର ଦୁଇ ତିନୋଟି ବଡ଼ ବଡ଼ ପିଲା ଥିଲେ । ରେଣୁ ଲାଗି ତାର' ଭିଣେଇ ସେ ସମସ୍ତଙ୍କୁ ଛାଡ଼ିଦେଇଥିଲା । ଭିଣେଇର ନାଁ ଥିଲା ତାରା । ଛୁଆକୁ ନେଇ କେତେବର୍ଷ ସେମାନେ ଖୁସିରେ ରହିଲେ । ପରେ ପୁଣି କ'ଣ ହେଲା କେଜାଣି, ରେଣୁକୁ ଛାଡ଼ି ତାରା ଆଉ କୁଆଡ଼େ ଚାଲିଗଲା । ବିଚାରୀ ରେଣୁ ଦୁଇ ବର୍ଷର ଛୁଆକୁ ନେଇ ବା କୁଆଡ଼େ ଯିବ ! ଛୁଆର ଲାଳନ ପାଳନ ତ କରିବାକୁ ପଡ଼ିବ ! କିଛିଦିନ ସେ ତାରାର ଅପେକ୍ଷାରେ ସମୟ କାଟିଲା ।

ପରେ ତାରା ଆଉ ଯେତେବେଳେ ଫେରିଲା ନାହିଁ, ଏଠି ସେଠି ଯା ଘରେ ତା' ଘରେ କାମ ଖୋଜିବାକୁ ଲାଗିଲା । କାମ ପାଇଲା । ହେଲେ ଛୁଆକୁ ନେଇ କାମ କରିବ କେମିତି ? ରେଣୁକୁ ଦେଖି ଜଣେ ଲୋକ ତା' ପ୍ରତି ଆକୃଷ୍ଟ ହେଲା । ସେ ଚାକିରି କରୁଥିଲା । ଭଲ ଚାକିରି । ରେଣୁ ସହିତ ତାର ବାହାଘର ହେଲା । ଏବେ ତିନି ବର୍ଷ ହେବ ଦୁହେଁ ଭଲରେ ଅଛନ୍ତି । ରେଣୁର ପ୍ରଥମ ପତିର ପୁଅ ତାକୁ ବାପା ଡାକେ । ରେଣୁର ବଦମାସ ଭିଣେଇ ତାରାର କିଛି ଖୋଜଖବର ନାହିଁ । ଲୋକେ ଭାବନ୍ତି, ହୁଏତ ସେ ରେଣୁର ନାନୀ ସାଙ୍ଗରେ ଯାଇ ରହୁଛି । ହେଲେ କେହି ଦେଖି ନାହାନ୍ତି । କିଏ କହିବ ଆଉ କୋଉ ନୂଆ ଝିଅକୁ ଫସେଇ ଲୋକଟି କୋଉଠି ରହୁଥିବ । କାହାର କେଉଁ ଭରସା । ରେଣୁର ଦ୍ୱିତୀୟ ପତିର ବୟସ କିଛି କମ୍ ନୁହେଁ । ହୁଏତ ସେ ବି ଆଉ କେଉଁଠି ନିଜ ପ୍ରଥମ ପତ୍ନୀକୁ ଛାଡ଼ିଦେଇ ଆସିଛି । ଏଭଳି ଲୋକଙ୍କର କି ଭରସା ?

ମାଇଁ ଘରେ ଦେଖା ହେଲାରୁ ରେଣୁ ଆଉ ମୁଁ ଭାରି ଖୁସୀ ହେଲୁ । ମୁଁ ତାକୁ ପଚାରିଲି, "ତୁ ଏଠି କେମିତି ? ମୁଁ ତ ମନରେ କଳ୍ପନା ସୁଦ୍ଧା କରି ନଥିଲି ଯେ ତୋ ସାଙ୍ଗରେ ଏଠି ଦେଖା ହୋଇଯିବ । ଆଉ ସବୁ ଭଲ ?" ରେଣୁ ଉତ୍ତର ଦେଲା, "ଭଲ । ତୁ କେମିତି ଅଛୁ ?" ତୁ ତ ହଠାତ୍ ପବନ ଭଳି ଉଭେଇ ଗଲୁ । ଏତିକି କହି ସେ ଘର ଆଢୁଆଳକୁ ମତେ ଡାକି ନେଲା । ଇସାରାରେ ସେ ମତେ ତା' ଘରକୁ ଡାକୁଥିଲା । ମୁଁ ତା' ସାଙ୍ଗରେ ଯାଇ ପାରୁ ନଥିଲି । ମାଇଁ ଓ ଦାଦା ମିଶି ଦାଦାର ଝିଅମାନଙ୍କ ସଂପର୍କରେ କଥାଭାଷା କରୁଥିଲେ । ଏହି ବେଳାରେ ଜଣେ ସ୍ତ୍ରୀ ଲୋକ ମାଇଁଙ୍କୁ ମୋ ସଂପର୍କରେ ପଚାରିଲେ । ମାଇଁ କହିଲେ, "ସେ ମୋର ଭାଣିଜୀ ତୁଲ୍ୟ ।" ସ୍ତ୍ରୀ ଲୋକ ଜଣକ ମତେ ପଚାରିଲେ, "ତୋର ବାହାଘର ହେଇନି ?" ଏହା ଶୁଣି ରେଣୁ ଆଢୁଆଳରୁ ବାହାରି ଆସି କହିଲା, "ନା, ନା ସେ ବାହା ହେଇଛି । ତା'ର ସ୍ୱାମୀ ଓ ପିଲାପିଲି ବି ଅଛନ୍ତି । ମତେ ସେ ପୁଣି ହାତଠାରି ଡାକିଲା । ମୋ ସଂପର୍କରେ ଏବେ କ'ଣ କଥାବାର୍ତ୍ତା ଚାଲିବ-ତାହା ମୁଁ ବୁଝି ପାରୁଥିଲି । ଭାବିଲି, ଏଠୁ ଯେତେ ଶୀଘ୍ର ଉଠିଯିବା ଭଲ । କହିଲି, "ରେଣୁ କ'ଣ ପାଇଁ ଡାକୁଥିଲା ଦେଖେଁ ତ ?" ଏତିକି କହି ମୁଁ ରେଣୁ ପାଖକୁ ଗଲି । ନିରୁଦା ସେଠି ଆଗରୁ ଯାଇ ବସିଥାଏ ।

ଦାଦା'ର ମାମୁ-ଶଶୁରଙ୍କ ଘର ଆଗ ଅପେକ୍ଷା ଖୁବ୍ ଭଲ ହୋଇଯାଇଛି । ମାଟି କାନ୍ଥ ଓ ଖପର ବଦଳରେ ଏବେ ପକ୍କା ହୋଇଗଲାଣି । ଚାରି ପାଞ୍ଚଟି ରୁମ୍ ଏବଂ ପାଇଖାନା । ଦୁଇ ତିନିଜଣ ସେଠି ଭଡ଼ା ନେଇ ବି ରହିଛନ୍ତି । ଭଡ଼ାଟିଆଙ୍କ ମଧ୍ୟରେ ରେଣୁ ବି ରହିଛି । ସେ ମତେ ତା' ଘର ଭିତରକୁ ନେଇଗଲା । ସେଠି ଖଟ ଉପରେ ଜଣେ ଅଚିହ୍ନା ବ୍ୟକ୍ତି ବସିଥାଏ । ଭିତରେ ଆଉ ଗୋଟିଏ ରୁମ୍ ଅଛି । ରେଣୁ ମତେ ସେଠିକି ଡାକି ନେଲା । କହିଲା, "ବୁତୋର ବାପା ଆମକୁ ତିନି ବର୍ଷ ହେଲା ଛାଡ଼ି ଚାଲିଗଲାଣି । ମୁଁ ତାକୁ ଅନେକ ଦିନ ଯାଏ ଅପେକ୍ଷା କଲି । ଯେତେବେଳେ ସେ ଆଉ ଆସିଲା ନାହିଁ, ମୁଁ ଆଉ କ'ଣ କରନ୍ତି ? ମୁଁ ୟାଙ୍କୁ ବାହା ହେଇଗଲି । ତୁ ମତେ ଭଲ କହ କି ମନ୍ଦ । ମୁଁ କ'ଣ କରନ୍ତି ଯେ । ଛୁଆକୁ ବି ପାଳିବାର ଥିଲା । ଏସବୁ କଥା ତୁ ଏମାନଙ୍କ ଆଗରେ କହିବୁନି । ତୁ ତ ଜାଣୁ, ଏମାନେ ବିନା ବୁଝି ବିଚାରି କ'ଣ ନା କ'ଣ

କରିଦେବେ ।'' ମୁଁ ମାଇଁଙ୍କ ଆଗରେ ରେଣୁ ଆଉ ତାରା କଥା କାଳେ ଆରମ୍ଭ କରିଦେବି, ସେହି ଭୟରେ ସେ ମତେ ହାତ ଠାରି ଡାକୁଥିଲା ।

ଅବଶ୍ୟ ମୋର ବା କ'ଣ ଯାଉଛି ଯେ ତାରା କଥା ଆଲୋଚନା କରିବି । ସେଥିରେ ସମୟ ନଷ୍ଟ ହେବା ଛଡ଼ା ଆଉ ଅଧିକ କ'ଣ ହେବ ? ନିଜ ସୁବିଧା ଅନୁସାରେ ଲୋକ ନିଷ୍ପତ୍ତି ନିଅନ୍ତି । ଏମିତିରେ ବି ରେଣୁର ଭୁଲ୍ ବା କେଉଁଠି ଯେ ! ତାରା ଯିବା ପରେ ସେ ବାହା ହେଲା । ଆଗରୁ ତ ବାହା ହେଇନି । ପୁଣି, ନିଜ ସ୍ତ୍ରୀ ଥିବା ସତ୍ତ୍ୱେ ତାରା ରେଣୁକୁ ନେଇ ପଳାଇଗଲା । ମୁଁ ତ କହିବି, ରେଣୁ ଯାହା କରିଛି, ଠିକ୍ କରିଛି ।

କଥାବାର୍ତ୍ତା ମଝିରେ ରେଣୁ ଷ୍ଟୋଭ୍ ଜାଳି ଚା' ତିଆରିବାକୁ ଯାଉଥିଲା । ମୁଁ କହିଲି ''ରହିଥା' କ'ଣ ଏସବୁ କରୁଛୁ ? ତୋର ପୂର୍ବର ଅଭ୍ୟାସ ଏଯାଏ ଉଣା ପଡ଼ିନି । ଘରକୁ ଯିଏ ଆସୁନା କାହିଁକି ଲାଗିପଡ଼ିବ ଚା' ତିଆରିରେ ।'' ରେଣୁ କହିଲା, ''ଆଉ ତୁ ?'' ତୁ ବି କ'ଣ କମ୍ ଓସ୍ତାଦ୍ ଥିଲୁ ! ପଢ଼ା ଲୋକଙ୍କ ପାଇଁ ତୋର ଦାନ କ'ଣ କିଛି କମ୍ ?'' ରେଣୁ ମିଛ କହୁ ନଥିଲା । ଏହି 'ଦୁର୍ଗୁଣ' ଯୋଗୁଁ ମୋର ଶଙ୍କର ସହିତ ରୋଜ କଜିଆ ହୁଏ । ବୋଧହୁଏ, ମୋର ପ୍ରଥମ ପୁସ୍ତକ 'ଆଲୋ ଆନ୍ଧାରି'(ଉପନ୍ୟାସ)ରେ ରେଣୁ ଓ ତାରାର କଥା ନାହିଁ । ଭୁଲି ଯାଇଥିଲି ଲେଖିବାକୁ ।

ଚା' ପିଉପିଉ ରେଣୁ ମୋତେ ପଚାରିଲା, ''ହଁ, ତୁ ସେଠି କରୁ କ'ଣ ?'' ମୁଁ କହିଲି, ''କାହିଁକି ? ଯାହା ଏଠି କରୁଥିଲି ତାହା ସେଠି ବି କରୁଛି । ତା'ଠାରୁ ଅଧିକ ମୋ' ଦେଇ କ'ଣ ବା ହେବ ଯେ !'' ନିରୁଦା' ସବୁକଥା ଶୁଣି କହିଲା, ''କାହିଁକି ? ତୁ ଆଉ ଯୋଉ ଭଲ କାମଟେ କରିଛୁ, ସେଇଟା ଦେଖାଉନୁ ?'' ରେଣୁ କହିଲା, ''କହୁନୁ, ଆଉ କ'ଣ ନୂଆ କଲୁ ଯେ ।'' ମୁଁ କହିଲି, ''ଆରେ ମୁଁ ଭୁଲି ଯାଇଛି କହିବାକୁ । ଜୀବନରେ ବୋଧହୁଏ ଏଇଟା ହିଁ ଗୋଟିଏ ଭଲ କାମ କରିଛି ।'' ଏହା କହି ମୁଁ ବେଗରୁ କାଢ଼ି ମୋର ବହି ତା' ହାତରେ ଦେଲି । ରେଣୁ ବହିଟିକୁ ଓଲଟପାଲଟ କଲା ଏବଂ ମୋର ଫଟୋ ଦେଖି କହିଲା, ''ଏଇଟା ତୁ ଲେଖିଛୁ ? ବାବାରେ ତୁ ତ ଲେଖିକା ହେଇଗଲୁଣି । ତୁ କ'ଣ ହିନ୍ଦୀରେ ଲେଖାପଢ଼ା ଶିଖିଗଲୁଣି ।'' ମୁଁ କହିଲି, ''ନା ରେ ବଙ୍ଗଳାରେ ଲେଖା ପାଣ୍ଡୁଲିପିର ଏହା ହିନ୍ଦୀ ଅନୁବାଦ ।'' ସେ କହିଲା, ''ବଙ୍ଗଳାରେ ବହି ଆସିଲେ ମୋତେ ନିଶ୍ଚୟ ଖଣ୍ଡେ ପଠାଇବୁ । ତୋର ବହି, ନିଶ୍ଚୟ ଭଲ ହୋଇଥିବ । ନୋହିଲେ ଅନୁବାଦ ହୋଇ ନଥାନ୍ତା ।'' ମୁଁ କହିଲି, ''କେଜାଣି । ହେଲେ ପଢ଼ିଲା ପରେ କେହି ଖରାପ ବୋଲି ତ କହୁ ନାହାନ୍ତି । ତେବେ କେମିତି ଲାଗିବ ଯେ !'' ରେଣୁ ଚା' କପ୍‌ଗୁଡ଼ିକୁ ସଂଖୋଳିବା ବେଳେ କହିଲା, ''ଗତ ଚାରି ବର୍ଷ ଭିତରେ ବରକୁ ଛାଡ଼ି ତୁ କେତେ ବଡ଼ କାମଟିଏ କରି ଦେଲୁଣି, ଆଉ ମୁଁ ଗୋଟାକ ଜାଗାରେ ଦୁଇ ଦୁଇଟା ବର ନେଇ ବସିଛି ।'' ତା' କଥା ଶୁଣି ତା' ବର ଓ ନିରୁଦା' ହୋ ହୋ ହେଇ ହସିଲେ । ରେଣୁ ବି ସାମାନ୍ୟ ହସି କହିଲା, ''ଦାଦା ତୁମେ ହସୁଛ । ଆଉ ମୁଁ ତୁମଠାରୁ ନେଇଥିବା ଦୁଇ ଟଙ୍କାର ଉଧାରକୁ ଆଜି ଯାଏଁ ଶୁଝି ପାରିନି ।'' ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି, ''କୋଉ ଦୁଇ ଟଙ୍କା ? କିଏ ଦେବ ?'' ରେଣୁ ନିରୁଦା'କୁ ଇସାରା କରି କହିଲା,

"ମୁଁ ଦାଦାଠାରୁ ଦୁଇ ଟଙ୍କାର ବାଇଗଣ ନେଇଥିଲି । ପାଖରେ ରେଜା ପଇସା ନଥିଲା । ତିନି ବର୍ଷ ହେଇଗଲାଣି । ଭେଟ ବି ହେଇନି, ପଇସା ବି ଦେଇନି ।"

ତିନି ବର୍ଷ ଆଗରୁ ରେଣୁ ନିରୁଦା'ଠାରୁ ଦୁଇ ଟଙ୍କାର ବାଇଗଣ ନେଇ ପଇସା ଦେଇନି । ଏକଥା ତା'ର ଏବେ ବି ମନେଅଛି ! ଅନେକ ଲୋକ ପଇସା ଧାର ନେଇ ଭୁଲି ଯାଆନ୍ତି । ନୋହିଲେ ଫେରାଇବାକୁ ଇଚ୍ଛା କରନ୍ତି ନାହିଁ ।

କିଛି ସମୟ ଚୁପ୍ ରହିବା ପରେ ରେଣୁ କହିଲା, "ତୁ ପିଲାଙ୍କୁ ନେଇ କାହିଁକି ଆସିଲୁନି ? କେତେ ବଡ଼ ହୋଇଯିବେଣି । ଦେଖିଥାନ୍ତି ।" ମୁଁ କହିଲି, "ସମୟ ହେଲେ ଦିନେ ନିଶ୍ଚୟ ଆଣିବି ।" ସେ କହିଲା, "ହଁ, ଆଣିବୁ । ଏଠି ଖିଆପିଆ କରିବା ।" ସାମାନ୍ୟ ବିରତି ପରେ କହିଲା, "ତୋ ବରକୁ ଦେଖା କରିବୁନି ?" ମୁଁ କହିଲି, ହଁ ଯେ । ସେ ପଡ଼ାକୁ ଯିବିନି । ସେ ଯେଉଁଠି କାମ କରେ ସେଠି ଭେଟି ଆସିବି । କହିବି, ପିଲାଙ୍କୁ ଦେଖିବାର ଯଦି ଇଚ୍ଛା ତାହେଲେ ଆସି ଦେଖିନେ ।" ରେଣୁ ସାମାନ୍ୟ କଠୋର ହୋଇ କହିଲା, "ହଁ ସେ ପଡ଼ାକୁ ନଯିବାରେ ହିଁ ମଙ୍ଗଳ । ଏବେ ଆହୁରି ଖରାପ ହୋଇଗଲାଣି । ସେଠିକି ଗଲେ କାଳମୁହାଁମାନେ ତତେ ଘେରି ପକାଇବେ । ତତେ ତ ଜଣା, କ'ଣ ସବୁ କହନ୍ତି ଯେ ! ରାଗରେ ଦେହ ଜଳିଯିବ ।" ତାପରେ ମୁହଁକୁ ସାମାନ୍ୟ ବିକୃତ କରି କହିଲା, "ବାବାରେ, ବୁଝିଲୁ ବେବି, ତୁ ଗଲା ପରେ କିଏ କ'ଣ କହୁଥାଏ । ଯେତେ ମୁହଁ ସେତେ କଥା । ବାବାରେ, ପଡ଼ାରେ ଯେମିତି କିଛି ଅଘଟଣ ଘଟିଯାଇଛି ।" ସ୍ୱରକୁ ସାମାନ୍ୟ ହାଲୁକା କରି କହିଲା- ମୁଁ, ଷଷ୍ଠୀ ଆଉ ବିଭୁଦା'ର ସ୍ତ୍ରୀ କଥା ହେଉଁ । ଦେଖିଲ ଭଲା । ବେବି ଏଠି ଥିଲା ବେଳେ ଏ କାଳମୁହାଁ ଯାକ ତାକୁ ନେଇ କ'ଣ ସବୁ କହୁଥିଲେ । ସେ ଚାଲିଗଲା ପରେ ବି ସେମାନଙ୍କ ବକବକ ଊଣା ହେଇନି । ଧନ୍ୟ ଧନ୍ୟରେ କାଳମୁହାଁମାନେ । ତୁମମାନଙ୍କ ମୁହଁରେ ଝାଡ଼ୁମାରିବା କଥା" । ରେଣୁ ପୁଣି ହସିହସି କହିଲା, "ତୋର ମନେ ଅଛି, କଂସର ସ୍ତ୍ରୀ ତୋ ଉପରେ କେମିତି ଥୁ ଥୁ କରେ ? ପଡ଼ାର ସବୁ ଯାକ ବଜ୍ଜାତ୍ ଲୋକ ତୋ ବରକୁ ଘେରି କେତେ ସବୁ ଓଲଟା ସିଧା କଥା ବକନ୍ତି । 'ଘରକୁ ଫେରେ ଯଦି ତାକୁ ଦୂର୍ ଦୂରେଇ ଦେବ । ଝାଡ଼ୁମାରି ତାକୁ ବାହାର କରିଦେବ । ଛି, ତାକୁ ଆଉ ପୁଣି ଘରେ ସ୍ଥାନ ଦେବ, ତୁମକୁ କ'ଣ ଆଉ ଝିଅ ମିଳିବେ ନାହିଁ । ଆଉ ଥରେ ବାହା ହୁଅ । ତାକୁ ଘରେ ପୂରାଇବ ଯଦି ଆମେ କହିବୁ ତୁମେ ଖରାପ । ବାବା, କ'ଣ ସବୁ କହନ୍ତି !' ରେଣୁ ପୁଣି ହସି କହିଲା, "ଆଜି ଯାଏ ତ ସେ ଆଉ ବାହା ହେଇନି । ତାକୁ କିଏ ବା ବାହା ହେବ ଯେ ? ତୋର ବାପା ତା'ଠାରେ କ'ଣ ଦେଖି ତତେ ବାହା ଦେଇଥିଲା ଯେ ?" ମୁଁ କହିଲି, "ଛାଡ଼ ସେସବୁ କଥା" । ପୁଣି ନିରୁଦା'କୁ କହିଲି, "ଚାଲ ଦାଦା, ତା' ସାଙ୍ଗରେ ଭେଟ ହେଇଗଲେ କାମ ତୁଟିବ ।" ରେଣୁ କହିଲା, "କ'ଣରେ, ତତେ ଦେଖି ଯଦି ସେ ପାଟିତୁଣ୍ଡ କରେ, ତୁ କ'ଣ କରିବୁ ?" ମୁଁ କହିଲି, "କ'ଣ ଆଉ କରିବି ? ସାଙ୍ଗେ ସାଙ୍ଗେ ଚାଲି ଆସିବି ।" ରେଣୁ ହସି ହସି କହିଲା, "ନୋହିଲେ ତୋର ମାନ ଇଜ୍ଜତ ସେଇଠି ସେ ଲୁଟିନେବ ।" ମୁଁ ଯାଏ କହି ନିରୁଦା' ସହିତ ମାଈଙ୍କୁ ଭେଟିଲି । ମାଈଙ୍କୁ କହିଲି, "ଏବେ ମୁଁ ଯାଏ । ଦିନେ ଦୁଇଦିନ ଭିତରେ ତୁମେ ଦାଦା

ଭାଉଜଙ୍କୁ ଫୋନ୍ କରିବ । ବଡ଼ ଝିଅକୁ ନେଇ ସେମାନେ ଭାରି ଚିନ୍ତିତ । ରେଣୁ ଘରେ ତା' ପିଇ ସାରିଛୁ ଆମେ ।'' ମାଇଁ ଆମକୁ ଛାଡ଼ିବାକୁ ଗେଟ୍ ଯାଏ ଆସିଲେ । କହିଲେ, ''ପୁଣି ଆସିବୁ । କିଛି ବେଳ ରହିକି ଯିବୁ । ତୋର ମା ବାପା ବି ଏହି ପଡ଼ାରେ ରହୁଥିଲେ । ଛ ମାସ ବି ରହି ପାରିଲେ ନାହିଁ । ଯେମିତି ତାଙ୍କର ଚାଲିଚଳଣି ପଚାର ନା । ଛିଃ ! ଆମେ ବି ସେମାନଙ୍କ ଯୋଗୁ କେତେ କଥା ଶୁଣିଲୁ ।

ମା-ବାପାଙ୍କ ଦୋଷପାଇଁ ଦଣ୍ଡସବୁ ଆମକୁ ଭୋଗିବାକୁ ପଡ଼େ । ସେମାନେ କ'ଣ କଲେ, କ'ଣ ନକଲେ ଆମକୁ ଶୁଣିବାକୁ ପଡ଼େ । ମାଇଁ କହିଲେ, ''ତୁ ତ ବସିଲୁନି । ବସୁନୁ କିଛି ବେଳ ! ତୋ ମା ବହୁତ ବେମାର ପଡ଼ିଥିଲା । ସେବା ଶୁଶ୍ରୂଷାପାଇଁ କେହି ନାହିଁ । ତାକୁ ମୁଁ ହିଁ ଦେଖିଭାଲ କରେ, ଝାଡ଼ା ପରିସ୍ରା କରାଏ । ହେଲେ ଶଳେ ଗଲାବେଳେ ଆମ ସାଙ୍ଗରେ ଝଗଡ଼ା କଲେ ।'' ମୁଁ ସେଠି ଆଉ ରହି ପାରିଲି ନାହିଁ । କହିଲି, ''ସେ ସବୁ ଆଉ କାହିଁକି କହୁଛ ମାଇଁ । ଆମେ ଆଉ କ'ଣ ଜାଣିନୁ ତାଙ୍କ କଥା ? ଯୋଉଠି ରହିବେ, ଦୁଇ ଚାରି ମାସ ପରେ ମିଳିମିଶି ରହିପାରିବେ ନାହିଁ ।'' ଏତିକି କହି ମୁଁ ନିରୁଦା' ସାଙ୍ଗରେ ବାହାରି ଆସିଲି । ବେଶି ବେଳ ରହିଲେ ଆଉ କେତେ କଥା ବାପା ମା'ଙ୍କ ନାଁରେ ଶୁଣିବାକୁ ପଡ଼ିବ । ବାଟରେ ନିରୁଦା'କୁ କହିଲି, ''ସବୁ ଶୁଣିଲ ତ ଦାଦା । ବାପା-ମା' ଏବେ ତୁମର ସେଠି ରହୁଛନ୍ତି । ଦେଖ କେତେ ଦିନ ରହିପାରୁଛନ୍ତି ଯେ ! ମତେ ଏସବୁ ଶୁଣିବାକୁ ଆଦୌ ଭଲ ଲାଗେନା । ଜାଣିଛ, ଏହି କାରଣରୁ ମୋର କାକା, ପିଇସୀମାନେ ବି ତାଙ୍କୁ ଭେଟିବାକୁ ଆସନ୍ତି ନାହିଁ ।'' ନିରୁଦା' କହିଲା, ''ମୁଁ ଆଉ କ'ଣ କହିବିରେ ଭଉଣୀ । ମୁଁ ହେଲେ ସେମାନଙ୍କୁ କମ୍ ବୁଝାଇବାକୁ ଚେଷ୍ଟା କରେଁ ! ତା' କଥା ନସରୁଣୁ ମୁଁ କହିଲି, ''ତୁମେ ବୁଝେଇବ ଆଉ ଏମାନେ ବୁଝିବେ । ଏତିକି ହେଲେ ଆଉ କଥା କ'ଣ ଥିଲା ? ଦେଖ । କେତେ କୁଆଡ଼େ ଧକ୍କା ଖାଇ ତୁମ ପାଖରେ ଆସି ପହଞ୍ଚିଛନ୍ତି । ଆଗକୁ କ'ଣ ହେବ କେଜାଣି ! ନିରୁଦା' ସହିତ କଥାବାର୍ତ୍ତା କରି ମୁଁ ଯାଉଥିଲି ସିନା । ମନ ମୋର ଆଉ କେଉଁଠି ଯାଇ ଲାଖି ଯାଇଥାଏ । ମୁଁ ଯେଉଁ ପଡ଼ାରେ ରହୁଥିଲି, ତା'ର ଅତି ପାଖରେ ଏହି ରାସ୍ତା । ଏପଟ ସେପଟ ଦେଖି ମୁଁ ମନେ ମନେ ଖୋଜୁଥିଲି । ହୁଏତ କେହି ଚିହ୍ନାଜଣା ଦେଖା ହେଇଯିବ । ଶଙ୍କର ସହିତ ଦେଖା ହେବ କି ନାହିଁ ଯେ । ହଠାତ୍ ଦେଖିଲି, ରାସ୍ତାର ଆର କଡ଼େ ଜଣେ ସ୍ତ୍ରୀ ଲୋକ ଯାଉଛି । ଦୂରରୁ ଲାଗିଲା, ଦେଖିଛି କେଉଁଠି ତାକୁ । ଆରେ ଇଏତ ବିଭୁଦା'ର ସ୍ତ୍ରୀ । ମୁଁ ହାତଠାରି ତାକୁ ପାଖକୁ ଡାକିଲି । ତାକୁ ଦେଖି ମୁଁ ଅବାକ ହୋଇଗଲି । ପଚାରିଲି, ''ତୁମର ଏ କି ଅବସ୍ଥା ? ବିଭୁଦା'ର କ'ଣ ହେଇଥିଲା ?''

ଜଣେ ବଙ୍ଗାଳୀ ସ୍ତ୍ରୀ ଲୋକର ହାତର ଶଙ୍ଖା ଓ ମୁଣ୍ଡର ସିନ୍ଦୂରରୁ ଜଣାପଡ଼େ, ସେ ସଧବା ନା ବିଧବା ! ବିଭୁଦା'ର ଜୀବିତାବସ୍ଥାରେ ତା' ସ୍ତ୍ରୀ କେତେ ସଜବାଜ ହୁଏ । ସିନ୍ଥି ଭର୍ତ୍ତି ସିନ୍ଦୂର ଓ କହୁଣି ଯାଏ ଶଙ୍ଖା । ପତି ଚାଲିଯିବା ପରେ ପତ୍ନୀର ସଜବାଜ ବି ଚାଲିଗଲା । ଅନ୍ୟ ପକ୍ଷରେ ପୁରୁଷପାଇଁ ବୋଧହୁଏ ପଇସା ହିଁ ସବୁକିଛି । ପଇସା ବଳରେ ତାକୁ ସବୁ କିଛି ମିଳିଯିବ । ଗାଡ଼ି ମୋଟର ଏପରିକି ବଜାରରୁ ଝିଅ ବି ! ପୁରୁଷତିଆରି ସମାଜରେ ପୁରୁଷ ହିଁ ବଳବାନ ।

ବିଚାରୀ ବିଭୁଦା'ର ସ୍ତ୍ରୀ ! ତା'ର ଦୁଇଟି ସାନ ସାନ ଝିଅ । ଗୋଟିଏ ଦଶ ବର୍ଷର, ଅନ୍ୟଟି ଛ'ବର୍ଷର । ସାନ ଝିଅକୁ ମାମୁଙ୍କ ପାଖରେ ଛାଡ଼ି ଆସିଛି । ବଡ଼ ଝିଅ ତା' ସାଙ୍ଗରେ ରହୁଛି । ବିଭୁଦା' ଘରେ ତିନି ଭାଇ । ଗୋଟାଏ ଘରେ ସମସ୍ତେ ଅଲଗା ଅଲଗା ହୋଇ ରହନ୍ତି । ବଡ଼ ଭାଇଙ୍କ ଅବସ୍ଥା ଭଲ । ଚାକିରି କରନ୍ତି । ବିଭୁଦା' ମଝିଆଁ, କୋଉ ପାଇପ ଲାଇନ କମ୍ପାନିରେ ସେ ଚାକିରି କରୁଥିଲା । ସାନ ଭାଇର ଅବସ୍ଥା ବହୁତ ଖରାପ ନୁହେଁ । ଖାଇବା ପିଇବାରେ ତାର ଅଭାବ ନାହିଁ । ବିଭୁଦା'ର କ'ଣ ଗୋଟାଏ ପେଟରୋଗ ଥିଲା । କେତେ ଥର ସେ ଡାକ୍ତରଖାନାରୁ ମରୁ ମରୁ ବଞ୍ଚିଥିଲା । ଶେଷରେ ଡାକ୍ତରଖାନା ଗଲା ଯେ ଆଉ ଫେରିଲା ନାହିଁ । ଅଭାଗିନୀ ବିଭୁଦା'ର ସ୍ତ୍ରୀ ! ବଡ଼ ଯାଆକୁ ଖୁସି ରଖିବାଲାଗି ଦିନରାତି ଖଟୁଥାଏ । ଗୋରୁ ଗାଈଙ୍କ କାମ, ଘର କାମ, ବଡ଼ ଯାଆର ପିଲାଙ୍କୁ ସ୍କୁଲ୍ କଲେଜ ପଠେଇବା କାମ, ସେମାନଙ୍କ କପଡ଼ା ସଫା କରିବା- ସବୁ ତା' ଜିମା । ଅବଶ୍ୟ ଏକଥା ବି ସତ ଯେ ତା' ଝିଅମାନଙ୍କୁ ଘରେ ସମସ୍ତଙ୍କର ସ୍ନେହ ଆଦର ମିଳେ । ତଥାପି କାମ କରିବାରେ କାଳେ ଅସୁବିଧା ହେବ ସେହି କାରଣରୁ ସାନ ଝିଅକୁ ମାମୁ ଘରେ ଛାଡ଼ି ଆସିଛି ।

ଆମେ ରାସ୍ତା କଡ଼ରେ ଯେଉଁଠି ଛିଡ଼ା ହୋଇ କଥାବାର୍ତ୍ତା କରୁଥିଲୁ ସେଠୁ ଶଙ୍କରର କାମ ଜାଗା ବେଶି ଦୂର ନୁହେଁ । ମୁଁ ନିରୁଦା'କୁ କହିଲି, ''ଦାଦା, ତୁମେ ଯାଅ । ମୁଁ ଏଠି ଛିଡ଼ା ହୋଇଛି । ତା' ସହିତ ଯଦି ଭେଟ ହୋଇଯାଏ କହିବ, ଇଛା ହେଲେ ଛୁଆଙ୍କୁ ଦେଖିବାପାଇଁ ଘରକୁ ଆସିବ ।'' ନିରୁଦା କହିଲା, ''ଠିକ୍ ଅଛି । କିନ୍ତୁ ମୋର ନ ଆସିବା ଯାଏ ତୁ ଆଉ କୁଆଡ଼େ ଯିବୁନି ।'' ମୁଁ ବିଭୁଦା'ର ସ୍ତ୍ରୀକୁ ପଚାରିଲି, ''ଏଆଡ଼େ କୁଆଡ଼େ ଯାଉଥିଲ ?'' ସେ କହିଲା, ''ଏଠି ମୁଁ ତିନିଜଣଙ୍କ ଘରେ ରୋଷେଇ କରେ । କ'ଣ ବା କରିବି ? ଝିଅମାନଙ୍କୁ ମଣିଷ କରିବାକୁ ହେଲେ କିଛି ତ କରିବାକୁ ପଡ଼ିବ ।'' ତା' କଥା ଶୁଣି ମତେ ଆଶ୍ଚର୍ଯ୍ୟ ଲାଗିଲା । ଯୋଉ ଝିଅ କେବେ ଘରୁ ପାଦ କାଢ଼ି ନଥିଲା, ତାକୁ ଦିନକୁ ତିନି ଥର ଅନ୍ୟର ଘରକୁ ଯାଇ ରୋଷେଇ କରିବାକୁ ପଡୁଛି । ତା' ଚେହେରା କେମିତି ଦିଶିଲାଣି । ଭଲ ଭାବେ ଦେଖି ନଥିଲେ ହୁଏତ ମୁଁ ଚିହ୍ନି ପାରି ନଥାନ୍ତି । ଏହି ସ୍ତ୍ରୀ ମୁଣ୍ଡକୁ ଭୂତ ପରା ପଶୁଥିଲା । ତାକୁ କିଏ ନାଁ ପଚାରିଲେ ନିଜ ପ୍ରଥମ ସଉତୁଣୀର ନାଁ ନିଏ । ସେତେବେଳେ ସେ ଦେଖିବାକୁ ବି ଖୁବ୍ ସୁନ୍ଦର ଦିଶୁଥିଲା । ଅଳ୍ପ ସମୟ କଥା ହେଲା ପରେ ତାକୁ କହିଲି, ''ତୁମେ ଯାଅ ଏବେ । ଡେରି ହେଲେ ଗାଳି ଶୁଣିବାକୁ ପଡ଼ିପାରେ ।'' ସେ କହିଲା, '' ହଁ । ତୁମେ କ'ଣ ପଡ଼ାକୁ ଆସିବନି ?'' ମୁଁ ଉତ୍ତର ଦେଲି, ''ପଡ଼ାକୁ ତ ଆସିବିନି, ହେଲେ ଦିନେ ତୁମ ଘରକୁ ନିଶ୍ଚୟ ଆସିବି ।'' ସେ କହିଲା, ''ହଁ ନିଶ୍ଚୟ ଆସିବ ।'' ତା' ପରେ ଚାଲିଗଲା ।

ନିରୁଦା'ର ଡେରି ହେଉଥିବା ଦେଖି ମୁଁ ଏପଟ ସେପଟ ହେଉଥିଲି । ମଝିରେ ମଝିରେ ସେହି ଡେକୋରେଟର ଦୋକାନକୁ ନଜର ପଡ଼େ । ସେଠି ଶଙ୍କର କାମ କରେ । ଦେଖିଲି ନିରୁଦା ମତେ ସେଠିକି ନ ଯିବାପାଇଁ ଇସାରା କରୁଛି । ସାଙ୍ଗରେ ଆଉ ଟିକେ ଦୂରକୁ ଚାଲିଯିବାକୁ କହୁଛି । ମୁଁ ବୁଝିଲି, ମତେ ନେଇ ସେମାନଙ୍କ ଭିତରେ କଥାବାର୍ତ୍ତା ଚାଲିଛି । ମୁଁ ଆଗକୁ ବଢ଼ିଯାଇ ବଜାର ରାସ୍ତାରେ ଛିଡ଼ା ହେଲି । କିଛି ସମୟ ପରେ ନିରୁଦା' ଆସିଲା । ତାକୁ ଦେଖିଲେ ଲାଗୁଥାଏ,

ସେଠି ଏମିତି କିଛି ଘଟିଛି ଯାହାପାଇଁ ସେ ରାଗୁଛି, ଦୁଃଖ ବି କରୁଛି । ମୁଁ ପଚାରିଲି, କ'ଣ ହେଲା ? ଭେଟ ହେଲା ତା' ସାଙ୍ଗରେ ? ଥିଲା ସେ ? ନିରୁଦା' ନିରୁତ୍ତର ରହିଲା । ବାରମ୍ବାର ପଚାରିବାରୁ ସେ କାତର ସ୍ୱରରେ କହିଲା, ''ଘରକୁ ଚାଲ । ସବୁ କହିବି ।'' ମୋର ଧୈର୍ଯ୍ୟ ରହିଲା ନାହିଁ । ମତେ ଏବେ ଶୁଣିବାକୁ ହେବ । ସାମାନ୍ୟ ବିରକ୍ତ ହେଇ ମୁଁ କହିଲି, ''ନା, ତୁମେ ରାସ୍ତାରେ କୁହ ।'' ନିରୁଦା' କହିଲା, ''ସେ ଶଳାକୁ ଦେଖା କରିବା କ'ଣ ଜରୁରି ? ତତେ ଛାଡ଼ିଦେଲା ପରେ ତ ସେ ଭାରି ମଜାରେ ଅଛି ।'' ମୁଁ କହିଲି, ''ଦେଖିଲ, ମୁଁ ଯାହା ଭାବୁଥିଲି ସେଇଆ ହେଲା । କ'ଣ କହିଲା ସେ ? ନିରୁଦା' କହିଲା, ''ସେ ଆଜି କାମକୁ ଆସି ନଥିଲା ।'' ମୁଁ କହିଲି, ''ହେଲେ ମତେ ତ ଜଣାଇବାକୁ ହେବ ନା ମୁଁ ଏଠି ଅଛି ଏବଂ ସେ ପିଲାଙ୍କୁ ଭେଟିବାକୁ ଇଚ୍ଛାଥିଲେ ଆସୁ ।'' ନିରୁଦା' କହିଲା, ''ମୁଁ ସେମାନଙ୍କୁ କହି ଦେଇଛି ଯେ ପିଲାମାନେ ମୋ ଘରେ ଅଛନ୍ତି ଏବଂ ଦୁଇଦିନ ପରେ ଯିବେ ।'' ମୁଁ କହିଲି, ''ହଉ ଛାଡ଼, ସେ ଭଲ ଅଛି ତ ?'' ନିରୁଦା' କହିଲା, ''ତୁ କ'ଣ ଭାବୁଛୁ ତା'ର କିଛି ଅସୁବିଧା ହେବ ! ତା'ର ଅବସ୍ଥା ଭଲ ନଥିଲେ ସେମାନେ ଏତେ କଥା ମୋତେ କହିପାରନ୍ତେ ?'' ନିରୁଦା' ପାଇଁ ମୋର ମନଦୁଃଖ ହେଲା । ମୋ ଲାଗି ତାକୁ ଅପମାନିତ ହେବାକୁ ପଡ଼ିଲା । ତଥାପି ମୁଁ ପଚାରିଲି, ''ଦାଦା କ'ଣ କହୁଥିଲେ ସେମାନେ ?'' ଆମେ ଦୁହେଁ ଚାଲିଚାଲି ଯାଉଥିଲୁ । ନିରୁଦା' ସାଇକେଲ୍‌କୁ ଗଡେଇ ଗଡ଼େଇ ଚାଲିଥାଏ । ମୁଣ୍ଡ ତଳକୁ କରି ସେ କହିଲା, ''ସେ ସବୁ ତୋର ଶୁଣିବାର ନାହିଁ । ତୁ ତୋର ଭଲରେ ଅଛୁ । ଏତେ ଅଶ୍ଳୀଳ କଥା ତୁଣ୍ଡରେ ଧରିହେବ ନାହିଁ । ଲାଜରେ ତା'ର ମୁଣ୍ଡ ଉପରକୁ ଉଠୁ ନଥାଏ । ଏସବୁ ଜାଣି ମତେ ବି ଖରାପ ଲାଗିଲା । ନିରୁଦା' ସହିତ ମୁଣ୍ଡ ଉଠାଇ କଥା ହେବା ମୋ ପକ୍ଷରେ ସହଜ ହେଉ ନଥାଏ । ଆଖି ଉପରକୁ ନ ଉଠାଇ ମୁଁ କହିଲି, ''ତୁମକୁ ସେଠିକି ଯିବାପାଇଁ ମୋର କହିବାର ନଥିଲା ।'' ନିରୁଦା' ଉତ୍ତର ଦେଲା, ''ହଁ ଗଲି ତ ଗଲି । ସେଠିକି ଆଉ କ'ଣ ତୁ ଯାଆନ୍ତୁ ? ତୋର ଯିବା ତ ଆହୁରି ଖରାପ ହୋଇଥାଆନ୍ତା । ନ ଯାଇ ଭଲ କରିଛୁ । ସେମାନଙ୍କର କି ଭରସା ? କ'ଣ ବୋଲି କ'ଣ ବକିଥାନ୍ତେ, ଆଉ ତୁ ରାଗ ସମ୍ଭାଳି ନପାରି ଓଲଟା ସିଧା କହିଥାନ୍ତୁ । ଝମେଲା ହୋଇଥାନ୍ତା । ତୋର ଏଣିକି ଏଆଡ଼େ ଆସିବା କଥା ନୁହେଁ । ଶଙ୍କର ଯଦି ଭେଟିବାପାଇଁ ଆମ ସେଠିକି ଆସିବ ସେ ଅଲଗା କଥା । ନୋହିଲେ ତାକୁ ଭେଟିବାଲାଗି ତୋର ଆସିବାଟା ଠିକ୍ ହେବ ନାହିଁ ।'' ମୁଁ କିଛି କହୁ ନଥାଏ । ତା' ସାଙ୍ଗରେ ଚାଲୁଥାଏ । ମୋର ଚୁପ୍ ହେବା ଦେଖି ପଚାରିଲା, ''କ'ଣ ଭାରି ମନଦୁଃଖ ଲାଗୁଛି କି ?'' ମୁଁ କହିଲି, ''ମନଦୁଃଖ ଲାଗୁଛି ସତ । ମାତ୍ର...'' ନିରୁଦା' କହିଲା, ''ତା' ମନରେ ତୋ' ପାଇଁ କିମ୍ବା ଛୁଆଙ୍କ ପାଇଁ ମୋହ ଥିଲେ ଦେଖିବୁ, ନିଶ୍ଚୟ ଭେଟିବାକୁ ଆସିବ । ମନଦୁଃଖ କରନା ।'' କିଛି ଦୂର ଚୁପ୍‌ଚାପ୍ ବାଟ ଚାଲିବା ପରେ ନିରୁଦା' ପଚାରିଲା, ''ଆଉ କୁଆଡ଼େ ଯିବାର ଥିଲା କି ?'' ମୁଁ କହିଲି, ''ହଁ ଥରୁଟିଏ ସେହି ପଡ଼ା ଆଡ଼େ ଯିବାର ଥିଲା । ମାତ୍ର ସଂଧ୍ୟା ହେଇ ଆସିଲାଣି । ଆଜି ଥାଉ । ଆଉ କୋଉ ଦିନ ଦେଖିବା । ଏବେ ଚାଲ, ଟିକେ ବଜାର ଆଡ୍ତୁ ଘୂରି ଆସିବା ।''

କି ଆଶ୍ଚର୍ଯ୍ୟ ! ଚାରିବର୍ଷ ଆଗରୁ ରାସ୍ତାରେ ଗଲେ କେତେ ସବୁ ପରିଚିତ ଭେଟ ହୋଇଯାନ୍ତି । ଆଜି ଜଣକର ଦେଖା ମିଳିବା ବି ସ୍ୱପ୍ନ । କେଜାଣି ହୁଏତ ଲୋକ ଚିହ୍ନି ପାରୁ ନାହାନ୍ତି ମତେ ବା ମୁଁ ଚିହ୍ନି ପାରୁନି ସେମାନଙ୍କୁ । ଏ ପାଖ ସେପାଖ ଦେଖି ମୁଁ ଗୋଟିଏ କପଡ଼ା ଦୋକାନରେ ଯାଇ ପଶିଲି । ନିରୁଦା'କୁ ଦୋକାନ ବାହାରେ ଛିଡ଼ା ହେବାର ଦେଖି କହିଲି, "ସେଠି କାହିଁକି ଛିଡ଼ା ହେଲ ଦାଦା ? ଭିତରକୁ ଆସ ।" ସେ ମନା କଲା । ନା ନା ତୋର ଯାହା କିଣିବାର ଅଛି କିଣ୍, ମୁଁ ବାହାରେ ଛିଡ଼ା ହେଉଛି । ମୁଁ କହିଲି, "ନା ନା ସାଇକେଲ୍‌ରେ ତାଲା ଲଗେଇ ତୁମେ ଭିତରକୁ ଆସ ।" ଦୋକାନ ଭିତରକୁ ଆସିଲା ପରେ କାନରେ ଫୁସ୍‌ଫୁସ୍ କରି କହିଲା, "କ'ଣ କିଣିବୁ ତୁ ?" ଏତେ ବଡ଼ ଦୋକାନକୁ ପଶି ଆସିଛୁ ।" ତା' କଥାକୁ ଅଶୁଣା କରି ଦେଇ ମୁଁ ଦୋକାନୀକୁ ସାର୍ଟ ଦେଖାଇବା ସକାଶେ କହିଲି । ଦୋକାନୀ ଗୁଡ଼ାଏ ସାର୍ଟ ଆମ ଆଗରେ ଗଦେଇ ଦେଲା । ମୁଁ ଦାମ୍ ପଚାରିଲି । ମୋ କଥା ଶୁଣି ନିରୁଦା' ବାଧ୍ୟ କରି ମୋତେ ବାହାରକୁ ଡାକି ଆଣିଲା । ମୁଁ ପଚାରିଲି, "କ'ଣ ହେଲା ଦାଦା ? ଆଚ୍ଛା ଚାଲ୍, ଆଉ କେଉଁ ଦୋକାନକୁ ଯିବା ?" ନିରୁଦା' ପଚାରିଲା, "ତୁ କାହାପାଇଁ ସାର୍ଟ କିଣୁଛୁ ମୁଁ ଶୁଣେ ଭଲା ।" ମୁଁ କହିଲି, "ତୁମେ ଖରାପ ଭାବିବନି ଦାଦା । ମୁଁ ତୁମ ପାଇଁ ସାର୍ଟ କିଣିବି ବୋଲି ଭାବିଛି । ନିରୁଦା' କହିଲା, "ଶୁଣ ଭଉଣୀ । ତୁ ଯଦି ମତେ ସାର୍ଟ ଦେବାକୁ ଭାବିଛୁ, ବରଂ ମୋର ପୁଅପାଇଁ କିଣି ଦେ । ମୁଁ ତ ତୋର ଦାଦା । ସଦାବେଳେ ଦାଦା ହୋଇ ରହିବି । ହେଲେ ଏହି ବଡ଼ ଦୋକାନରୁ କିଣ ନା । ଚାଲ ଅନ୍ୟ ଦୋକାନକୁ ଯିବା । ଏ ଶଳେ ଫୁଟ୍‌ପାଥ୍‌ରୁ ପରା କପଡ଼ା ନେଇ ବିକନ୍ତି । ତେବେ ଆମେ ସେହି ଫୁଟ୍‌ପାଥ୍‌ରୁ କାହିଁକି ନକିଣିବା ? ଏମାନେ ଭାବନ୍ତି ଆମେ ସବୁ ମୂର୍ଖ, ଜାଣି ପାରୁନା । ଦୋକାନ ଭଲ ଦେଖାଗଲେ କି ବିକ୍ରୀ ଜିନିଷ ଭଲ ହୋଇଯିବ ?" ନିରୁଦା'ର କଥା ଶୁଣି ମୁଁ ହସି ପକାଇଲି । କହିଲି, "ଆଚ୍ଛା ବାବା ! ଚାଲ ଯେଉଁ ଦୋକାନକୁ କହିବ ସେହି ଦୋକାନକୁ ଯିବା ।"

ସତକୁ ସତ ନିରୁଦା' ମତେ ଫୁଟ୍‌ପାଥର ଦୋକାନକୁ ନେଇଗଲା । ସେଠି ଫୁସ୍‌ଫୁସ୍ କରି କାନରେ କହିଲା, "ଏବେ ମୁଁ ତତେ ପ୍ରମାଣ କରିଦେବି, ମୋର କଥା ସତ ନା ମିଛ । ତୁ ଖାଲି ପାଟି ଖୋଲିବୁନି ।" ସେ ବଡ଼ ସାଇଜର ସାର୍ଟ ଦେଖାଇବାକୁ ଦୋକାନୀକୁ କହିଲା, ଦୋକାନୀ ଅନେକ ସାର୍ଟ ଦେଖାଇଲା । ନିରୁଦା' ଦାମ୍ ପଚାରିଲା । ଦାମ୍ ଶୁଣି ମତେ ଆଖି ଠାରିଲା । ସତକୁ ସତ ସେ ଠିକ୍ କହୁଥିଲା । ମୁଁ କପଡ଼ାକୁ ଛୁଇଁ ଅନୁମାନ କଲି ଯେ ବଡ଼ ଦୋକାନର ସାର୍ଟ ଆଉ ଏହି ଫୁଟ୍‌ପାଥ୍‌ର ସାର୍ଟ ମଧ୍ୟରେ ଉଣେଇଶି କୋଡ଼ିଏର ଅନ୍ତର ହେବ । ତା' ସତ୍ତ୍ୱେ ବଡ଼ ଦୋକାନର ସାର୍ଟର ଦାମ୍ କେତେ ମହଙ୍ଗା ଥିଲା । ଏକଥା ସତ ଯେ ଦୋକାନ ହିସାବରେ ଜିନିଷର ଦାମ ରଖାଯାଏ । ବଡ଼ ଦୋକାନକୁ ବଡ଼ ବଡ଼ ଲୋକ ଆସନ୍ତି । ତା' ଅନୁଯାୟୀ ଦାମ୍ ରଖାଯାଏ । ଅନ୍ୟଥା ଦୋକାନୀର ବା କି ଲାଭ ହେବ ? ସାଧାରଣ ଲୋକଙ୍କ ପାଇଁ ତ ସାନ ଦୋକାନ ହିଁ ଭଲ । ଛାଡ଼ ସେ କଥା । ନିରୁଦା' ବଡ଼ ସାର୍ଟ ଜାଗାରେ ଦଶ ବର୍ଷର ପୁଅପାଇଁ ଉଭୟ ପେଣ୍ଟ ଆଉ ସାର୍ଟ ଦେଖାଇବାକୁ କହିଲା । ବଡ଼ ଦୋକାନରୁ ଯେଉ ଦାମ୍‌ରେ ସାର୍ଟ ମିଳୁଥିଲା, ତା' ଠୁ ସାମାନ୍ୟ କମ୍ ଦାମ୍‌ରେ ଆମେ ପୁଅପାଇଁ ପେଣ୍ଟ ସାର୍ଟ ହଳେ କିଣି ନେଇ ଫେରିଲୁ ।

ନିରୁଦା' ପଚାରିଲା, ''ଚାଲ୍ ଚା' ପିଇବୁ ପରା ?'' ମତେ ସେ ଏକ ବଡ଼ ଜଳଖିଆ ଦୋକାନକୁ ନେଇଗଲା । କେବଳ ମୋ ପାଇଁ ଚା' ସିଙ୍ଗଡ଼ା ଆଉ ମିଠାର ଅର୍ଡ଼ର ଦେବାରୁ କହିଲି, ''କ'ଣ ଦାଦା, ତୁମେ ଖାଇବ ନି ?'' ନିରୁଦା କହିଲା, ''ନା' ତୁ ଖାଇଲେ ମୋ ଖାଇବା ଭଳି କଥା । ତୁ ଖା । ତା' ଭିତରେ ବଜାରରେ ଜଣକୁ ମୁଁ ଭେଟି ଆସେ । ମୋର ଆସିବା ଯାଏ ଆଉ କୁଆଡ଼େ ଯିବୁନି ।'' ସେ ଗଲା ପରେ ମୁଁ ଚା ପିଉ ପିଉ ଏଆଡ଼େ ସେଆଡ଼େ ଦେଖିବାକୁ ଲାଗିଲି । ଭାବୁଥାଏ, ଚାରିବର୍ଷ ପୂର୍ବରୁ ମୁଁ ବଜାର ଆସିଥାନ୍ତି ଯଦି ମୋ ସାଙ୍ଗରେ ଷଷ୍ଠୀ ବା ଆଉ କିଏ ଥାଆନ୍ତା । ଆମେ ଦୁହେଁ ଏଇଠି ବସି ଚା ଫା ପିଇଥାନ୍ତୁ । ଏହି ଦୋକାନ ମୋର ଭାରି ପ୍ରିୟ । ଦୋକାନରେ ଗ୍ରାହକଙ୍କ ବସିବାଲାଗି ଆଗରେ ପଛରେ ଦୁଇଟି କେବିନ୍ । ପଛ କେବିନ୍‌ରେ ବସିଲେ ବାହାରର କାହାରି ନଜର ପଡ଼େନି । ବଜାର ଆସିବାରେ କାହାରି ଆପତ୍ତି ନାହିଁ । ହେଲେ ଦୋକାନରେ ଖିଆପିଆକୁ ଅନେକ ଲୋକ ପସନ୍ଦ କରନ୍ତି ନାହିଁ । ତେଣୁ ଲୁଚି କି ବସିବାକୁ ପଡ଼େ । ଦୋକାନର କେଶ୍ ବାକ୍ସରେ ଆଜି ବି ସେହି ପୁରୁଣା ଲୋକଟି ବସିଛି । ଅନ୍ୟମାନେ ବଦଳି ଗଲେଣି । ଚୁଲି ସାମନାରେ ଜିଲାପି ଆଉ ସିଙ୍ଗଡ଼ା ଛାଣୁଥିବା ଲୋକଟି ବି ବଦଳି ନାହିଁ । ସକାଳୁ ସନ୍ଧ୍ୟା ଯାଏ ଜଳନ୍ତା ଚୁଲି ଆଗରେ ଠିଆ ହେଇ ହେଇ ଶରୀର ତାର କୋଇଲା ଭଳି ହୋଇଗଲାଣି । କେଶ୍ ବାକ୍ସବାଲା ଲୋକଟି ପୂର୍ବବତ୍ ବୁଢ଼ା । ଏବେ ଆଗ ଅପେକ୍ଷା ଅବଶ୍ୟ ଅହୁରି ବୁଢ଼ା ଦିଶିଲାଣି । ହେଲେ ତା' ଜାଗା ସେ ଛାଡ଼ିନି । ମୋତେ ଲାଗିଲା, ତାର କେଶ୍ ବାକ୍ସ ତାକୁ ବଞ୍ଚାଇ ରଖିଛି । ଦୋକାନର ଚଉକି ଟେବୁଲ୍ ବି ବଦଳି ନାହିଁ । ସେଗୁଡ଼ିକର ରଂଗରୂପ ବି ପୂର୍ବବତ୍ ରହିଛି । ମୋର ମନେହେଲା, ଯେମିତି ଚଉକି ଟେବୁଲ୍‌ଗୁଡ଼ିକ ମୋତେ ଚିହ୍ନୁଛନ୍ତି, ମୋ ସହିତ କଥାଭାଷା ହେବାକୁ ଚାହୁଁଛନ୍ତି । ବଜାର ବି ମୋତେ ଚିହ୍ନେ, ରାସ୍ତାଘାଟ ବି ଚିହ୍ନନ୍ତି । ହେଲେ ଜଣେ ବି ମଣିଷ ମତେ ଚିହ୍ନୁନାହାନ୍ତି । ସବୁକିଛି ନୂଆ ନୂଆ, ଚିହ୍ନା ଚିହ୍ନା; କିନ୍ତୁ ଅପରିଚିତ ଲାଗୁଛନ୍ତି । ଚା' ପିଇସାରି ମୁଁ ମୋର ପୂର୍ବ ପରିଚିତ ଟେବୁଲ୍ ପାଖକୁ ଗଲି । ସ୍ନେହରେ ଚଉକି ଟେବୁଲ୍‌କୁ ଛୁଇଁବାକୁ ଲାଗିଲି ।

''ବେବି, ତୁ କାହିଁକି ଏମିତି କରୁଛୁ ଯେ ? ପାଗଳ ତ ହେଇ ଯାଇନୁ ?''ଦୋକାନର ଗ୍ରାହକ ସବୁ ବେବିକୁ ଅବାକ୍ ହୋଇ ଦେଖୁଛନ୍ତି । ଠିକ୍ ଏତିକି ବେଳକୁ କେଉଁଠି ଥିଲା ନିରୁଦା' ମୋର ପାଖକୁ ଆସି କହିଲା, ''କ'ଣ ଚା' ପିଆ ସରିଗଲା ତୋର ?'' ମୁଁ ଚମକି ପଡ଼ି କହିଲି, ''ହଁ, ଚାଲ । ପଇସା ଦେବାପାଇଁ ଗଲି ଯେତେବେଳେ ସେ ମନା କଲା, ନିଜେ ପଇସା ଦେଇଦେଲା । ମୁଁ କହିଲି, ''ଦାଦା ପିଲାଙ୍କ ଲାଗି ଏଇଠୁ କିଛି କିଣି ନିଏ ।'' ନିରୁଦା କହିଲା, ''ଆରେ ନା, ସେମାନଙ୍କ ଲାଗି ମୁଁ କିଣି ସାରିଲିଣି । ଚାଲ ଶୀଘ୍ର ଘରକୁ ଯିବା ।'' ଜଳଖିଆ ଦୋକାନରୁ ବାହାରି ପାଖରେ ଥିବା ଏକ କେମରା ଦୋକାନକୁ ଗଲି । ଦୋକାନ ଆଗରେ ସାଇକେଲ୍ ଠିଆ କରି ନିରୁଦା' ମଧ୍ୟ ଦୋକାନ ଭିତରକୁ ଆସିଲା । ମୁଁ କେମେରାର ଦାମ୍ ବୁଝାଶୁଝା କରୁଥାଏ । ସେ କହିଲା, ''ତୁ ତ କାଲି କଲିକତା ଯିବୁ । ସେଠୁ କିଣିବା ଠିକ୍ ହେବନି ?'' ତା' କଥା ଶୁଣି ମୋର ତାତୁସ୍‌ଙ୍କ ପରାମର୍ଶ ମନେପଡ଼ିଲା । ସେ କହିଥିଲେ,

ସଂଜୟକୁ ପଇସା ଦେଇଦେବୁ । ଭଲ ଦେଖି କେମେରା ସେ କିଣିଦେବ । ମୁଁ ଦୋକାନରୁ ବାହାରି ଆସିଲି ।

ବଜାର ଡେଇଁଲା ପରେ ଆମେ ଦୁହେଁ ମାଟି ରାସ୍ତାରେ କଥାବାର୍ତ୍ତା କରି କରି ଚାଲିବାକୁ ଲାଗିଲୁ । ଘନ ଅନ୍ଧାର । ମଝିରେ ମଝିରେ କେବଳ କ୍ଷେତ, କାହିଁ କେଉଁଠି ବାଉଁଶ ବୁଦା । ଏସବୁ ଦେଖି ମୋ ଭିତରେ ଶିହରଣ ଖେଳି ଯାଉଥାଏ । ପବନରେ ବାଉଁଶବୁଦା ସର୍‌ସର୍ କଲେ ମୋତେ ଡରମାଡ଼େ । ଭୟରେ ନିରୁଦା'କୁ ଲାଗି ଚାଲୁଥାଏ । ନିରୁଦା' କହିଲା, ''କ'ଣ ଡର ମାଡୁଛି ?'' ମୁଁ ଡରି ଡରି କହିଲି, ''ନା ତ । କେତେ ଅନ୍ଧାର ଦେଖୁନ ।'' ନିରୁଦା' କହିଲା, ''ଅନ୍ଧାର ହେଲେ କ'ଣ ହେଲା ? ମୁଁ ତ ତୋ ପାଖରେ ଅଛି । ଡର କାହାକୁ ? ମତେ ଏଠି ସମସ୍ତେ ଚିହ୍ନନ୍ତି । ଥରେ ଡାକିବି ଯଦି ପଡ଼ାଯାକ ଲୋକ ଏକାବେଳକେ ଦଉଡ଼ି ଆସିବେ ।'' କଥାବାର୍ତ୍ତା ଭିତରେ ପୁଣି ଜଙ୍ଗଲ ଆସିଲା । କାହିଁ କେଉଁଠି ଘର; ଘର ଭିତରେ କିରୋସିନି ବତି,ଘନ ଅନ୍ଧକାର । ଜଙ୍ଗଲ ନଆସୁଣୁ ମୋର ପାଦମାନେ ଯେମିତି ଅଟକି ଗଲେ । ଚାଲୁଥିଲି ମୁଁ ସତ, ହେଲେ ପାଦ ଯୋଡ଼ିକ ମୋର ଥାବରେ ପଡୁନଥାନ୍ତି । ମୋର ଅବସ୍ଥା ଦେଖି ନିରୁଦା' କହିଲା, ''ସାଇକେଲ୍‌ରେ ବସ, ଶୀଘ୍ର ପହଞ୍ଚିଯିବା । ମନେହେଉଛି, ତୁ ଖୁବ୍ ଡରି ଯାଇଛୁ । ମୁଁ ସାଇକେଲ୍‌ର ପଛରେ ବସିଲି । ମୋତେ ଡର ମାଡୁଥାଏ । କାଳେ କିଏ ପଛରୁ ମୋର ମୁହଁ ବନ୍ଦ କରି ମୋତେ ଟାଣି ନେଇଯିବ, ତଣ୍ଟି ମାଡ଼ିବସିବ । କହିଲି, ''ଦାଦା ପଛରେ ମୁଁ ବସିପାରିବିନି । ମତେ ଆଗରେ ବସାଅ ।'' ଆଜିକାଲି ରାସ୍ତାରେ କେହି କାହିଁକି ଦେଖାଯାଆନ୍ତି ନାହିଁ ଯେ ! ତାତୁସ୍ ପ୍ରତିଦିନ ପେପର ପଢ଼ି ଶୁଣାନ୍ତି; ଆଜି କେଉଁଠି ଦୁର୍ଘଟଣା ଘଟିଲାଣି ତ କାଲି ଆଉ କେଉଁଠି । ଅଧିକାଂଶ ଦୁର୍ଘଟଣାଜନିତ । ପୁଣି ପ୍ରାୟ ଦୁର୍ଘଟଣାରେ ସ୍ତ୍ରୀମାନଙ୍କ ଉପରେ ଅତ୍ୟାଚାର । ଭଲ ଖବରର ସଂଖ୍ୟା ବହୁତ କମ୍ । ଏହି ଭୟରେ ମୁଁ ସାଇକେଲ୍ ଆଗରେ ବସିଲି । ପଚାରିଲି, ''ଆଚ୍ଛା ଦାଦା, ଏଠି ଚୋରିଚାରିର ତ ଭୟ ନାହିଁ ?'' ଦାଦା କହିଲେ, ''ଏଠି କାହାଘରୁ କ'ଣ ବା ଚୋରି ହେବ ଯେ ! ସମସ୍ତେ ତ ଗରିବ । ହାତଗଣତିରେ ଅଛନ୍ତି ଥିଲାବାଲା ଲୋକ । ବିଲ ଖମାରରେ କାମ କରୁଥିବା ଏହି ଲୋକଙ୍କ ଘରେ ଧାନ ଚାଉଳକୁ ବାଦ୍ ଦେଲେ ଆଉ କ'ଣ ବା ମିଳିବ ଯେ କିଏ ଚୋରି କରିବାକୁ ଆସିବ ?'' ତା' ଛଡ଼ା ଏଠି ଲୋକଙ୍କ ମନରେ ଈର୍ଷା ବି କମ୍ । ଲୋକଙ୍କ ମଧ୍ୟରେ ଏକତା ବି ରହିଛି । ରାତିରେ କାହିଁ କେଉଁଠି କିଛି ହେଲେ, ଲୋକ ଲାଠି ଧରି ପହଞ୍ଚି ଯାଆନ୍ତି । ସେଥିପାଇଁ ଏଠି ଚୋରି ବି କମ୍ ।'' ମୁଁ କହିଲି, ''ସହରରେ ଏମିତି ହୁଏନା । ଜାଣିଛ ଦାଦା, ସେଠି ରାତିରେ କେହି କାହାରିକି ସାହାଯ୍ୟ କରିବାଲାଗି ପଦାକୁ ବାହାରିବାପାଇଁ ଚାହାନ୍ତି ନାହିଁ । ଭାବନ୍ତି, କେହି ମରୁଛି ଯଦି ମରୁ । ଆମେ କାହିଁକି ଝାମେଲାରେ ପଡ଼ିବା ? ନିଜ ନିଜ ଝରକା କବାଟ ବି ଖୋଲାଥିଲେ ବନ୍ଦ କରି ଦିଅନ୍ତି ।'' ନିରୁଦା କହିଲା, ''ସେଇଥିପାଇଁ ପରା ସହର ମତେ ଭଲ ଲାଗେନା । ସହରରେ ଖାଲି ମିଛ ଆଉ ବେଇମାନି । ଆମ ପରି ଲୋକ ତ ସହରରେ ରହିପାରିବେନି । ଆମର ଏଠି ଯାହା ଯେମିତି ଚାଲିଛି ସେଇଥିରେ ଆମେ ଖୁସୀ । ଓଳିଏ ଖାଇବାକୁ ନପାଇଲେ ବି ଶାନ୍ତି ତ ଅଛି । ମୋର ଚିନ୍ତା କେବଳ ଝିଅମାନଙ୍କ ଲାଗି ।

କୌଣସି ପ୍ରକାରେ ଥରେ ସେମାନଙ୍କୁ ବାହାସାହା କରିଦେଲେ ମୋର ଆଉ ଚିନ୍ତା କ'ଣ । ଏହି ଗାଁରେ ପଡ଼ି ରହିଥିବି ।''

ଏହି ରାସ୍ତାରେ ଆମେ ଦିନ ବେଳା କେତେ ଥର ଯିବା ଆସିବା କରିଛୁ । କେତେ ଗହଳି ସେତେବେଳେ । ଏବେ ରାତିରେ ସବୁ କିଛି ନିଶୂନ । ମନେହେଉଛି, ଯେମିତି ରାସ୍ତାରେ ଭୂତପ୍ରେତଙ୍କର ରାଜୁତି । ମୁଁ ଜାଣିଜାଣି ନିରୁଦା'କୁ ପଚାରିଲି, ''ଦାଦା ଦିନବେଳା ଆମେ ଏହି ରାସ୍ତାରେ ଯାଇଥିଲେଟି ?'' ସେ କହିଲା, ''ହଁ, ଆମ ଗାଁକୁ ଯିବାପାଇଁ ଏହି ତ ରାସ୍ତା । ସକାଳେ ଏହି ରାସ୍ତାଦେଇ ଗଲାବେଳେ ପରା ଆମେ କୁକୁଡ଼ା କିଣିଥିଲେ । ଜାଣିପାରୁନୁ ?'' ମୁଁ କହିଲି, ''ନା ମୁଁ କ'ଣ କହୁଥିଲି କି, ରାତି ବେଶି ହେଇନି । ତା' ପରେ ବି ରାସ୍ତା ବିଲ୍‌କୁଲ୍ ଶୂନ୍‌ଶାନ୍ ।'' ସେ କହିଲା, ''ଦିନ ସାରା କ୍ଷେତରେ ଖଟିଲା ପରେ ଲୋକ ଥକି ପଡ଼ନ୍ତି । ସନ୍ଧ୍ୟା ନହେଉଣୁ ଖାଇପିଇ ନିଶ୍ଚୁପ୍ ହୋଇ ଶୋଇପଡ଼ନ୍ତି ।''

କିଛି ଦୂର ଗଲା ପରେ ଆଲୁଅ ଦେଖାଗଲା । ସେଠି ପହଞ୍ଚି ନିରୁଦା' ଗୋଟାଏ ଶିବ ମନ୍ଦିର ଆଗରେ ସାଇକେଲ୍ ଠିଆ କଲା । ମୁଁ ପଚାରିଲି, ''କ'ଣ କିଛି କାମ ଥିଲା ଏଇଠି ?'' ସେ କହିଲା, ''ତୁ ପରା କହୁଥିଲୁ ଫୋନ୍ କରିବୁ ବୋଲି ।'' ମୁଁ କହିଲି, ''ନା, ଫୋନ୍ କାଲି କରିବି । ତୁମକୁ କହିବାକୁ ଭୁଲିଯାଇଥିଲି ।'' ନିରୁଦା' କହିଲା, ''ଆଗରୁ କହିଥାନ୍ତୁ ଯଦି ଆମେ ଏପଟେ ନଆସି ସିଧା ଚାଲିଯାଇଥାନ୍ତେ ।'' ମୁଁ କହିଲି, ''ଠିକ୍ ଅଛି, ଆସିଛୁ ଯେତେବେଳେ ମନ୍ଦିର ବୁଲିଦେଇ ଯିବା ।'' ନିରୁଦା' କହିଲା, ''ତା'ହେଲେ ତୁ ବୁଲିକି ଆସ । ମୁଁ ବାହାରେ ଅଛି ।'' ମୁଁ ମନ୍ଦିର ଭିତରକୁ ଗଲି । ପୂଜାରୀ ଶିବଲିଙ୍ଗର ପୂଜା ସାରି କ୍ଷୀରରେ ସ୍ନାନ କରାଉଛନ୍ତି । ଏହା ଦେଖି ମୋର ପିଲାବେଳର କଥା ମନେ ପଡ଼ିଲା । କାନ୍ଧି ନା କ'ଣ କେଉଁ ଏକ ସହରରେ ବାପା ଆମମାନଙ୍କୁ ଏକ ଭଡ଼ାଘରେ ଛାଡ଼ି ଦେଇ ତାଙ୍କ ଚାକିରି ଜାଗାକୁ ଯାଇଥାନ୍ତି । ଆମେ ରହୁଥିବା ପଡ଼ାରେ ବହୁସଂଖ୍ୟକ ହେଲେ ମୁସଲମାନ । ତେଣୁ ତାକୁ ମୁସଲମାନପଡ଼ା କୁହାଯାଏ । ଆମର ପଡ଼ୋଶୀ ଥିଲେ ଉଲଫତ୍ କାକା, ବାପାଙ୍କ ବନ୍ଧୁ । ବାପାଙ୍କ ସହିତ ମିଲିଟାରୀ ଚାକିରି କରନ୍ତି । ବାପା ଖୁବ୍ କମ୍ ଚିଠି ଲେଖନ୍ତି; ଉଲ୍‌ଫତ୍ କାକାଙ୍କ ଚିଠି ଆସେ ମାସକୁ ଦୁଇତିନି ଥର । ମା' ସେମାନଙ୍କ ଘରକୁ ଅନେକ ଥର ଯାଏ । ଉଦ୍ଦେଶ୍ୟ, କାକା ତାଙ୍କ ଚିଠିରେ କାଳେ ବାପା କିମ୍ବା ଆମମାନଙ୍କ ବିଷୟରେ କିଛି ଉଲ୍ଲେଖ କରିଥିବେ ! କିଛି ଉଲ୍ଲେଖ ଥିଲେ ମା ଖୁବ୍ ଖୁସୀ ହୁଏ । ନୋହିଲେ, ତାଙ୍କ ଘରୁ ଫେରି ଛୋଟ ଛୋଟ କଥାରେ ଆମ ଉପରେ ଚିଡ଼େ । ଆମେ ବୁଝିପାରୁଁ ଆମ କଥା ଉଲ୍‌ଫତ୍ କାକାଙ୍କ ଚିଠିରେ ଉଲ୍ଲେଖ ନାହିଁ ବୋଲି ତା' ମନ ଖରାପ । ଉଲ୍‌ଫତ୍ କାକାଙ୍କ ଘରେ ମା'କୁ ଖୁବ୍ ମାନନ୍ତି । ମା' ଜାତିଗୋତିରେ ବିଶ୍ୱାସ କରେନା । ଉଲ୍‌ଫତ୍ କାକାଙ୍କ ସ୍ତ୍ରୀ ମା'କୁ ନିଶ୍ଚୟ କିଛି ଖାଇବାକୁ ଦେବ । କେବେ କେବେ ଆମେ ଛୁଆମାନେ ବି ମା' ସାଙ୍ଗରେ ତାଙ୍କ ଘରକୁ ଯାଉ । କାକୀମା ଆମକୁ ଖୁବ୍ ଭଲ ପାଆନ୍ତି । ନ ଭେଟୁଣୁ କୋଳକୁ ନେଇଯାଆନ୍ତି । ବିସ୍କୁଟ୍ ଆଦି ଖାଇବାକୁ ଦିଅନ୍ତି । ମା' କୁ କହନ୍ତି, ''ଦିଦି, କୁକୁଡ଼ା ମାଂସ ରାନ୍ଧିବି ? ନୋହିଲେ ତୁମେ ନେଇଯାଅ କୁକୁଡ଼ାଟିଏ ।'' ମା ଯେତେ ମନା କଲେ ବି ମାନନ୍ତି ନାହିଁ । କୁକୁଡ଼ାଟିଏ ବାନ୍ଧି

ଦେଇ ଦିଅନ୍ତି । ସେମାନଙ୍କ ଘରେ କୁକୁଡ଼ାର ଭଣ୍ଡାର । ଘର ବାରଣ୍ଡା, ଅଗଣା ବାରିଆଡ଼େ କୁକୁଡ଼ା ଯୋଗୁଁ ମଇଳା । କାକୀମା ମା' ସହ ଥଟ୍ଟାମଜା କରନ୍ତି । ଥଟ୍ଟାରେ ମା'କୁ କହନ୍ତି, ''ଦିଦି, ଦାଦା ଚିଠିପତ୍ର ଖଣ୍ଡେ କାହିଁକି ଦିଅନ୍ତି ନାହିଁ ?'' ସେଠି ଆଉ କେଉଁ ଦିଦିକୁ ତ ଧରି ନାହାନ୍ତି ?'' ତାଙ୍କ କଥା ଶୁଣି ମା' ଉଦାସ ହୋଇଯାଏ । କହେ, ''ହଁ, ଧରି ବି ଥାଇ ପାରନ୍ତି । ଏବେ ତ ମୋର ରୂପ ଯୌବନ ନାହିଁ । ଛୁଆପିଲାବାଲୀ ହେଇଗଲିଣି । ମୋ ଠାରେ ଯଦି ମନ ନାହିଁ, ସେ କିଛି ବି କରିପାରିବେ । ମୁଁ ବା କ'ଣ କରିବି । ହେଲେ ତା' ପିଲାଙ୍କୁ ତ ନେଇଯାଉ । କୋଉ ଭରସାରେ ସେ ଏଠି ସମସ୍ତଙ୍କୁ ଛାଡ଼ିଯାଇଛି ?'' ମା'କୁ କାକୀମା ସାନ୍ତ୍ୱନା ଦିଅନ୍ତି, ''ନା ନା ଦିଦି ସେ ଏମିତି କିଛି କରି ନଥିବ । ଯଦି କରିଥା'ନ୍ତା, ତୁମ ଦିଅର ମୋତେ କହନ୍ତା ନାହିଁ ?'' ବାପାଙ୍କ ସମ୍ବନ୍ଧରେ ଏମିତି ସବୁ ଶୁଣି ମା' ଘରକୁ ଫେରେ ଆଉ ଆମମାନଙ୍କ ଉପରେ ରାଗ ରଖେ । ବାପାଙ୍କ ସ୍ୱଭାବ ବି ସେମିତିକା । ସେ ଯାହାହେଉ, ଏବେ ମନ୍ଦିରକୁ ଗଲାବେଳେ ମୋର ଅନେକ କଥା ମନେପଡୁଥିଲା ।

ମୁସଲମାନ ପଡ଼ାରୁ ବଜାର ବେଶି ଦୂର ନଥିଲା। ବଜାରରେ ସାରା ଦିନ ତୟତାଙ୍ଗ ବୁଲୁଥାଏ । ସେ ମଣିଷ ନା ମଣିଷ ରୂପରେ ଭଗବାନ- କହିବା କଠିନ । କେହି କେହି ତାକୁ ତୟତାଙ୍ଗ କହନ୍ତି ଆଉ କେହି କେହି କହନ୍ତି ଭୋଲେବାବା । ତା' ବୟସ କାହାକୁ ଜଣା ନାହିଁ; ଅନୁମାନ କରିବା ବି କଷ୍ଟ । କେବେକେବେ ସେ ବାଳକ ଭଳି ଲାଗେ ତ ଆଉ କେବେ ପ୍ରୌଢ଼ । ଗେଡ଼ା, କଳା ଓ ମୋଟା ତୟତାଙ୍ଗ ଲଙ୍ଗଳା ହୋଇ ତା'ର ଦୁଇ ଜଙ୍ଘକୁ ଘଷିଘଷି ବାଲୁଥାଏ । ପଛରୁ ତା'ର ପୁରୁଷାଙ୍ଗ ଦେଖାଯାଉଥାଏ । ଶୀତଦିନେ କପଡ଼ା ଦୋକାନୀମାନେ ତାକୁ ତାକି ହାତବାଲା ଗେଞ୍ଜିଟିଏ ପିନ୍ଧାଇ ଦିଅନ୍ତି । ଗେଞ୍ଜି ପିନ୍ଧି ସେ ଆହୁରି ମୋଟା ଦିଶେ । ସଫା ନ ହୋଇ କପଡ଼ା ତା'ର ମଇଳା ହେଇଯାଏ । ତାକୁ ନୂଆ ଗେଞ୍ଜି ପିନ୍ଧାଇ ଦିଆଯାଏ । ସକାଳେ ଯାହା ଦୋକାନ ସାମନାରେ ସେ ଛିଡ଼ା ହୋଇଥାଏ, ଲୋକ କହନ୍ତି ସେହି ଦୋକାନୀର ଭାଗ୍ୟ ଭଲ । ବିକ୍ରୀ ଭଲ ହେବ । ସକାଳ ଓଳି ରିକ୍ସାବାଲାମାନେ ତାକୁ ନିଜ ନିଜ ରିକ୍ସାରେ ବସାନ୍ତି । ସିଟ୍‌ରେ ବସି ପାରେନି ବୋଲି ରିକ୍ସାର ଗୋଡ଼ ରଖିବା ଜାଗାରେ ବସାନ୍ତି । ତାକୁ ରିକ୍ସାରେ ବସାଇଲେ କୁଆଡ଼େ ଭଲ କମାଣି ହୁଏ । ସେ ନିଜେ ଯଦି କେଉଁ ଦୋକାନକୁ ଯାଏ ବା ରିକ୍ସାରେ ବସେ, ସେଦିନ କୁଆଡ଼େ ସେହି ଦୋକାନୀ ବା ରିକ୍ସାବାଲାର ଭାଗ୍ୟ ଫିଟିଯାଏ । ତା' ହାତରେ ଅନେକ ଲୋକ ମାଡ଼ ଖାଇବାକୁ ଚାହାନ୍ତି । ତା' ସାମନାରେ ଲୋକ ପିଠି କରି ଛିଡ଼ା ହୁଅନ୍ତି ମାଡ଼ ମାରିବ ବୋଲି । ଥଟ୍ଟାରେ କେହି ତା' ହାତରେ ବାଡ଼ିଟିଏ ଧରେଇ ଦେଲେ, ସେ ବାଡ଼ିଟିକୁ ଧରେ । ମାତ୍ର ଯେତେବେଳେ ଦେଖେ ଯେ ବାଡ଼ିଯୋଗୁଁ କେହି ତା' ପାଖ ପଶୁ ନାହାନ୍ତି, ସେ ବାଡ଼ିଟିକୁ ଫିଙ୍ଗିଦିଏ । ତା' ମୁହଁରୁ କେହି କଥା ଶୁଣି ନାହାନ୍ତି । ହେଲେ, ସବୁ ଲୋକ ତାକୁ ନେଇ କିଛି ନା କିଛି କହୁଥାନ୍ତି । ତା' ଉପରେ ଥଟ୍ଟା କଲେ, ସେ କେବଳ ହସିଦିଏ । ତା' ହସ ଥିଲା ଖୁବ୍ ନିଆରା । ସେ ହସିଲେ କେବଳ ଉପର ଆଉ ତଳର ଦି'ଟା ଲେଖା ଦାନ୍ତ ମାତ୍ର ବାହାରକୁ ଦେଖାଯାଏ । ଶବ୍ଦ ବାହାରେ ନାହିଁ । କେହି ତା' ଉପରେ ରାଗ କଲେ, ବଜାରର ସବୁ ଦୋକାନୀ ଆଉ ରିକ୍ସାବାଲା

ସେହି ଲୋକକୁ ମାରିବା ପିଟିବାଲାଗି ବାହାରି ପଡ଼ନ୍ତି । ଲୋକଙ୍କର ଏମିତି ପ୍ରିୟ ସେ । କେତେ ଲୋକ ତାକୁ ଏଇୟା ଭାବି ଗାଧୋଇ ଦିଅନ୍ତି ଯେ ଭଗବାନ ଶିବଙ୍କର ସ୍ନାନ କରାଉଛନ୍ତି । କେବେ କେବେ ରିକ୍ସାବାଲାମାନେ ତାକୁ ସାହିକୁ ସାହି ବୁଲାନ୍ତି । ପଡ଼ାର ସାନସାନ ପିଲା 'ତୟତାଙ୍ଗ ଆସିଗଲା, ତୟତାଙ୍ଗ ଆସିଗଲା କହି ଖାଇବା ପିଇବା ଭୁଲି ତା' ପଛରେ ଦୌଡ଼ନ୍ତି । ଜାଣି ସେ ଈଶ୍ୱର । କିଛିଦିନ ପରେ ଶୁଣିବାକୁ ମିଳିଲା ଯେ କୋଉ ମୋଟରଗାଡ଼ି ତଳେ ଚାପି ହୋଇ ତା'ର ମୃତ୍ୟୁ ଘଟିଛି । ସତ କ'ଣ କହିବା କଠିନ । ହେଲେ ତା' ସମ୍ବନ୍ଧରେ ଜାଣିବାଲାଗି ଭାରି ଇଚ୍ଛା ହୁଏ ସେତେବେଳେ ।

ମନ୍ଦିରରେ ପୂଜାରୀ ଆରତି କରୁଥାନ୍ତି । ମୁଁ ଅନ୍ୟମନସ୍କ ହୋଇ ଦେଖୁଥାଏଁ । ମୋର ଡେରି ହେବାର ଦେଖି ନିରୁଦା' ମନ୍ଦିର ଭିତରକୁ ଆସି କହିଲା, ''କ'ଣ ଘରକୁ ଯିବୁନି କି ?'' ମୁଁ ଚମକି ପଡ଼ିଲି । ''ହଁ ଚାଲ, କହି ତା' ସହିତ ବାହାରକୁ ଆସିଲି । ଆମେ ପୁଣି ସାଇକେଲ୍‌ରେ ଗଲୁ । ପିଲାଦିନ କଥା ମନେ ପଡ଼ିଯିବାରୁ ମନର ଭୟ ଉଡ଼ି ଚାଲିଗଲା । ସେହି ମୁସଲମାନ ପଡ଼ାର ସରକାରୀ ସ୍କୁଲ୍‌ରେ ମୁଁ ଅ-ଆ ପାଠ ଶିଖିଥିଲି । ସ୍କୁଲ୍ କଥା ଆଜି ବି ମନେ ଅଛି । ସ୍କୁଲ୍ ଚାରିକଡ଼େ ଇଟାର କାନ୍ଥ । ମଝିରେ ଗୋଟିଏ କଦମ୍ବ ଗଛ । ଆମ ଶ୍ରେଣୀରେ ଆଉ ଜଣେ ଝିଅ ଥାଏ । ମୁଁ ଶ୍ରେଣୀ କକ୍ଷକୁ ନ ଯାଉଣୁ ସେ ମୋର ପଢ଼ା ବସ୍ତାନି ଟାଣିନିଏ ଏବଂ ଆଗ ବେଞ୍ଚ୍‌ରେ ତା' ସହିତ ବସିବାକୁ କହେ । ପ୍ରତିଦିନ ସେ ମୋ ଆଗରୁ ସ୍କୁଲ୍ ଆସେ ଏବଂ ତା' ପାଖରେ ମୋ ଲାଗି ଜାଗା ରଖିଦିଏ । ମୁଁ ଯାଇ ତା' ପାଖରେ ବସେ । ତା' ସାଙ୍ଗରେ ନା ମୁଁ କଥାଭାଷା କରେ, ନା ଖେଳେ । ରିସେସ୍ ବେଳେ ସେ ମୋର ହାତ ଧରି ଖେଳିବାକୁ ଡାକିନିଏ ।

ମୁଁ ତା' କବଳରୁ ହାତ ଛଡ଼େଇ ଆଣେ । ସେ ମତେ ଖେଳିବାକୁ ଡାକିଲେ ମୁଁ ମୁଣ୍ଡ ହଲାଇ ମନା କରିଦିଏ । ସେମାନେ ସବୁ ଖେଳନ୍ତି । ଆଉ ମୁଁ କଦମ୍ବ ଗଛ ମୂଳେ ବସି ସେମାନଙ୍କ ଖେଳ ଦେଖୁଥାଏ । ରିସେସ୍ ପରେ ଯେତେବେଳେ କ୍ଲାସ୍‌ପାଇଁ ଘଣ୍ଟା ବାଜେ, ସେହି ଗେଡ଼ୀ, ମୋଟୀ ଝିଅଟି ଦୌଡ଼ି ଆସି ମୋତେ ଶ୍ରେଣୀକୁ ଭିଡ଼ିନିଏ । ସ୍କୁଲ୍ ଛୁଟି ହେବା ପରେ ତା' ଘର ଯେଉଁ ଦିଗରେ ଆମ ଘର ତା'ର ବିପରୀତ । ହେଲେ ଆମେ ଦୁହେଁ ଯେତେଦୂର ସମ୍ଭବ ପରସ୍ପରକୁ ଦେଖୁଥାଉଁ । ତା' ନାଁ ଜାଣିବାକୁ କେବେ ମୁଁ ଚେଷ୍ଟା କରି ନଥିଲି । ସେ ଭୟ ଥିଲା, ନା ଲଜ୍ଜା, ନା ଆଉ କିଛି- ମତେ ଜଣାନାହିଁ । କ'ଣପାଇଁ ମୁଁ ତା' ସହ କଥା ଭାଷା କରୁନଥିଲି ଯେ !

ସ୍କୁଲ୍ ପାଖାପାଖି ଏକ ବଡ଼ ରାଜମହଲ ଥିଲା । ରାଜା ଶାସନ ଲୋପପାଇବା ପରେ ତାହା ରାଜମନ୍ଦିରରେ ରୂପାନ୍ତରିତ ହୋଇଯାଇଥିଲା । ସେଠି ଭିତରକୁ ଯିବାଲାଗି ତିନୋଟି ବଡ଼ ବଡ଼ ଗେଟ୍ ଥିଲା । ଗେଟ୍‌ରେ ଦରୱାନ୍ । ଗେଟ ପାରି ହୋଇ ଭିତରକୁ ପ୍ରବେଶ ନକରୁଣୁ ବାଁ କଡ଼େ ଜଗନ୍ନାଥ ମନ୍ଦିର ଥାଏ । ତା'ରି ପାଖାପାଖି ଅନ୍ୟସବୁ ଦେବଦେବୀ । ମୃତ୍ୟୁ ପରେ ଯମରାଜ କେମିତି ମଣିଷକୁ ଦଣ୍ଡ ଦିଏ, ତାକୁ ନେଇ କିସମ କିସମର ଚିତ୍ରସବୁ ମନ୍ଦିରରେ ଶୋଭା ପାଉଥାଏ । ଗୋଟାଏ ଚିତ୍ରରେ ଯମରାଜ ମୃତବ୍ୟକ୍ତିର ପେଟକୁ ଚିରିଫାଡ଼ି ତହିଁରୁ ମାଂସ ନେଇ ଖାଉଥାଏ ଏବଂ ରକ୍ତ ପିଉଥାଏ । ଗୋଟାଏ ପଟେ ରାଧାକୃଷ୍ଣ ମନ୍ଦିର ଏବଂ ଅନ୍ୟ ପଟେ ଶିବ ଦୁର୍ଗା ମନ୍ଦିର ।

ମଝିରେ ଶଙ୍ଖ ମର୍ମରର ଏକ ବେଦି ଥାଏ । ତା' ଚାରିକଡ଼େ ରେଲିଂ ଲାଗିଥାଏ । ମଝିରେ ମଝିରେ ଛୋଟ ଛୋଟ ବେଦିରେ କୃଷ୍ଣ, ଶିବ, ସରସ୍ୱତୀ ଆଦିଙ୍କର ମୂର୍ତ୍ତି ଶୋଭା ପାଉଥାଏ । ସନ୍ଧ୍ୟାରେ ମନ୍ଦିରରେ ମେଳା ଲାଗେ, ଘଣ୍ଟ ବଜେଇ ଆରତି ଦିଆଯାଏ । ଘଣ୍ଟର ଶବ୍ଦ ଖୁବ୍ ଦୂରକୁ ଶୁଣାଯାଏ । ସ୍କୁଲ୍ ଛୁଟି ପରେ ସେଇ ଝିଅ, ଯାହାର ନାଁ ବି ଜାଣି ନଥିଲି, ମୋର ହାତ ଧରି ରାଜମନ୍ଦିରକୁ ନେଇଯାଏ । ପଛରୁ ଦରୱାନ୍ ପାଟି କରେ । 'ଏ ଝିଅ କୁଆଡ଼େ ଯାଉଛୁ । ଏବେ ମନ୍ଦିରର କବାଟ ବନ୍ଦ ହେଲାଣି ।' ହେଲେ କିଏ ସେକଥା ଶୁଣୁଛି ? ରେଲିଂ ପଛର ପିଢ଼ାରେ ସଜ୍ଜିତ ମୂର୍ତ୍ତିମାନଙ୍କ ଉପରେ ସେ ପାଣି ଦିଏ । ମତେ କହେ, ମୂର୍ତ୍ତି ଉପରେ ପାଣି ଢାଳ । ବଢ଼ିଆ ଲାଗେ । ମୁଁ କେବଳ ତା' ମୁହଁକୁ ଅନାଇଥାଏ । ସେଇ ବେଳାରେ ମନ୍ଦିର ନିଛାଟିଆ ଥାଏ । କେବଳ ଗୋଟାଏ କି ଦୁଇଟା ମନ୍ଦିରର ପୂଜାରୀ ପୂଜାପାଇଁ ଆୟୋଜନ କରୁଥାନ୍ତି । ମୁଁ ତରିତରି ଏପଟ ସେପଟ ଅନାଉଥାଏ । କାଳେ ତାକୁ କିଏ ଦେଖିଦେବ । ହାତ ଗୋଡ଼ ନ ଧୋଇ ଏମିତି ରେଲିଂ ଭିତରେ ପଶି ଦେବତାଙ୍କୁ ଛୁଇଁଲେ ତାକୁ ଗାଳି କରିବେନି ? ଧୀରେ ଧୀରେ ଆଗକୁ ବଢ଼ିଯାଇ ମୁଁ ପୂଜା ଦେଖେ । ହେଲେ ଭୟରେ ଛାତି ଧକଧକ କରୁଥାଏ । ପୂଜାରୀ ପଚାରନ୍ତି, ଏ ଟୋକୀ, କ'ଣ କରୁଛ ତୁମେ ସବୁ ଏଠି ?'' ମୁଁ ଭକୁଆ ଭଳି ଚୁପ୍ ହେଇଯାଏ ।'' ସେ ଝିଅ କିନ୍ତୁ ଉତ୍ତର ଦିଏ, ''ଆମେ ଭଗବାନଙ୍କୁ ଗାଧୋଇ ଦେଉଛୁଁ ।'' ଆଶ୍ଚର୍ଯ୍ୟ କଥା, ପୂଜାରୀ ତା' କଥା ଶୁଣି ରାଗନ୍ତି ନାହିଁ । ଖୁସିରେ କହନ୍ତି, ''ଠିକ୍ ଅଛି । ଗାଧୋଇ ଦିଅ ।'' ତେଣିକି ସେ ନିଜ କାମ୍‌ରେ ବ୍ୟସ୍ତ ରହନ୍ତି । ଝିଅଟି ମତେ ସେଠିକି ଅନେକ ଥର ଜୋର୍ କରି ନେଇଯାଇଥିଲା । ତା' ପରେ ସ୍କୁଲ୍ ଛୁଟି ପରେ ମୁଁ ତା' ପାଖରେ ରହେ । ମନ୍ଦିରକୁ ଚାଲ ବୋଲି ଆଉ ମତେ କହିବାକୁ ପଡ଼େନି । ତା ସାଙ୍ଗରେ ଯିବାଲାଗି ମୁଁ ନିଜେ ବ୍ୟଗ୍ର ହୋଇ ଟାକି ରହିଥାଏ । ମତେ ଲାଗେ, ମୁଁ ନଯାଇ ରହିପାରିବିନି । ସେ ବି ଜାଣେ ମୁଁ ତା' ସାଙ୍ଗ କାହିଁକି ଛାଡ଼େନି । ଏହା ନିଃସନ୍ଦେହ ଯେ ସେ ଥିଲା ମୋ ଠାରୁ ବୟସରେ ବଡ଼, ଅଧିକ ପରିପକ୍ୱ । ସେ ଥରଟିଏ ଚାଲ ବୋଲି ନକହୁଣୁ, ମୁଁ ତା' ପଛରେ ଚାଲିଯାଏଁ । ମନ୍ଦିରରେ ପହଞ୍ଚି ଶୀଘ୍ର ରେଲିଂ ଡେଇଁ ଚାଲିଯାଏଁ ଏବଂ ଦେବଦେବୀଙ୍କୁ ଗାଧୋଇବା ଆରମ୍ଭ କରିଦିଏଁ । କେତେଥର ଏ କାମ କଲା ପରେ ଏମିତି ପୋଖତ ହୋଇପଡ଼ିଲି ଯେ ସେ ମତେ ପାରିଲା ନାହିଁ । ଇଚ୍ଛାହୁଏ, ଦେବଦେବୀଙ୍କୁ ନିଜ କୋଳରେ ବସାନ୍ତି । ଦେବ ସେବା ପରେ ମୁଁ ଘରକୁ ଫେରିବାକୁ ବସେ ଯେତେବେଳେ, ପୂଜାରୀ କହନ୍ତି, ''ଏ ଟୋକୀ, ଯାଉଛୁ କୁଆଡ଼େ ? ପ୍ରସାଦ ନେଇକି ଯା ।'' ଆମେ ଦୁହେଁ ପ୍ରସାଦ ନେବାକୁ ଦୌଡ଼ିଯାଉ । ପ୍ରସାଦ ଖାଇ ମନ୍ଦିରର ଶଙ୍ଖମର୍ମର ଚଟାଣ ଉପରେ ବସି ଖେଳୁ । ଚଟାଣ ଦେଖିବାକୁ ଏତେ ସଫାସୁତୁରା ଯେ, ମୁଁ ଭାବେ ୟା ଉପରେ ଭାତ ରଖି ଖାଇଲେ ଚଳିବ । ଖେଳିଖେଳି ମୁଁ କେବେ ଚଟାଣରେ ଗଡ଼ିପଡ଼େ । ସେ ମୋ ଗୋଡ଼କୁ ଧରି ଚଟାଣ ଉପରେ ଟାଣିଟାଣି ନେଇଯାଏ । ପ୍ରସାଦ ମିଳିବା ଲୋଭରେ ଆମେ ଅନେକ ଡେରି ଯାଏଁ ସେଠି ବସି ଖେଳୁଥାଉଁ । ଡେରି ହେଲେ ମା' ଗାଳିକରେ । ତା' ସତ୍ତ୍ୱେ ଆମେ ରୋଜ୍ ମନ୍ଦିରକୁ ଯାଉ ।

ନିରୁଦା'ର ସାଇକେଲ୍‌ରେ ବସିବସି କେତେ ପୁରୁଣା କଥା ସବୁ ମନେ ପଡ଼ୁଥାଏ । ମୁଁ ଆହୁରି କେତେ କଥା ଚିନ୍ତା କରିଥାନ୍ତି । ମାତ୍ର ଏକ ବିଜୁଳିବତି ଆଗରେ ସାଇକେଲ୍ ଛିଡ଼ା କରି ସେ କହିଲା, ''ଓହ୍ଲା, ଘର ଆସିଗଲା ।'' ମୋର ଧାରଣା ନଥିଲା ଯେ ଆମେ ଘରେ ପହଞ୍ଚିଗଲୁଣି । ସେହି ମନ୍ଦିରର ଦୃଶ୍ୟ ଦେଖି ପିଲା ବେଳର ଦେବସ୍ଥାନ କଥାରେ ଅଟକି ଯାଇଥିଲି । ମୁସଲମାନ ପଡ଼ାରୁ ବାପା ପୁଣି ଆଉ କେଉଁ ଘରକୁ ଆମକୁ ନେଇଗଲେ, ମୋର ମନେନାହିଁ । ସେହି ଅନାମଧାରୀ ଝିଅ ଓ ସାନ ସାନ ଦେବଦେବୀଙ୍କର ମୂର୍ତ୍ତି ଆଜି ବି ମୋର ମାନସ ପଟରୁ ପାସୋରି ଯାଇ ନାହାନ୍ତି । ସେ କଥା ମନେପଡ଼ିଲେ ବାକି ସବୁ ଭୁଲିଯାଏଁ । କେଜାଣି କୋଉଠି ଥିବ ଯେ ସେ ଏବେ ! ତାକୁ ସ୍କୁଲ୍‌ର ଅନ୍ୟ ପିଲାମାନେ ପାଣିକୋଇଲି ବୋଲି ଡାକନ୍ତି । ମୋତେ ବାଦ ଦେଲେ ଆଉ କାହାରି ସାଙ୍ଗରେ ତା'ର ପଡ଼େ ନାହିଁ । କେଜାଣି କାହିଁକି ସେ ମତେ ଏତେ ଭଲ ପାଉଥିଲା ଯେ !

ଘରେ ପହଞ୍ଚିଲା ପରେ ବାପା, ମା' ଆଉ ନିରୁଦା'ର ସ୍ତ୍ରୀ ଆଶ୍ଚର୍ଯ୍ୟ ହୋଇ ଆମକୁ ଅନାଇଲେ । ସେମାନେ ଡରୁଥିଲେ କାଳେ ଶଙ୍କର ସହିତ କିଛି ଝଗଡ଼ାଝାଟି ହେଇଥିବ । ନିରୁଦା'ର ଚେହେରା ଭାରି ବିଷଣ୍ଣ ଦେଖାଯାଉଥାଏ । ବାରଣ୍ଡାରେ ସାଇକେଲ୍ ଠିଆକରି ସେ ସେଇଠି ଗୋଡ଼ ଟେକି ବସିପଡ଼ିଲା । ବାପାଙ୍କ ଘରେ ଅନେକ ଛୁଆ ଏବଂ ସ୍ତ୍ରୀ ଲୋକ ଟିଭି ଦେଖୁଥାନ୍ତି । ଆମର ମୁହଁ ଶୁଖି ଯାଇଥିବାର ଦେଖି ମା' ଟିଭି ବନ୍ଦ କଲା । ଟିଭି ଦେଖୁଥିବା ଛୁଆଙ୍କ ଭିତରୁ ଜଣକର ମା' ପଚାରିଲା, ''ଆଈ ବନ୍ଦ କାହିଁକି କଲ ? କେତେ ସୁନ୍ଦର ସିନେମା ଆସୁଛି । ଚଳେଇଦିଅ ।'' ଆଉ ଜଣେ କହିଲା, ''ଛିଃ, ବନ୍ଦ କରିଦେଲା ବୁଢ଼ୀ । ଚଲୋଉନୁ !'' ମା' ରାଗିଯାଇ କହିଲା, ''ଖାଲି ସଦାବେଳେ ଟିଭି । କିଛି ଅଲଗା କାମ ଆଉ ନାହିଁ ? ଟିଭି ନ ଚାଲୁଣୁ କୋଉଠୁ ଥିବେ ଯେ ରୁନ୍ଧି ହେଇଯିବେ । ପାଦ ପକେଇବାଲାଗି ଘରେ ଜାଗା ରହିବନି । ଖାଇବା ପିଇବା ଛାଡ଼ି କେବଳ ଟିଭି ଦେଖ । ସମସ୍ତେ ଗଲ ଘରୁ । ଏବେ ଆଉ ଟିଭି ଚାଲିବନି ।'' ମା'ର ରାଗ ଦେଖି ଜଣଜଣ କରି ସମସ୍ତେ ମୁହଁ ଶୁଖେଇ ଘରୁ ବାହାରିଗଲେ ।

ବାପା ଘର ଭିତରୁ ନିରୁଦା'କୁ ଡାକ ଛାଡ଼ିଲେ, ''ଏ ନିରୁ ଆସିଲୁ ଏଠିକି । ସେ ଶଳା ସହ ଭେଟ ହେଲା ନା ନାହିଁ ?'' ନିରୁଦା' ମୁହଁ ଶୁଖେଇ ବସିଥାଏ । ବାରମ୍ବାର ତାକୁ ଡାକିବାରୁ ରାଗିଯାଇ କହିଲା, 'ଆସୁଛି ମ । କେତେ ପାଟି କରୁଛ ଯେ !'' ବାପା ତା' ପାଖକୁ ଯାଇ ଧୀରେ କରି ପଚାରିଲେ, ''ସେଠି କିଛି ଝମେଲା ହେଲା କି ?'' ନିରୁଦା' ଟିକିଏ ନରମି ଯାଇ କହିଲା, ''ଲାଗୁଛି, ତା' ସହିତ କାମ କରୁଥିବା ଲୋକ ସବୁ ତାକୁ କିଣି ନେଇଛନ୍ତି । ନୋହିଲେ ତା'ର ସପକ୍ଷରେ ଏତେ କଥା କହି ନଥାନ୍ତେ ।'' କିଛି ସମୟ ଚୁପ୍ ରହିଲା ପରେ ପୁଣି କହିଲା, ''ସ୍ୱାମୀ ସ୍ତ୍ରୀଙ୍କର ବ୍ୟକ୍ତିଗତ ମାମଲା । ସେଥିରେ ସେମାନଙ୍କର କାହିଁକି ଏତେ ମୁଣ୍ଡବ୍ୟଥା ହେଉଛି ? ଯେମିତି କଥା କହୁଥାନ୍ତି, ଇଚ୍ଛା ହେଉଥାଏ ସମସ୍ତଙ୍କର ମୁହଁରେ ଥାପଡ଼ ମାରନ୍ତି । ହେଲେ ମୁଁ ଥାଏ ଏକଲା । ଆଖପାଖରେ ଚିହ୍ନାଜଣା ବି ନାହାନ୍ତି । ସେମାନଙ୍କର ଅଭଦ୍ର କଥାଯାକ ମୋତେ ଶୁଣିବାକୁ ପଡ଼ିଲା ।'' ବାପା ରାଗି ଯାଇ କହିଲେ, ''କ'ଣ କହିଲେ ସେମାନେ ?'' ମା' ଘର ଭିତରୁ ବାପାଙ୍କୁ

ପାଟି କରି କହିଲା, ଧେତ୍‌ତେରି । ପାଗଳ ହେଲ ନା କ'ଣ ? ସେ ଯାହା ଶୁଣିଛି ତାକୁ ଆଉ ଆମ ଆଗରେ କହି ହେବନି ଜାଣି ସେ ଦୋହରାଉ ନାହିଁ ।'' ନିରୁଦା' କହିଲା, ''ଖୁଡ଼ୀ ଠିକ୍ କହୁଛି । ସେ ସବୁ କଥା ପିଲାଙ୍କ ଆଗରେ କହିହେବନି । କାକା ଆଗରେ ବି କହିବାକୁ ଲାଜ ମାଡ଼ିବ । କେମିତି ବୁଝାଇବି ମୁଁ ?'' ବାପା କେବଳ 'ଓହୋ' କହି ବାହାରକୁ ବାହାରିଗଲେ । ହାତ ଗୋଡ଼ ଧୋଇ ମୁଁ ବି କପଡ଼ା ବଦଳେଇବାଲାଗି ଘରଭିତରକୁ ଗଲି । ମୋର ପଛେ ପଛେ ମା' ଆସି ପଚାରିଲା, 'ଜୋଇଁ ସାଙ୍ଗରେ ଦେଖାହେଲା କି ?'' ମୁଁ କହିଲି, ନା । ମୋର ଉଦାସ ଚେହେରା ଦେଖି ମା' ବୋଧହୁଏ ମନେକଲା, ଜୋଇଁ ସହ ଦେଖା ନ ହେବାରୁ ଝିଅର ମନ ଖରାପ । ଅବଶ୍ୟ ମନ ଖରାପ ଥିଲା, କିନ୍ତୁ ବିଶେଷ ନୁହେଁ । ଖରାପ ଲାଗିବା ସ୍ୱାଭାବିକ, କାରଣ ଏତେ ଦିନ ପରେ ଭେଟିବାକୁ ଆସି ଭେଟି ପାରିଲି ନାହିଁ । ଭେଟ ହେଇଥିଲେ ଜାଣି ହେଇଥାନ୍ତା ପିଲାଙ୍କଠାରୁ ଦୂରରେ ରହି ସେ ଭଲରେ ଅଛି ନା ନାହିଁ । ଅବଶ୍ୟ କହିଦେଇ ଆସିଛି, ପିଲାଙ୍କ ଉପରେ କିଛି ମାୟା ମମତା ଥିଲେ ଆସି ଭେଟିକି ଯାଉ ।

ରାତିରେ ମା' ରାନ୍ଧି ନଥିଲା । ନିରୁଦା'ର ସ୍ତ୍ରୀ ସମସ୍ତଙ୍କ ପାଇଁ ରାନ୍ଧି ଥିଲା । ତାଙ୍କ ବାରଣ୍ଡାରେ ସମସ୍ତେ ବସି ଖାଇଲେ । ସମସ୍ତେ ନିଜ ନିଜର ଖାଉଥାନ୍ତି । ମୁଁ କେବଳ ଥାଳିରେ ହାତ ରଖିଥାଏ । ନିରୁଦା'ର ସ୍ତ୍ରୀ ବୁଝିଗଲା, ମୋର ମନ ଖରାପ । ମତେ ବିଶେଷ ଖରାପ ଲାଗୁଥିଲା ନିରୁଦା' ଲାଗି । ସେ ମୋର କେହି ଆତ୍ମୀୟ ପରିଜନ ନୁହେଁ । ତା' ପରେ ବି ମୋ ପାଇଁ ତାକୁ ଏତେ ଅପମାନ ଶୁଣିବାକୁ ପଡ଼ିଲା । କ'ଣ ସବୁ ସେମାନେ ତାକୁ କହିଲେ ଯେ ସେସବୁ ଦୋହରାଇବା ବି ତା' ପକ୍ଷରେ ଅସମ୍ଭବ । ମୁଁ ଆଉ ଖାଇପାରିଲି ନାହିଁ । ବାପା ପଚାରିଲେ, ''କ'ଣ ହେଲା ଝିଅ । ଖାଇଲୁନି ଯେ ?'' କୌଣସି ଉତ୍ତର ନ ଦେଇ ମୁଁ ମୁହଁହାତ ଧୋଇବାଲାଗି ଉଠିଗଲି । ବାପା କହୁଥାନ୍ତି, ''ଆରେ ମା ଖାଇନେ । ମୁଁ ଜାଣେ ତୋ'ର ମନ ଖରାପ । ହେଲେ ଅଖିଆ କାହିଁକି ରହିବୁ ? ତୁ ନ ଖାଇଲେ ସେ ଶଳାର କ'ଣ ଯିବ ? ନୋହିଲେ ତୋର ଦାଦା ତାକୁ ଏତେ ବୁଝାଇଲା ପରେ କ'ଣ ସେ ମନା କରନ୍ତା । ଅନ୍ତତଃ ଥରେ ସେ ତ କହି ପାରିଥାନ୍ତା, ଠିକ୍ ଅଛି, ନିଜେ ଥରେ ଯାଇ ଭେଟି ଆସେ । ମାତ୍ର କହିଲାନି । ଓଲଟା ତୋ' ଦାଦାକୁ କେତେ କ'ଣ କହିଗଲା । ମଣିଷ ହେଇଥିଲେ ସବୁ କଥା ବୁଝି ପାରନ୍ତା । ହେଲେ ସେ ଶଳା ପୁଅ କ'ଣ ମଣିଷ ହୋଇଛି । ସାକ୍ଷାତ୍ ପଶୁ । ଆ ମା ଖାଇନେ ।''

ବାପା ଖାଇବା ଛାଡ଼ି ଅଇଁଠା ହାତକୁ ଥାଳିରେ ରଖି ଏସବୁ କହୁଥିଲେ । ପିଲାଏ ଠା' ରେ ବସି ତାଙ୍କୁ ଆଶ୍ଚର୍ଯ୍ୟ ହୋଇ ଦେଖୁଥାନ୍ତି । ସାମାନ୍ୟ ଶାନ୍ତ ହୋଇ ବାପା କହିଲେ, ''ମୁଁ ଜାଣେ ତତେ ଖରାପ ଲାଗିବା ଭଳି କଥା ହୋଇଛି । ହେଲେ ତା'ପାଇଁ କ'ଣ ଖିଆପିଆ ଛାଡ଼ିଦେବୁ ? ଏମିତି ହ ନା । ମୋ' ରାଣ, ଆ ଖାଇ ନେ ।'' ନିରୁଦା'ର ସ୍ତ୍ରୀ କହିଲା, ''କାହାକୁ ବା ଭଲ ଲାଗିବ ଯେ ! ଏତେ ବର୍ଷ ଧରି ତା' ସାଙ୍ଗରେ ରହିଛି । ପୁଣି ଏବେ ଏତେ ଦିନ ପରେ ପିଲାଙ୍କୁ ନେଇ ତାକୁ ଭେଟିବାକୁ ଆସିଛି । ଆଉ ଲୋକଙ୍କ ଦ୍ୱାରା ସେ ଏମିତି ଅପମାନ ଦେଲା ? କାହାକୁ ଖରାପ ନ ଲାଗିବ ଯେ ? ଯାହା ବି ହେଉ, ସେ ହେଲା ତା'ର ସ୍ୱାମୀ । ପୁରୁଷ ପିଲା ସ୍ତ୍ରୀକୁ

ଭୁଲିଯିବେ । ମାତ୍ର ସ୍ତ୍ରୀ କ'ଣ ଭୁଲି ପାରିବ ? ବାପା ପୁଣି ଥରେ ମତେ ଡାକିଲେ, ''ମା, ଆସ । ମୁଁ ରାଣ ଦେଇଛି ପରା । ମୁଁ ମରିଗଲେ କ'ଣ ତତେ ଭଲ ଲାଗିବ ? ଆ, ଖାଇ ନେ ।''

ବାପାଙ୍କ କଥାରେ ବାଧ୍ୟ ହୋଇ ମୁଁ ପୁଣି ଖାଇବାଲାଗି ବସିଲି । ମାତ୍ର ବାପା ଯେଉଁ ଆଦରରେ ମତେ ଡାକୁଥିଲେ, ମା'କୁ ତାହା ଭଲ ଲାଗିଲାନି । ଶେଷରେ ରାଗିମାଗି କହିଲା, ''ତୁମେ ସବୁ ଖାଅ ।''ନିଜେ ଥାଳି ଛାଡ଼ି ଉଠିଗଲା । ବାପା କହିଲେ, ''ଏମିତି କାହିଁକି ହେଉଛୁ ରାନୀ । ଝିଅକୁ ଟିକେ ସାନ୍ତ୍ୱନା ବି କ'ଣ ମୁଁ ଦେଇ ପାରିବି ନାହିଁ । ମଝିରେ କ'ଣ ଏ ସବୁ ହୁଏ ତୋର ?'' ମା'ର ଏ ଭଳିଆ ବ୍ୟବହାର ଦେଖି ପିଲାଏ ପରସ୍ପରକୁ ଆଖିଠାର ମାରି ହସୁଥାନ୍ତି । କେତେ ଦିନ ପରେ ମୁଁ ଆସିଛି । ଭାବୁଥିଲି ମା' ବାପାଙ୍କ ସ୍ନେହ ଆଦର ମିଳିବ । ହେଲେ ଖାଇବା ସମୟରେ ମା'ର ଉପଦ୍ରବ କରିବାର ଚରିତ୍ର ବଦଳି ନାହିଁ । ବୋଧହୁଏ ବଦଳିବ ବି ନାହିଁ । ଖରାବେଳେ ବି ସେ ଏମିତି ଉପଦ୍ରବ କରିଥିଲା । ସେ ଆଉ ଶେଷଯାଏଁ ଖାଇଲା ନାହିଁ । ଚଟାଣରେ ବିଛଣା ପକେଇ ଶୋଇଗଲା । ବେଶି ବୁଝାଶୁଝା କରିବାର ଆବଶ୍ୟକତା ନାହିଁ ମନେକରି ବାପା ନିଜେ ଖାଇ ପିଇ ଶୋଇଗଲେ ।

ରାତିରେ ମୋତେ ନିଦ ଆସୁ ନଥାଏ । ଭାବୁଥାଏ, ମା' ମଝିରେ ମଝିରେ ଅନ୍ୟମାନଙ୍କ ସହିତ ଏଭଳି ବ୍ୟବହାର କାହିଁକି କରେ ? ବାପା କାଳେ ତାକୁ ଛାଡ଼ି ଦେଇ ନିଜ ପିଲାଙ୍କ ପାଖକୁ ଚାଲିଯିବେ ବୋଲି ସେ ଆଶଙ୍କା କରେ କି ? ସେହି ସ୍ଥିତିରେ ତା'ର କିଏ ଦେଖାଶୁଣା କରିବ- ଏହି ଚିନ୍ତା ତାକୁ ଘାରେ କି ? ଏହି ଭୟରେ ଯଦି ମା' ଆମମାନଙ୍କ ପ୍ରତି ପକ୍ଷପାତ କରୁଥାଏ ତେବେ ତା'ର ଚିନ୍ତା ଭୁଲ । ଆମେ କେହି ତାକୁ ମନ୍ଦ ଆଖିରେ ଦେଖୁନା । ବରଂ ବାପାଙ୍କ ଅପେକ୍ଷା ତାକୁ ଆମେ ଅଧିକ ଭଲପାଉ । ଯଦି ବାପାଙ୍କର କିଛି କ'ଣ ହୋଇଯାଏ, ତେବେ ମା'କୁ ଆମେ କ'ଣ ଏକା ଛାଡ଼ିଦେବୁ ? କେହି ତାକୁ ଛାଡ଼ି ଦେବେନି, କାରଣ ଯେମିତି ଜନ୍ମ ଦେଲା ମା' ସେମିତି ପାଳିତା ମା' । ବରଂ ଜନ୍ମଦାତ୍ରୀ ମା'ଠାରୁ ପାଳିତା ମା'ର ଅଧିକାର ଅଧିକ; ଦାୟିତ୍ୱ ବେଶି ।

ମୋର ପିଲାବେଳର କଥାଟିଏ ମନେପଡ଼ିଲା । ସେତେବେଳକୁ ମୋର ବୟସ ସାତ ବା ଆଠ ବର୍ଷ ହୋଇଥିବ । ଥରେ ମୁଁ ସାନ କକାଙ୍କ ପାଖକୁ କରିମପୁର ଯାଇଥିଲି । କାହା ସାଙ୍ଗରେ ଯାଇଥିଲି ଏବେ ମନେ ପଡୁନି । କକାଙ୍କ ଘର ପାଖରେ ଜଣେ ଲୋକ ରହୁଥିଲା । କେଉଁଠି ଚାକିରି କରେ ସେ । ତା'ର ଦୁଇଟି ପିଲା, ଝିଅଟିଏ ଆଉ ପୁଅଟିଏ । ପିଲାଙ୍କ ଜନ୍ମର କିଛି ବର୍ଷ ପରେ ସ୍ତ୍ରୀ ପାଗଳପ୍ରାୟ ହୋଇଯାଇଥିଲା । କାରଣ କେଜାଣି । ବସିଥିବ ତ ବସିଥିବ । ସାରାଦିନ କାହାରି ସହିତ କଥାଭାଷା ବି କରିବନି । ଖିଆପିଆ କରିବନି । ପିଲାଏ, ମା' ମା' କହି ଯଦି ତା' ପାଖକୁ ଯାଆନ୍ତି, ସେମାନଙ୍କୁ ଦୂର୍‌ଦୂରେଇ ଦେବ । ଡାକ୍ତରଙ୍କୁ ଦେଖାଗଲା । ହେଲେ କିଛି ଫରକ ପଡ଼ିଲାନି । ପିଲାଙ୍କ ଦେଖଭାଲ୍ ଲାଗି ବାପା ଆଉ ଥରେ ବାହା ହେଲେ । ଦ୍ୱିତୀୟ ପତ୍ନୀ ବହୁତ ଭଲ ସ୍ୱଭାବର । ଜଣା ପଡ଼େନି ଯେ ପିଲାଏ ତା' ନିଜର ନୁହନ୍ତି । ପାଗଳ ମା' ପାଖକୁ ସେମାନେ ଏଣିକି ଭୁଲରେ ବି ଯାଆନ୍ତି ନାହିଁ । ନୂଆ ମା' ସେମାନଙ୍କ ଗାଧୁଆ ପାଧୁଆ, ଖିଆପିଆ, ସ୍କୁଲ୍‌ଯିବା

ଆଦି ସବୁ କଥା ବୁଝେ । ନିଜ ମା'କୁ ପିଲା ଏତେ ବିରକ୍ତ କରୁ ନଥିବେ ଯେତିକି ନୂଆ ମା'କୁ । ପୁଣି ପାଗଳ ସଉତୁଣୀର ଗାଧୁଆପାଧୁଆ, ଖିଆପିଆ, ଝାଡ଼ାପରିସ୍ରା, ମଇଳା କପଡ଼ା ସଫା କରିବା ଆଦି ସବୁ କାମ କରେ ।

ପତିର ସେବାରେ ବି ସେ ହେଳା କରେନି । ଅଫିସ୍ ଯିବା ବେଳକୁ ରନ୍ଧା ସରିଥିବ । ଅଫିସ୍ ଫାଇଲ୍ ସଜଡ଼ା ହୋଇଥିବ । ଗାଧୁଆପାଇଁ ପାଣି ରଖିଦେବା ଆଦି ସବୁକାମ କରେ । କେବଳ ସେତିକି ନୁହେଁ, ପତି ଯେତେବେଳେ ଗାଧୋଇବାକୁ ଯାଏ, ତା' ପିଠିରେ ସେ ସାବୁନ୍ ଲଗାଇ ଦିଏ । ଗାଧୁଆ ସରିଲା ପରେ ଗାମୁଛାରେ ପତିର ଦେହ ପୋଛିଦିଏ । କେବେ କେବେ ଗାମୁଛା ଧରି ସେ ଗାଧୁଆ ଘର ଆଗରେ ପତିର ଆସିବା ଯାଏ ଅପେକ୍ଷା କରିଥାଏ ।

ଘରେ ସାରା ଦିନ କିଛି ନା କିଛି କାମ ସେ କରୁଥିବା ସତ୍ତ୍ୱେ ମୁହଁରେ ତା'ର ସର୍ବଦା ହସ ଝଲସୁ ଥାଏ । ମୁଁ ଯେତେବେଳେ ଜାଣିଲି ଯେ ସେ ସାବତ ମା, ସକାଳେ ସନ୍ଧ୍ୟାରେ ତାଙ୍କ ବାରଣ୍ଡାର ଖମ୍ବରେ ପିଠିକରି ତା' କାମ ଦେଖୁଥାଏ । ସାହିର ସ୍ତ୍ରୀ ଲୋକମାନେ ଦୁଇପହରେ ତା' ଘରେ ଆସି ଏକତ୍ରିତ ହୁଅନ୍ତି । ସେମାନେ ସବୁ ଗପସପ କରୁଥାନ୍ତି ଏବଂ ସ୍ତ୍ରୀଲୋକଟି ତା' ଭିତରେ ଘରର ଛୋଟମୋଟ କାମ ସବୁ କରୁଥାଏ । ତା' ସହିତ ସେମାନଙ୍କ ସହ ଗପସପ ବି କରୁଥାଏ । ଗପସପର ପ୍ରସଙ୍ଗ କ'ଣ ? କାହା ଘରେ କ'ଣ ରନ୍ଧା ହେଲା, କିଏ କେତେବେଳେ ଖାଇଲା, କା'ର ପତି କେତେବେଳେ କାମରୁ ଫେରିଲା, ଏମିତି ସବୁ । କିଏ କହୁଥାଏ, ଦୁଇଦିନ ହେଲା ତା'ର ବର ତା' ଉପରେ ନାରାଜ । ଭଲ କରି କଥା କହୁନି । କାରଣ ହେଲା ଯେ ତିନି ଚାରିଦିନପାଇଁ ସେ ପତିର ମନ ଜାଣି ସାଙ୍ଗରେ ଶୋଇ ପାରିବନି । ହେଲେ ପତିର ଧୈର୍ଯ୍ୟ ରହୁନି । ଗପସପ ମଝିରେ କିଏ ସାବତ ମା'କୁ କହେ, ''ତୁ ଆମ ସାଙ୍ଗରେ ଆସି ବସୁନୁ ? ଆମେ ଗପିବାକୁ ତୋ ଘରକୁ ଆସିଛୁ ଆଉ ସଦାବେଳେ ତୁ କାମରେ ବ୍ୟସ୍ତ । ଆମକୁ ସଫା ସଫା ମନା କରି ଦିଅନ୍ତୁ ହେଲେ ଆମେ ଆସିବା ବନ୍ଦ କରିଦିଅନ୍ତୁ ।'' ସେ ହସିହସି କହେ, ''ନା, ଦିଦି, ଏମିତି କଥା ତୁଣ୍ଡରେ ଧରିବନି । ମୋ ଘରକୁ ଆସିବନି କେମିତି ଯେ ? କହୁନ, କଥା କ'ଣ ? ବସିଯିବି ଯଦି ବସିଥିବି ଖାଲି । ମୁଁ ଶୁଣୁନି କି ସବୁକଥା ।'' କଥା କଥାରେ ଜଣେ କେହି ଆଉ ଜଣକୁ କହେ, ''ମୋ ମୁଣ୍ଡ ଟିକେ ଦେଖିଲୁ ।'' ତେଣିକି ଜଣେ ଅନ୍ୟର ମୁଣ୍ଡରୁ ଉକୁଣି ବାଛନ୍ତି । ସେହି ସ୍ତ୍ରୀଲୋକଙ୍କ ଭିତରେ ମୋର ଖୁଡ଼ୀ ବି ଥାଏ । ମୁଁ ବଡ଼ ଝିଅ ପରି ଖମ୍ବକୁ ପିଠିକରି ସେମାନଙ୍କ କଥା ଶୁଣେ । ହଠାତ୍ କେହି ପାଟି କରେ, ''ଏ ଟୋକୀ, ତୁ ସେଠି କ'ଣ କରୁଛୁ ? ବଡ଼ମାନଙ୍କ କଥା ପାଣିଭଳି ଢୋକି ଯାଉଛୁ ।'' ଆଉ କେହି ଦୟା ଦେଖାଇ କହେ, ''ନା ନା, ଥାଉ ସେ । ବସିଛି ତ ।'' କେହି ପୁଣି ଖୁଡ଼ୀକୁ ପଚାରେ, ''ଯେ ପରା ତୁମ ଦେଢ଼ଶୁରର ଝିଅ । ତା' ମା ପିଲାଙ୍କୁ ଛାଡ଼ି ଚାଲିଗଲା ପରା ? ଆହା, ଏତେ ସାନ ସାନ ପିଲାଙ୍କୁ ଡାହାଣୀ ଛାଡ଼ି ଚାଲିଗଲା କେମିତି ଯେ ? ଟିକିଏ ହେଲେ ଚିନ୍ତା କଲାନି, ତା' ଗଲା ପରେ ପିଲାଙ୍କର କ'ଣ ହେବ ?'' ମତେ ନେଇ ଏ ଭଳି କଥା ସବୁ ହେବାର ଦେଖି ଖୁଡ଼ୀ ସେମାନଙ୍କୁ ଚୁପ୍ ରହିବାକୁ ଇସାରାରେ କହେ, ନୋହିଲେ ଛୁଆଟି କାନ୍ଦିବ । ମୁଁ ଆଉ ସେଠି ରହେନି, ଘରକୁ ଚାଲି ଆସି କାନ୍ଦେ ।

ସାହିର ସ୍ତ୍ରୀମାନଙ୍କ ସେ ଗୁଲିଗପ ବେଳ ଓହରିବା ବେଳକୁ ଭାଙ୍ଗିଯାଏ । ଯାହା ଘରେ କାମ କରିବା ଯୋଗ୍ୟ ଝିଅ ଥାଆନ୍ତି, ତାକୁ କହନ୍ତି, ''ଏ ଶୀଘ୍ର ଶୀଘ୍ର ହାତ ଗୋଡ଼ ଧୋଇ ଭଗବାନଙ୍କୁ ସଂଧ୍ୟାଧୂପ ଦେ । ଲଣ୍ଠନର କାଚ ସଫା କରି ତେଲ ଭର୍ତ୍ତି କର ।'' ମୁଁ ଯେବେ ପିଇସୀ ବା କକା ଘରକୁ ଯାଏ, କେବେ ଖାଲି ବସେନି । ମତେ ଜଣା, ଉଦାସ ହୋଇ ତୁଛାଟାରେ ବସିରହିବାକୁ ଲୋକ ପସନ୍ଦ କରନ୍ତି ନାହିଁ । ବୋଧହୁଏ ଭାବନ୍ତି, ୟା'ର ବସି ବସି ଖାଇବା ଅଭ୍ୟାସ । କାମଦାମରେ ଆଗ୍ରହ ନାହିଁ । ହୁଏତ ଭାବୁଥିବେ, ଝିଅ ଖାଲି ବସିବ ଯଦି ମା'କୁ ମନେକରି କାନ୍ଦିବ । ସେମାନେ କାଳେ ଖରାପ ଭାବିବେ, ଏହି ଭୟରେ ମୁଁ ସଭିଙ୍କ ଅଇଁଠା ବାସନ ସବୁ ସଂଖୋଳି ଧୋଇଦିଏ । ଦୁଇଓଳି ଝାଡୁ କରେ । କେହି କିଛି କହିବାର ମଉକା ନପାଉ ।

ଲୋକ କହନ୍ତି, ଅନେକ ଚିନ୍ତା କଲେ ନିଦ ଆସେନା । କିନ୍ତୁ ମୁଁ ତ ଭାବି ଭାବି ମଲା ପରି ଶୋଇଯାଏ । ରାତିରେ ବି ଶୋଇପଡ଼ିଲି । ବଡ଼ି ସକାଳୁ ମୋର ଝିଅର ଡାକରେ ନିଦ ଭାଙ୍ଗିଲା । ଚଟାଣରେ ମା-ବାପା ଶୋଇଥିଲେ । ସେମାନେ ବି ନିଦରୁ ଉଠିଲେ । ମା'ର ସକାଳୁ ଉଠିବାର ଅଭ୍ୟାସ । ହେଲେ ଆଜି ତାକୁ ବି ଟିକିଏ ଆଗରୁ ଉଠିବାକୁ ପଡ଼ିଲା । ଝିଅକୁ ପଚାରିଲି, ''କ'ଣ ହେଲା ?'' ସେ କହିଲା, ''ତୁ କଲିକତା ଗଲେ କ୍ୟାମେରା ଆଣିବାକୁ ଭୁଲିବୁ ନାହିଁ ।'' ମୁଁ କହିଲି, ''ଆଚ୍ଛା ବାବା, ଆଣିବି । ତୁ କ'ଣ ଏଇଥିପାଇଁ ଶୋଇ ପାରୁନୁ ? ଆଉ ବିରକ୍ତ କରନା, ଯାଆ ଶୋଇପଡ଼ ।''

ଭାବୁଛି, ଆଜି କୁଆଡ଼େ ଯିବିନି । ଦେଖିବି ଶଙ୍କର ଆସୁଛି କି ନାହିଁ । ଖବର ତ ଦେଇଛି ତାକୁ ଆସିବା ଲାଗି । ହେଲେ ସଂଧ୍ୟାରେ ତ ଘରୁ ବାହାରିବାକୁ ପଡ଼ିବ । କଲିକତା ଫୋନ୍ କରିବାକୁ ପଡ଼ିବ । ସେଠି ଅନେକ ଲୋକ ମୋତେ ଅପେକ୍ଷା କରିଥିବେ । କିନ୍ତୁ ସେମାନେ ମତେ ଚିହ୍ନିବେ କେମିତି ? ସେମାନେ ମୋର ଫଟୋ ତ ଦେଖିଛନ୍ତି । ତଥାପି ଫଟୋର ଚେହେରା ଆଉ ଅସଲ ଚେହେରା କ'ଣ ସମାନ ? ଛାଡ଼, ଫୋନ୍‌ରେ ସବୁ ଜାଣି ହେଇଯିବ । ପୁଣି, ମୁଁ ବି ସେମାନଙ୍କ ଭିତରୁ କାହାକୁ ଆଗରୁ ଦେଖିନି । ତାତୁସ୍‌ଙ୍କ ପରି ଜେଠୁଙ୍କର କି ଦାଢ଼ି ! ମାତ୍ର ଦାଢ଼ି ତ କେତେ ଲୋକଙ୍କର ଥାଏ । ଛାଡ଼, ସେତେବେଳକୁ ଦେଖାଯିବ । ଆଗ ପହଞ୍ଚେ ତ ସେଠି !

କିଛି ବେଳ ଉତ୍ତାରୁ ଚଉକିରେ ବସି ମୁଁ ମୁଣ୍ଡ କୁଣ୍ଡାଉ ଥାଏ । ନିରୁଦାର ମଝିଆ ଝିଅ ଆସି କହିଲା, ''ଆଣ ପିଇସୀ, ମୁଁ କୁଣ୍ଡାଇ ଦେବି ।'' ମୁଣ୍ଡ କୁଣ୍ଡାଉ କୁଣ୍ଡାଉ ସେ ପଚାରିଲା, ''ପିଇସୀ ତୁମ ମୁଣ୍ଡରେ ଉକୁଣି ନାହାନ୍ତି ।'' ମୁଁ କହିଲି, ''ମୋ ମୁଣ୍ଡରେ ଉକୁଣି ଫୁକୁଣି ନାହାନ୍ତି । ତଥାପି ଟିକେ ହାତ ମାରି ଦେଖି ଦେ । ମତେ ଭଲ ଲାଗେ । ଆରାମରେ ଆଖିକୁ ନିଦ ଆସିଯାଏ । ଅନେକ ବେଳଯାଏ ସେ କେବେ ମୋର ମୁଣ୍ଡ ବାନ୍ଧିଲା ତ ଆଉ କେବେ ମୋର ମୁଣ୍ଡ ଖୋଲିଦେଲା ତ ପୁଣି କେବେ ପାନିଆରେ ମୁଣ୍ଡ କୁଣ୍ଡାଇଲା । ଏତିକି ବେଳକୁ ତା' ମା' ତାକୁ ଡାକିଲା, ''ଏ ଗଲୁ ତାଙ୍କ ଘରକୁ । ପଚାର, ଆଜି କିଛି ଅଧିକ କ୍ଷୀର ଦେଇପାରିବେ ଯଦି ତୋ ପିଇସୀପାଇଁ ଖିରି ତିଆରି କରିବା । ଶୀଘ୍ର ଯାଆ, ନୋହିଲେ କ୍ଷୀର ଆଉ କାହାକୁ ଦେଇଦେବେ ।'' ତା' କଥା ଶୁଣି ମୋର ଆଖିରେ ଲୁହ ଜକେଇ ଆସିଲା । ଏ ସବୁ କଥା ମୋ ବାପା ମା' ଚିନ୍ତା କରିବା କଥା ।

ନିରୁଦା'ର ପରିବାର ମୋର ରକ୍ତସମ୍ବନ୍ଧୀ ନୁହନ୍ତି, ତଥାପି ଆମଲାଗି କେତେ କ'ଣ କରୁଛନ୍ତି । କହନ୍ତି ନି, ଯାହା ପାଖରେ ପଇସା ନଥାଏ, ସେ ଉଦାର ହୁଏ । ଆଉ ପଇସାବାଲା ଅନୁଦାର । ତଥାପି ସବୁ ପଇସାବାଲାଙ୍କ ସ୍ୱଭାବ ଏକାଭଳି ନଥାଏ । ଯେମିତି ମୋର କଲିକତାର ଜେଠୁ । ତାଙ୍କ କଥା ପରେ କହିବି ।

ମୋର ମୁଣ୍ଡ ବାନ୍ଧୁବାନ୍ଧୁ ନିରୁଦା'ର ମଝିଆ ଝିଅ ମା'କୁ କହିଲା, ଟିକେ ରହ । ଅବିକା ପିଉସୀର ମୁଣ୍ଡ ବାନ୍ଧୁଛି । '' ତା' ମା' କହିଲା, ଆରେ ବାବା ଆଗ ତୁ ପଚାରି ଆସ, ଡେରି ହେଲେ ଆଉ କ୍ଷୀର ମିଳିବନି । ଆସିଲେ ମୁଣ୍ଡ ବାନ୍ଧିବୁନି ! ଆଗ ଯା' । ମୁଁ ବି ଜୋର୍ ଦେଇ କହିଲି, ଯା ମା, ଆଗ ପଚାରି ଆ । ମୁଁ ତ ଏଇଠି ବସିଛି । ଆଗ ମା' କଥା ଶୁଣ ।'' ସେ ଚାଲିଗଲା । ଆମ ଆସିବାରେ ପିଲାଏ ବହୁତ ଖୁସୀ । ସେମାନଙ୍କର ବି ଲୋଡ଼ା, କେହି ସେମାନଙ୍କୁ ସ୍ନେହ ଆଦର କରୁ; କଥାଭାଷା କରୁ । ମୁଁ ଥରେ ନ କହୁଣୁ ସେ ଚାଲିଗଲା । ମୁଁ ଚଉକିରେ ବସିବସି ଅଣ୍ଟା ସିଧା କଲି । ଏବେ କ'ଣ କରିବାକୁ ହେବ- ସେଇୟା ଭାବୁଥାଏ । ନଜର ଗଲା କାନ୍ଥକୁ ଆଉଜି ରଖା ହୋଇଥିବା ବାପାଙ୍କ ସାଇକେଲ୍ ଉପରକୁ । ଖୁସିରେ ମୁଁ ସାଇକେଲ୍ ଧରି ରାସ୍ତାକୁ ବାହାରିଲି । ନିରୁଦା'ର ସ୍ତ୍ରୀ, ବାପା, ମା' ସମସ୍ତେ ଆଶ୍ଚର୍ଯ୍ୟ ହୋଇ ମତେ ଅନାଇଥାନ୍ତି । ବାପା ପଚାରିଲେ, ''ତୁ ସାଇକେଲ୍ ନେଇ କ'ଣ କରିବୁ ?'' ମୁଁ କହିଲି, ''ସାଇକେଲ୍‌କୁ ନେଇ ଲୋକ କ'ଣ କରନ୍ତି ?'' ବାପା କହିଲେ, ''ସାଇକେଲ୍ ଚଢ଼ି ପୁରୁଷ ଲୋକ କାମ କରିବାକୁ ଯାଆନ୍ତି । ଆଉ କ'ଣ କରନ୍ତେ ? ମୁଁ କହିଲି, ''ମୁଁ ବି ସାଇକେଲ୍ ଚଢ଼ିବି । କାମକୁ ଯିବା ଲାଗି ନୁହେଁ, ଏମିତି ମଜାରେ ମଜାରେ ।'' ବାପା ଅବାକ୍ ରହିଗଲେ । ତାଙ୍କୁ ଜଣା ନଥିଲା ଯେ, ମୁଁ ସାଇକେଲ୍ ଚଢ଼ି ଜାଣେ । ତାଙ୍କ ଡର ଯେ ସାଇକେଲ୍‌ରୁ ମୁଁ ପଡ଼ିନଯାଏ ।

ବେବିକୁ ଜଣା ନାହିଁ, ସାଇକେଲ୍ ଚଢ଼ି ସେ ମଝିମାନାରୁ କେତେ ଦୂର ଚାଲି ଆସିଲାଣି । ଶ୍ୟାମପୁର ମୋଡ଼ର ମାର୍କେଟ୍ ବାହାରେ ଜଣେ ପରିଚିତ ଚେହେରା ଦେଖି ସେ ଅଟକି ଗଲା । ଅଜିତ୍‌କୁ ଚିହ୍ନିବାରେ ସେ ଭୁଲ୍ କରି ନପାରେ । ମାତ୍ର ସେ ବୁଝି ପାରିଲାନି, କୋଳରେ ଛୋଟ ଛୁଆଟିଏ ଧରି ଅଜିତ ପାଖରେ ଠିଆ ହୋଇଥିବା ଏହି ଝିଅଟି କିଏ । ସେ ସାଇକେଲ୍‌କୁ ଧୀର କଲା ଏବଂ ସେମାନଙ୍କ ସାମନାରେ ଯାଇ ଛିଡ଼ାହେଲା । ଅଜିତ୍ ହଠାତ୍ ବେବିକୁ ଦେଖି ପଚାରିଲା, ''ବେବି ତୁ ? ତୁ ଏଠି କେମିତି ?'' ବେବିକୁ ଦେଖି ତା' ମୁହଁ ଝାଉଁଳିଗଲା । ସେଇ ଝିଅକୁ ଦେଖାଇ କହିଲା, ତା' ମା' ଘର ଏଇଠି । ଯା'ପରେ ମୁଣ୍ଡ ସେପଟକୁ କରିଦେଲା । ବେବି ତା' ସହ କଥା ହେବାକୁ ଚାହୁଁଥିଲା । ହେଲେ ସେ କେବଳ ଅନ୍ୟ ଆଡ଼େ ଦେଖୁଥାଏ । ବେବି ପଚାରିଲା, ''ତା'ର ମା' ଘର ମାନେ ? ସେ କ'ଣ ତୋ ସ୍ତ୍ରୀ ?'' ମୁଣ୍ଡ ତଳକୁ କରି ଅଜିତ୍ ହୁଁ କଲା । ତୋ ଶ୍ୱଶୁର ଘର ଏଇଠି? ତୁ ବାହା ହେଲୁ, ପିଲା ବି ହେଲାଣି । ଥରେ ଖବର ଦେବାପାଇଁ ବି ଚେଷ୍ଟା କଲୁନି ?'' ବେବି ତା' ସ୍ତ୍ରୀ ଆଗରେ ଆହୁରି କିଛି କହି ନ ଦେଉ- ଏହି ଭୟରେ ବୋଧେ ଅଜିତ୍ ସ୍ତ୍ରୀକୁ କହିଲା, ''ଚାଲ୍ ଚାଲ୍, ଡେରି ହେଲାଣି ।'' ବେବି ବଦମାସି କରିବା ଉଦ୍ଦେଶ୍ୟରେ ହସି ହସି ତା' ହାତ ଧରି ପକାଇଲା । କହିଲା, ''ଆରେ କୁଆଡ଼େ ଯିବୁ, ଟିକେ ରହନା । କେତେ ଦିନ

ପରେ ତ ଭେଟ ହେଇଛି । କଥାବାର୍ତ୍ତା ନ କରି ଏମିତି ଚାଲିଯାଉଛୁ, ଏଇଟା କ'ଣ ଭଲ କଥା ?'' ବେବି ଅଜିତ୍‌ର ହାତ ଧରି କହୁଥାଏ, ଆଉ ସେପଟେ ଅଜିତ୍‌ର ସ୍ତ୍ରୀ ବେବି ଓ ଅଜିତ୍ ଉପରେ ରକ୍ତଚାଉଳ ଚୋବାଉଥାଏ । ତା'ର ରାଗ ଦେଖି ବେବି ଅଜିତ୍‌ର ହାତ ଛାଡ଼ିଦେଲା । ହସିହସି କହିଲା, ''ଏବେ ତୁ ମୋ'ଠାରୁ ରକ୍ଷାପାଇବାକୁ ଚାହୁଁଛୁ । ମାତ୍ର ଚାରି ପାଞ୍ଚ ବର୍ଷ ତଳେ ମୋ ପଛରେ ତୁ କେତେ ପଡ଼ିନଥିଲୁ ? ତୋ' ସହିତ ମୁଁ କଥାବାର୍ତ୍ତା କରିବାକୁ ଚାହୁଁ ନଥିଲି । ସେତେବେଳେ ତୁ' ମୋର ପଣତକାନି ଧରି ଟାଣୁଥିଲୁ । ମୁଁ ତତେ କେତେ ଗାଳି କରୁଥିଲି । ତୋର ମନେଅଛି । ମୁଁ ଘରୁ ବାହାରିଲେ ତୁ ମୋ ଆଗରେ ବାଟ ଓଗାଳି ଠିଆ ହେଇଯାଉଥିଲୁ । ତୁ ଲୋକଙ୍କ ମାଡ଼ରୁ ରକ୍ଷାପାଇବୁ ବୋଲି ମୁଁ ଅନ୍ୟ ବାଟରେ ଯାଉଥିଲି । ହେଲେ ସେଠି ବି ତୁ ଆଗରୁ ପହଞ୍ଚି ମୋତେ ହଇରାଣ କରୁଥିଲୁ । ସେତେବେଳେ ତୁ ମୋ ପଛରେ ଏମିତି ପଡ଼ିଥିଲୁ ଯେ ଯାକୁ ତାକୁ କହି ବୁଲୁଥିଲୁ, ''ବେବିକୁ ନହେଲେ ଆଉ କାହାକୁ ବାହା ହେବିନି ।'' ଆଜି ତୁ ବାହା ହେଲୁଣି, ଅଥଚ ବେବିକୁ ଖବର ଟିକିଏ ବି ଦେଇ ପାରିଲୁନି ! କି ଆଶ୍ଚର୍ଯ୍ୟ ! ସେ ଯାହାହେଉ, ମୋ'ଠାରୁ ଏମିତି ପଳାଉଛୁ କାହିଁକି ? ଚାଲ୍ ନା, କେଉଁଠି ବସି ଖୁସିଗପ କରିବା । ତୋ ସ୍ତ୍ରୀ ଥିଲେ କ'ଣ ହେଲା ? ସେତେବେଳେ ତ କହୁଥିଲୁ ମୋତେ ଖୁବ୍ ଭଲପାଉ ବୋଲି । ଏବେ କ'ଣ ଭଲ ପାଉନା ? ଦୂରେଇ ରହିବାକୁ ଚାହୁଁଛୁ ?'' ଅଜିତ ତରିତରି ତା' ସ୍ତ୍ରୀ ଆଡ଼େ ଦେଖିଲା ଓ ଚାଲିଗଲା । ସେ ଯେତେବେଳେ ବେବିକୁ ରାଗ ଦେଖାଉଥାଏ, ବେବି ମଧ୍ୟ ଅଜିତ୍‌କୁ ଦାନ୍ତ ଦେଖାଇ ଚିଡ଼ାଇଲା । ମାର୍କେଟ୍‌ରେ ବୁଲିବୁଲି ସେମାନେ ଗୋଟିଏ ଦୋକାନରେ ଚା'ପିଇବାକୁ ବସିଥିଲେ । ବେବି ସେଠି ପହଞ୍ଚି ନିଜପାଇଁ ଚା'ର ବରାଦ କଲା ଏବଂ ସେମାନଙ୍କ ପାଖ ଟେବୁଲ୍‌ରେ ବସି ପଡ଼ିଲା । ଅଜିତ୍ ମୁହଁ ପଛକରି ଏମିତି ବସିଲା, ଯେମିତି ସେ ବେବିକୁ ଦେଖିନି । ବେବି ତା'ଆଡ଼ୁ କଥା ଆରମ୍ଭ କରି କହିଲା, 'ତୋ ପିଲା ଭାରି ସୁନ୍ଦର ହେଇଛି । ବିଲ୍‌କୁଲ୍ ତୋରି ପରି ।'' ସାନ ପିଲାର ନରମ ହାତକୁ ମା'କୁ ଶୁଣାଇବା ଭଳି ଛୁଇଁ କହିଲା, ''ତୋ' ବାପା ଆଗରୁ ଭାରି ବଦମାସି କରୁଥିଲା । ଏବେ ତ ବହୁତ ଭଲ ହେଇଗଲାଣି । ଠିକ୍ କହୁଛି ନା ।'' ପିଲା ସହିତ ବେବିର କଥା ହେବା ଦେଖି ଅଜିତ୍‌ର ସ୍ତ୍ରୀ ପିଲାକୁ ନେଇ ଦୋକାନରୁ ବାହାରିଗଲା । ବେବି ହସି ହସି ଅଜିତ୍‌କୁ କହିଲା, ''ତାକୁ ଯିବାକୁ ଦେ । ଏବେ ତୁ ମୋ ସହିତ କଥାବାର୍ତ୍ତା କରିବୁ ନା ତୁ ବି ତୋ ସ୍ତ୍ରୀର ପଛେପଛେ ଚାଲିଯିବୁ ।'' ବେବିର କଥା ନସରୁଣୁ ଅଜିତ୍ ମଧ୍ୟ ଚୁପ୍‌ଚାପ୍ ସେଠୁ ବାହାରିଗଲା । ବେବି ତାକୁ ଆଉ କିଛି କହିଲା ନାହିଁ । ମନେ ମନେ ତା'ର ସୁଖ ମନାସିଲା । ଘରକୁ ଫେରିବା ବାଟରେ ବେବି ଭାବୁଥିଲା, ଆଜି ଅଜିତ୍‌କୁ ଏତେ କଥା କହିଲା ଯେ ତା' ସ୍ତ୍ରୀ ଘରେ ନପହଞ୍ଚୁଣୁ ତା' ଅବସ୍ଥା ଖରାପ କରିଦେବ ।

ମୁଁ ସାହିର ଗୋଟାଏ କୋଣରୁ ଆର କୋଣ ଯାଏ ସାଇକେଲ୍ ଚଢ଼ି ଯେତେବେଳେ ଘରକୁ ଫେରିଲି, ବାପା କହିଲେ, ''ବେଟା ତୁ ତ କେତେ ଡରକୁଳା ଥିଲୁ । ଏତେ ଶୀଘ୍ର ଏମିତି ସାହସୀ ହେଲୁ କେମିତି ?'' ବାପାଙ୍କ ମୁହଁକୁ ଚାହିଁ ମୁଁ କେବଳ ହସିଦେଲି । ସତ କଥା । ତିନି ତିନିଟି ଛୁଆର ମା' ସାଇକେଲ୍ ଚଢ଼ିବା ଶିଖିଛି । ହେଲେ ବୁଢ଼ା ବୁଢ଼ାମାନେ ମୋଟର ଚଢ଼ିବା ଯଦି

ଶିଖିପାରିବେ, ତିନି ଛୁଆର ମା' ସାଇକେଲ୍ ବା କାହିଁକି ନ ଶିଖିବେ ଯେ ! ଏମିତିରେ ଦେଖିଲେ ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଅବଶ୍ୟ ମୁଁ ଏକା ବା କ'ଣ ଶିଖି'ପାରିଥା'ନ୍ତି ? ତାତୁସ୍ ପ୍ରତିଦିନ ଚିଡେଇ ଚିଡେଇ ମତେ ଶିଖିବାକୁ ବାଧ୍ୟ କଲେ । ପାର୍କରେ ମୁଁ ସାଇକେଲ୍‌ରେ ବସି ମୋର ଦଶ ବର୍ଷର ପୁଅକୁ ପଛରୁ କେରିଅର୍‌କୁ ଧରି ସାଇକେଲ୍ ସମ୍ଭାଳିବାକୁ କହେ । ଏତେ ସାନ ପିଲା ବା ସାଇକେଲ୍‌ର ଭାର ସମ୍ଭାଳିବ କେମିତି ? ସେ ଛାଡ଼ିଦିଏ ଓ ମୁଁ ତଳେ ପଡ଼ିଯାଏ । ରାସ୍ତାରେ ଲୋକେ ଏ ଦୃଶ୍ୟ ଦେଖି ହସନ୍ତି । ଥଟ୍ଟା କରନ୍ତି । ମୋର ପୁଅ ଲାଜରେ କହେ, ''ଯା ଯା, ତୋ' ଦ୍ୱାରା ହେବନି । ଘର ଘର ଯାଇ ଝାଡୁ ପୋଛା କର, ରନ୍ଧାବଢ଼ା କର ।'' ତାକୁ କହେ, ''ରହ ଟିକିଏ । ହେବନି କାହିଁକି ?'' ପୁଣି ସାଇକେଲ୍ ଚଢ଼େ । ଏଇମିତି କରି ଧୀରେଧୀରେ ମୁଁ ସାଇକେଲ୍ ଚଢ଼ା ଶିଖିଲି । ସେତେବେଳେ ଲୋକଙ୍କ ଟାହିଟାପରାରେ ଲଜ୍ଜିତ ହୋଇ ଛାଡ଼ିଦେଇଥିଲେ, କ'ଣ ଶିଖି ପାରିଥା'ନ୍ତି ! ଘରେ ତାତୁସ୍ ଗାଳି ନକରନ୍ତେ ଆଜି ମା' ବାପାଙ୍କୁ ବି ଅବାକ୍ କରି ପାରି ନଥା'ନ୍ତି ।

ଏବେ ଫେରିଥିଲି । ପୁଣି ସାଇକେଲ୍ ଧରି ବାହାରିଲି । ସକାଳୁ ଦୁଇପହର ଯାଏ ମୁଁ ଖୁସିରେ ସାହି ଯାକ ସାଇକେଲ୍‌ରେ ବୁଲୁଥାଏ । କେହି କହିବାକୁ ନାହାନ୍ତି । କାହାରି ତାଗିଦ୍ କରିବାର ନାହିଁ, କାହାରି ବନ୍ଧନ ନାହିଁ । ପିଲାଙ୍କ ଚିନ୍ତା ନାହିଁ । ସେମାନେ ବି ଖେଳିବାପାଇଁ ଖୋଲା ଜାଗା ଓ ସାଙ୍ଗସାଥୀ ପାଇ ମା'କୁ ଭୁଲିଯାଇଥା'ନ୍ତି ।

ଖାଇବା ବେଳକୁ ମୁଁ ଘରକୁ ଫେରିଲି । ସାଇକେଲ୍‌କୁ କାନ୍ଥକଡ଼ରେ ରଖି କ୍ଳାନ୍ତଶ୍ରାନ୍ତ ହୋଇ ଅଗଣାରେ ପଡ଼ିଥିବା ଏକ ଚଉକିରେ ବସିପଡ଼ିଲି । ନିରୁଦା'ର ସ୍ତ୍ରୀ ପନିକିରେ ଏକ ବଡ଼ ରୋହିମାଛ କାଟୁଥାଏ । ପଚାରିଲି, ''ଭାଉଜ, ମାଛ କେଉଁଠୁ ଆସିଲା ?'' କହିଲା, ''ତୋ ଦାଦା ଆଣିଲେ'' ବୋଧହୁଏ ଆଜି ବି ସମସ୍ତଙ୍କପାଇଁ ଭାଉଜ ରାନ୍ଧିବେ । କହିଲି, ''ମା'କୁ ମାଛ ରାନ୍ଧିବାକୁ କହ ଭାଉଜ। ସେ କହିଲା, '' ମା' ତିଆରି କରିବେ। ମୁଁ ତାଙ୍କ ପରି ରାନ୍ଧି ଜାଣେନା। ଖୁବ୍ ତେଲ ମସଲା ଦେଇ ସେ ଭଲକରି ରାନ୍ଧନ୍ତି ।'' ଭାବିଲି, ତୁମ ଘରେ ତେଲ ମସଲା ଥିଲେ ତ ତୁମେ ଭଲକରି ତିଆରି କରନ୍ତ । ନିରୁଦା'ର ସ୍ତ୍ରୀ କହିଲା, ତୁମେ ଗାଧୋଇବ ପରା । ପାଣି ଭର୍ତ୍ତି କରିଦେବି ?'' ତା ପାଇଁ ମନରେ ଦୟା ଆସିଲା । ଆଶ୍ଚର୍ଯ୍ୟ ହୋଇ ପଚାରିଲି, ''ମୋ ଗାଧୋଇବା ଲାଗି ତୁମେ ପାଣି ଭର୍ତ୍ତି କରିଦେବ ?'' ସେ କହିଲା, ''କ'ଣ ହେଲା ? ତୁମପାଇଁ ମୁଁ କ'ଣ ଏତିକି କରିପାରିବି ନାହିଁ ?'' ମୁଁ କହିଲି, ''କାହିଁକି, ମୁଁ କ'ଣ ଲାଟ୍‌ସାହେବ ହୋଇଛି ଯେ ମୋ ପାଇଁ ତୁମେ ପାଣି ଭର୍ତ୍ତି କରିଦେବ । ତା'ଠାରୁ ଭଲ ମୋର ବିଚରା ଦାଦାର ଖିଆଲ ରଖ ।'' ମୋ କଥା ଶୁଣି ସେ ପ୍ରୀତିଭରା ହସ ହସିଲା । ତା' ବଡ଼ ଝିଅ ଚୁଲି ଜଳାଉଥିଲା। ଆମ କଥା ଶୁଣି ଖୁସିରେ ଦୌଡ଼ିଆସି କହିଲା, ''ତାଙ୍କ ଘରେ ଜେନେରେଟର ଲଗେଇ କ୍ଷେତରେ ପାଣି ଦେଉଛନ୍ତି, ଚାଲ ଆମେ ସେଇଠି ଗାଧୋଇ ଆସିବା ।'' ମୁଁ କହିଲି, ''ଧେତ୍ ସେଠି କେମିତି ଗାଧୋଇ ହେବ ?'' ସେ କହିଲା, ''ଚାଲୁନ ଦେଖିବ। ସେଠି ଅନେକ ଲୋକ ଗାଧୋଉଥିବେ । ମୁଁ ତୁମକୁ ଟାକିଛି ।'' ମୁଁ ହସି ହସି କହିଲି, ''ମୋ ସହିତ ଗାଧୋଇବୁ ଯଦି ନଳକୂଅକୁ ଚାଲ୍ । ସେଠି ଗାଧୋଇବା ।''

ମୋର ତେଲ ସାବୁନ ଲଗେଇ ଗାଧୋଇବ ବୋଲି ବିଚାରୀ ଏ ଯାଏ ଅଗାଧୁଆ ରହିଛି । ତା'ପ୍ରତି ମନରେ ଦୟା ଆସିଲା ।

ମୋର ପିଲାଏ ତେଲ ସାବୁନ୍ ଲଗେଇ ଗାଧୋଉଥିଲେ, ତାଙ୍କ ପିଲାମାନେ ବିନା ତେଲ ସାବୁନ୍‌ରେ । ଦେହରୁ ମଇଳା ଛଡ଼େଇବାଲାଗି ସେମାନେ ପଥର ଘଷୁଥିଲେ । ମୋ ପାଖରୁ ସାବୁନ୍ ନେଇ ଗାଧୋଇବାକୁ ସେମାନେ ସଂକୋଚବୋଧ କଲେ । ମୁଁ ସାବୁନ୍ କଥା ପଚାରିବାରୁ ତାଙ୍କ ବଡ଼ଝିଅ କହିଲା, ''ପିଇସୀ, ସାବୁନ୍ ସରିଯାଇଛି । ରହ ବାପାଙ୍କୁ କହୁଛି ମୁଁ । ସେ ତା' ବାପାଙ୍କ ପାଖକୁ ଯିବାକୁ ବସିଲାରୁ ତାକୁ କଡ଼ା ଗଳାରେ କହିଲି,''ବାପାଙ୍କୁ କହିବା କ'ଣ ଦରକାର ? ସାବୁନ ଅଛି ମୋ' ପାଖରେ, ନେ ଲଗା ।''

ଗାଧୋଇସାରି ମୁଁ ଅଗଣାରେ ବସିଛି, ମନେପଡ଼ିଲା ତାତୁସ୍ ଦେଇଥିବା ଡାଏରୀ କଥା । ସବୁ ଘଟଣା ସେଠି ଲେଖିବାପାଇଁ ସେ କହିଥିଲେ । ତାଙ୍କ ନିର୍ଦ୍ଦେଶମତେ ଏଠୁ ଫେରିଲା ପରେ ତାଙ୍କୁ ଡାଏରୀ ଦେଖାଇବି । ସେ କିଛି ଶୁଣିବେନି । ମୋ ଆସିବା ତିନି ଦିନ ହେଇଗଲାଣି । ଏଯାଏ ବାହାର କରିନି । ପିଲାଙ୍କ ଭାଗାଦୌଡ଼ିରେ କ'ଣ କିଛି ଲେଖି ହେବ ? ଯେତେବେଳେ ଲେଖି ହୁଅନ୍ତା, ମୁଁ ନିଜେ ସାହିକୁ ସାହି ବୁଲି ଯାକୁ ତାକୁ ଭେଟି କଥାବାର୍ତ୍ତା କରୁଛି । ସେଇଥିରେ ସବୁତକ ସମୟ ଯାଉଛି । ମତେ ଚୁପ୍‌ଚାପ୍ ବସିଥିବାର ଦେଖି ବାପା କହିଲେ, ''କ'ଣ ହେଲାରେ ମା । କ'ଣ ଭାବୁଛୁ ?'' କହିଲି, ନା କିଛି ଚିନ୍ତା ନୁହେଁ ।'' ବାପା କହିଲେ,''ନା, କିଛି ତ ଭାବୁଛୁ, ମତେ କହିବୁ ନାହିଁ ?'' ଭାବିଲି, ବାପାଙ୍କୁ କହିଲେ ବା ସେ କ'ଣ ବୁଝିବେ । ତଥାପି କହିଲି, ''ତିନି ଦିନ ମୋର ବେକାରରେ ନଷ୍ଟ ହେଇଗଲା । ତାତୁସ୍ ଡାଏରୀଟିଏ ଦେଇ କହିଥିଲେ, ''ସେଠି ହିହି ହା ହା କରି ସମୟ ନଷ୍ଟ କରିବୁନି । ଡାଏରୀରେ କିଛିକିଛି ଲେଖୁଥିବୁ ।'' ଆଜିଯାଏଁ ମୁଁ ଲେଖିବାପାଇଁ ଚେଷ୍ଟା ବି କରିନି । ବାପା ସାମାନ୍ୟ ଚିନ୍ତା କରି କହିଲେ, ''ତୁ ଏବେ କ'ଣ କରୁଛୁ ? ଯା' ଘରେ ବସି ତୋ' କାମ କର । ଭିତରକୁ କେହି ଯିବେନି ।'' ବାପା ବୁଝିପାରୁଥିଲେ ଯେ ପିଲାମାନଙ୍କ ଅଶିକ୍ଷିତ ରହିବା ପଛରେ ସେ ହିଁ ଦାୟୀ । ସେଇଥିପାଇଁ ଆଜି ସେ କହୁଛନ୍ତି, ତୁ ନିଜ କାମ କର । କେହି ଡିଷ୍ଟର୍ବ କରିବେନି । ହେଲେ ତା' କି ସମ୍ଭବ ? କାମ ଥିଲେ ବି କେହି ଘରଭିତରକୁ ଆସିପାରିବେନି । ଦେଖାଯାଉ ।

ଖାଇପିଇ ସାରି ଆମେ ସବୁ ଅଗଣାରେ ବସି କଥା ଗପୁଥାଉଁ । ମୋ ଝିଅ ନିରୁଦା'ର ସାନ ଝିଅ ସାଙ୍ଗରେ ଖେଳୁଥାଏ । ସେ ବର ହେଇଥାଏ ଓ ଆର ଝିଅଟି ବୋହୂ । ବର କାମକୁ ଯାଏ, ବୋହୂ ଘରେ ରନ୍ଧାବଢ଼ା କରେ । କାମରୁ ଫେରିବା ପରେ ବରକୁ ବୋହୂ ପଙ୍ଖା କରିଦିଏ । ଗଛର ପତ୍ରଟିଏ ଛିଣ୍ଡେଇ ତାକୁ ସେମାନେ ପଙ୍ଖା କରିଛନ୍ତି । ଖିଆପିଆ ସାରି ପତି-ପତ୍ନୀ ଗାମୁଛାକୁ ବିଛେଇ ବିଛଣା କରିଛନ୍ତି । ସେଠି ପୁଣି ଶୋଇଲେ । ଶୋଇଲା ବେଳେ ଜଣେ ଅନ୍ୟର ଗୋଡ଼ ଉପରେ ଗୋଡ଼ ରଖିଛନ୍ତି । ଏହି ସମୟରେ ପଡ଼ାର ଦୁଇ ଜଣ ସ୍ତ୍ରୀ ଲୋକ ''ଆମେ ଅଜାର ଝିଅକୁ ଦେଖିବାକୁ ଆସିଛୁ'' ବୋଲି କହି ଘରକୁ ଆସିଲେ । ବାପା ମୋ ଆଡ଼କୁ ଇସାରା କରି କହିଲେ, ''ଇଏ ମୋର ଝିଅ, ଦେଖ ।'' ମୁଁ ସେମାନଙ୍କୁ ବସିବାକୁ କହିଲି । ନିରୁଦା'ର ବାରଣ୍ଡାରୁ

ମା' ବଡ଼ପାଟିରେ କହିଲା, ସେମାନେ ଥରେ ଆସି ଫେରିଯାଇଥିଲେ । ସକାଳେ ତୁ ନଥିଲୁ । ସାଇକେଲ୍‌ରେ ବୁଲିବାକୁ ଚାଲି ଯାଇଥିଲୁ ।'' କଥାବାର୍ତ୍ତା ଛଳରେ ସେମାନେ କହିଲେ, ''ଦାଦା ତ କହୁଥିଲା, ତୋର ବର ଅଛି । ତା'ହେଲେ ହାତର ଶଙ୍ଖା ଆଉ ମଥାର ସିନ୍ଦୂର କୁଆଡ଼େ ?'' ମୁଁ କୌଣସି ଉତ୍ତର ନଦେଇ ଭାବିଲି, ''ଝିଅମାନେ ତ ପତିର ମଙ୍ଗଳପାଇଁ ଶଙ୍ଖାସିନ୍ଦୂର ବ୍ୟବହାର କରନ୍ତି, ପୁରୁଷମାନେ ସ୍ତ୍ରୀର ମଙ୍ଗଳପାଇଁ କ'ଣ କରନ୍ତି ? ଏକଥା ମନକୁ ଆସିବାରୁ ମନେମନେ ମୁଁ ହସିଲି । କିଛି ସମୟର ନୀରବତା ପରେ ସ୍ତ୍ରୀ ଲୋକ ଦୁଇଜଣ ଯିବାକୁ ବାହାରିଲେ । ବାପା ସେମାନଙ୍କୁ କହିଲେ, ''ଚାଲି ଯାଉଛ ନା କ'ଣ ? ବସ ।'' ଜଣେ ଉତ୍ତର ଦେଲା, ''ଆମେ ଚାଲିଲୁ । ପିଇସୀକୁ ନେଇ ଆମ ଘରକୁ ଆସ ।'' ମତେ ପୁଣି ଅଲଗା କରି କହିଲେ, ''ପିଇସୀ, ନିଶ୍ଚୟ ଆସିବ ।'' ମୁଁ ସମ୍ମତି ଦେଲି ।

ସେମାନଙ୍କ ଯିବା ପରେ ଜଣେ ଛବିଶ-ସତେଇଶ ବର୍ଷ ବୟସର ଶ୍ୟାମଳ ରଂଗର ହୃଷ୍ଟପୁଷ୍ଟ ଯୁବକ ଆସିଲା । ସେ ଜଣେ ହୋମିଓପାଥି ଡାକ୍ତର । ବାପାଙ୍କୁ ପଚାରିଲା, ''ଦାଦା, ଇଏ କ'ଣ ପିଇସୀ ?'' ମତେ ସେ ନମସ୍କାର ହେଲା । ବାପା ହଁ କହି ଘରଭିତରୁ 'ଆଲୋ ଆନ୍ଧାରି' ପୁସ୍ତକଟିକୁ ନେଇ ଆସିଲେ ଏବଂ ତା' ହାତରେ ଦେଲେ । ସେ ଭଲ ଭାବେ ହିନ୍ଦୀ ପଢ଼ିପାରେ । ବାପା ତାକୁ କହିଲେ, ''ପଢ଼ ଆଉ ମତେ ଟିକେ ଶୁଣା ।'' ବାପାଙ୍କ ଏଭଳି ଆଚରଣ ଦେଖି ମା' ମୋ ଆଡ଼କୁ ଅନାଇଲା । ମୁଁ ହସିଦେବାରୁ ସେ ବି ହସିଲା । ଯୁବକ ଜଣକ ବହିର ପ୍ରଥମ ପୃଷ୍ଠାରୁ ପଢ଼ା ଆରମ୍ଭ କଲା । ବାପା ଚୁପ୍‌ଚାପ୍ ସିଗାରେଟ୍ ପିଉଥା'ନ୍ତି । ଦୁଇ ତିନିପୃଷ୍ଠା ପଢ଼ି ସାରିବା ପରେ ଯୁବକ ଜଣକ ବାପାଙ୍କୁ ପଚାରିଲା, ''କୋଉଠୁ ପାଇଲ ଏ ବହି ?'' ଏ ବେବି ହାଲ୍‌ଦାର୍ କିଏ ?'' ସିଗାରେଟ୍‌ର ଧୂଆଁ ଉପରକୁ ଛାଡ଼ି ବାପା କହିଲେ, ''ବହିଟି ମୋର ଝିଅର ଲେଖା । ଆଶ୍ଚର୍ଯ୍ୟ ଚକିତ ହୋଇ ଯୁବକ ପଚାରିଲା, ''ପିଇସୀ, ତୁମେ ଲେଖିଛ ଏ ବହି ?'' ମୁଁ କହିଲି, ''ହଁ କ'ଣ ହେଲା ?'' ଏହା ଶୁଣି ସେ ବାଃ କହି ବହିଟିକୁ ଧରି ହସିଲା । ଗୋଡ଼ ହଲାଇଲା, ତା'ର ପୂରା ଶରୀର ଦୋହଲୁଥାଏ । ବାପା ତାକୁ ପଚାରିଲେ, ''ଚୁପ୍ ହେଇଗଲୁ ଯେ ? ପଢ଼ି କରି ମତେ କିଛି ଶୁଣାନା ।'' ତା' ସତ୍ତ୍ୱେ ସେ ଚୁପ୍‌ଚାପ୍ ମୁଣ୍ଡ ହଲାଉଥାଏ । ମନେହେଲା, ସେ କିଛି ଚିନ୍ତା କରୁଛି । କ'ଣ କହିବ ଚିନ୍ତା କରିପାରୁନି ଯେମିତି । ଶେଷରେ ବାପାଙ୍କୁ କହିଲା, ''ଛାଡ଼ ସେ କଥା । ଶୁଣିଲେ କଷ୍ଟ ହେବ ।'' ବାପା ତଥାପି ତାକୁ ପଢ଼ି ଶୁଣାଇବାକୁ ଜିଦ୍ କରୁଥା'ନ୍ତି । ଜୋର୍‌ରେ ମୁଁ ତାଙ୍କୁ କହିଲି, ''ସେ କ'ଣ ଶୁଣାଇବ । ସେ ତ କହୁଛି ଶୁଣିଲେ ତୁମକୁ କଷ୍ଟ ଲାଗିବ । ତୁମେ ମୋ କଥା ଶୁଣ ।'' ବାପା ହସି ହସି କହିଲେ, ''ତା'ହେଲେ ତୁ ଶୁଣା ।'' ସେ ମୋ ପାଖକୁ ଆସିଲେ । ମୁଁ କହିଲି, ''ଶୁଣିଲେ ତୁମ ହସ ବନ୍ଦ ହେଇଯିବ ।'' ଯୁବକ କହିଲା, ''ତୁମେ ଶୁଣନି ଦାଦା । ଶୁଣିଲେ ସତରେ ବହୁତ କଷ୍ଟପାଇବ । ଆଉ ଜଣକର ମନରେ କଷ୍ଟ ଦେବାକୁ କେହି କ'ଣ ଭଲପାଏ ?'' ବାପା କହିଲେ, ''କଷ୍ଟ ହେଲେ ହେଉ । କ'ଣ ଜାଣିବାପାଇଁ ଇଚ୍ଛା ହେବନି ମୋ ଝିଅ ବହିରେ କ'ଣ ଲେଖିଛି, କେମିତି ଲେଖିଛି ।'' ତାଙ୍କ କଥା ଶୁଣି ମୁଁ ସାମାନ୍ୟ ନରମିଗଲି । କହିଲି, ''ଧୀରେଧୀରେ ତୁମେ ସବୁ ଶୁଣିବ । ଶୁଣିଲେ ତୁମେ କ'ଣ ଭାବିବ ଜାଣିନି । ଏ ବହିରେ ଆରମ୍ଭରୁ

ଶେଷଯାଏ ତୁମ ବିରୁଦ୍ଧରେ ଲେଖାଯାଇଛି ।'' ବାପା କହିଲେ, ''ମୋ ବିରୁଦ୍ଧରେ ଲେଖିଲୁ ତ କ'ଣ ହେଲା ? ତୁ ମୋର ଝିଅ । ତୁ ଆହୁରି ଲେଖ । ଏମିତି ଲେଖ ଯେ କାହାରି ବାପ ମୋ ଭଳିଆ ନହେଉ । ମୋର ବିରୁଦ୍ଧରେ ହେଉ ବା ଆଉ କାହା ବିରୁଦ୍ଧରେ, ତୁ ମନ ଭରି ଲେଖ ।''

ବାପା କେଉଁ ଦିନରୁ ଏତେ ଭଲ, ଏତେ ସରଳ ହୋଇଗଲେ ଯେ ! ତାଙ୍କ କଥା ଶୁଣି ମୋ ଆଖି ଲୁହରେ ଜକେଇ ଆସିଲା । ଆଖିର ଲୁହ ଲୁଚାଇବାଲାଗି ମୁଁ ଏପଟ ସେପଟ ହେଲି ଏବଂ ପୁଣି ନିଜ ସ୍ଥାନରେ ବସିପଡ଼ିଲି । ସେହି ଡାକ୍ତର ଯୁବକ, ''ମୁଁ ଯାଏ, ଚେମ୍ବର ଖୋଲିବାକୁ ହେବ'' କହି ଯିବାକୁ ବାହାରିଲା । ବାପା ନିରାଶ ହୋଇ କହିଲେ, ''ତୁ ପଢ଼ି ଶୁଣାଇଲୁନି !'' ସେ କହିଲା, ''ଠିକ୍ ଅଛି । ସର୍ତ୍ତ ରହିଲା, ଆଉ ଦିନେ ସମୟ ବାହାର କରି ଆସିବି ଆଉ ତୁମକୁ ନିଶ୍ଚୟ ବହିଟି ପଢ଼ି ଶୁଣାଇବି ।'' ବାପା ଉଦାସ ଚେହେରା ନେଇ ଚଉକିରେ ବସି ଏପଟ ସେପଟ ହେଲେ । ଯିବା ବେଳେ ଡାକ୍ତର କହିଲା, ''ପିଇସୀ, ସଂଧ୍ୟାରେ ମୋ ଚେମ୍ବରକୁ ଆସିପାରିବ ? ତୁମକୁ କେତୋଟି କଥା କହିବାର ଅଛି ।'' ମୁଁ ପଚାରିଲି, ''ମୋ ସାଙ୍ଗରେ କଥା ଅଛି ?'' ଭାବିଲି, ତତେ ତ ଏଯାଏ ଭଲ କରି ଚିହ୍ନିନି ମୁଁ । ମୋ ସାଙ୍ଗରେ ପୁଣି ତୋର କାମ କ'ଣ ? ତଥାପି କହିଲି, ''ହଁ ଆସିବି । ହେଲେ ତୁମ ଚାମ୍ବର ତ ମୁଁ ଦେଖିନି ।'' ସେ କହିଲା,''ରାସ୍ତା କଡ଼େ ଅଛି । କୋଉ ଛୁଆକୁ ପଚାରିଲେ ବି କହିଦେବ ।'' ତା' ଯିବା ପରେ ନିରୁଦା' କହିଲା, ''ବଡ଼ି ଭୋର୍‌ରୁ ତତେ ପରା କଲିକତା ଯିବାର ଅଛି । ଯା' ଟିକେ ଆରାମ କର ।'' ତା' ସ୍ତ୍ରୀ ତା' ଉପରେ ରାଗିଯାଇ କହିଲା, ''ଏବେ ଆଉ କ'ଣ ଶୋଇବାଲାଗି ସମୟ ଅଛି ? ଦେହ ଖରାପ ହେବନି ?''

କିଛି ସମୟ ପରେ ନିରୁଦା'କୁ କହିଲି, ''ମତେ ତ ଫୋନ୍‌ପାଇଁ ଥରେ ଯିବାକୁ ହେବ ।'' ସେ କହିଲା, ''ହଁ, ଠିକ୍ ମନେ ପକେଇଲୁ । ତତେ ସେଠିକି ନେଇଯିବାର ଅଛି ନା ! ଠିକ୍ ସମୟରେ ତୋତେ ନେଇଯିବି ।'' ଆଜି ଯେମିତି ହେଉ, କଲିକତାକୁ ଫୋନ୍ କରିବାକୁ ହେବ । ଜେଠୁ ଆଉ ସଂଜୟ ଦା' ମୋ ଫୋନ୍‌କୁ ଅପେକ୍ଷା କରିଥିବେ । ଠିକ୍ ସମୟରେ ପହଞ୍ଚି ନପାରିଲେ ସମସ୍ତେ ବାଟ ଚାହିଁ ବସିଥିବେ । କେଜାଣି ସେମାନଙ୍କୁ ଚିହ୍ନି ପାରିବି ନା ନାହିଁ ?

ସଂଧ୍ୟା ହେଲା । ଶଙ୍କର ଆସିବାର ଥିଲା, ଆସିଲାନି । କାଲି ଆସେ ଯଦି ମୁଁ ତ ଏଠି ନଥିବି । ଅବଶ୍ୟ ପିଲାଙ୍କୁ ଭେଟିକି ଯିବ । ସବୁ କଥା ଚିନ୍ତା କରୁକରୁ ମୁଁ ଯୋତା ପିନ୍ଧିଲି ଆଉ ବାହାରକୁ ବାହାରିଲି । ମା' ପଚାରିଲା, ''କୁଆଡ଼େ ବାହାରିଲୁ ?'' ମୁଁ କହିଲି, '' ସେ ଡାକ୍ତରଖାନା ଟୋକା କହିନଥିଲା ? ଦେଖେ, କ'ଣ କହିବାକୁ ଡାକିଛି ସେ । ବୟସରେ ଛୋଟ ହେଉ ବା ସମବୟସ୍କ, ଯଦି କେହି ପିଇସୀମାନ୍ୟ କରୁଛି, ତାକୁ ସାନ ପିଲା ମନେ କରି କଥା କହିବାକୁ ହେବ । ମୁଁ ଯାଉଥିବା ଦେଖି ମା' କହିଲା, ''ଟିକେ ରହ, ମୁଁ ବି ତୋ ସାଙ୍ଗରେ ଯିବି । କପଡ଼ା ବଦଳେଇ ଦିଏ ।'' ମା ମୋ ସାଙ୍ଗରେ କାହିଁକି ଯିବାକୁ ବାହାରିଛି, ସେ କଥା ମୁଁ ବୁଝି ପାରିଲି । ସେ ଟୋକା ମତେ ଆସିବାକୁ କହିଛି ମାନେ ତା'ର କିଛି ମନ୍ଦ ଅର୍ଥ ବି ଥାଇପାରେ । ଅଥବା ମା' ମୋ ସହିତ ବାହାରୁ ବୁଲି ଆସିବାକୁ ଚାହୁଁଥିବ ! ମୁଁ ତାକୁ ଦେଇଥିବା ଶାଢ଼ି ପିନ୍ଧି ମା' ବାହାରିଲା । ଅର୍ଥାତ୍ ତାର ନୂଆ ଶାଢ଼ି ପିନ୍ଧିବାକୁ ମନ । ସେଥିପାଇଁ ଏଭଳି ଅବସରକୁ ବା ସେ ହାତଛଡ଼ା କରିବ

କେମିତି ?'' ଘରୁ ରାସ୍ତାକୁ ମା' ଦିନରେ କେତେଥର ବାହାରେ । ହେଲେ ତା'ପାଇଁ ଶାଢ଼ି ବଦଳେଇବା କଥା କେବେ ଚିନ୍ତା କରି ନଥିବ । ଛାଡ଼ ।

ମା' ମତେ ସେହି ଯୁବକର ଚେମ୍ବରକୁ ନେଇଗଲା । ଏକା ବସିଥାଏ ସେ । ମା'କୁ ଦେଖି ସେ ହସି ହସି କହିଲା, ''ଆରେ ଆଈ ବି ଆସିଛନ୍ତି । ଆସ, ବସ ।'' ପୁଣି ''ପିଇସୀ ବସ'' କହି ଚଉକିକୁ ଆଗକୁ ବଢ଼ାଇଦେଲା । ଏପଟ-ସେପଟ ଦୁଇ-ଚାରି ପଦ କଥାବାର୍ତ୍ତା କରିବା ପରେ ଆମେ ସାହିତ୍ୟ ଚର୍ଚ୍ଚାରେ ପହଞ୍ଚିଗଲୁ । ଆଶାପର୍ଣ୍ଣା ଦେବୀ, ମହାଶ୍ୱେତା ଦେବୀ ଆଉ ତାଙ୍କ ଆଗରୁ ରବି ଠାକୁର, ଶରତ ବାବୁଙ୍କ ଉପରେ ଆଲୋଚନା ଚାଲିଲା । ତା'ପରେ ଯେତେବେଳେ ମୋ ବହିକୁ ନେଇ ଚର୍ଚ୍ଚା ଆରମ୍ଭ ହେଲା, ବିରକ୍ତିରେ ମୁହଁ ବିକୃତ କରି ମା' କହିଲା, 'ତୁମେମାନେ ତମ କଥା ହୁଅ । ମୁଁ ତ ବାବା ଘରକୁ ଯାଉଛି । ଡାକ୍ତର ଟୋକା କହିଲା, ''କ'ଣ ହେଲା ଆଈ, ଯାଉଛ କାହିଁକି ? ଟିକେ ବସୁନ ।'' ମୁଁ ଡାକ୍ତରକୁ କହିଲି, ଯିବାକୁ ଦିଅ ତାକୁ । ଏଭଳି କଥା ତା'ର ପସନ୍ଦ ନୁହେଁ । ପୁଣି ମାଆକୁ କହିଲି, ''ତୁ ଯାଆ, ବାବା ଆଉ ପିଲାଙ୍କୁ କହିଦେବୁ, ମୁଁ ଏଇଠି ବସିଛି ।'' ମା' ଯିବା ପରେ ମୁଁ ତାଙ୍କୁ ପଚାରିଲି, ''ଆଚ୍ଛା କହିଲ, ମୋ ବହି ତୁମକୁ କେମିତି ଲାଗିଲା । ମୋର କହିବା ଅର୍ଥ ପଢ଼ିବା ଭଳି ହୋଇଛି ତ !'' ସେ କହିଲା, ''ଆରେ ତୁମେ ତ ଜଣେ ଲେଖିକା ।'' ମୁଁ କହିଲି, ''ମୁଁ କୋଉ ଲେଖିକା ଯେ ! ସାହିତ୍ୟ କଥା ମୁଁ ବା କ'ଣ ଜାଣିଛି ? ସେ କହିଲା, ''ଆରେ ଏତେ ବଡ଼ ବଡ଼ ଲେଖକଙ୍କ କଥା ତୁମେ କହିଲ । ନିଜେ ବି କେତେ ସୁନ୍ଦର ବହିଟିଏ ଲେଖିଛ ! ଆଉ କହୁଛ, ସାହିତ୍ୟରେ ତୁମର ଜ୍ଞାନ ନାହିଁ । ଆଚ୍ଛା କହିଲ, ଆଉ କ'ଣ ଲେଖା ଅଛି ତୁମର ? ସାମାନ୍ୟ ଆଶ୍ଚର୍ଯ୍ୟର ସହିତ ହସିହସି କହିଲି, ''କ'ଣ ତୁମେ ଭାବୁଛ, ଯା ଆଗରୁ ବି ମୁଁ କିଛି ଲେଖିଛି ? ସେ କହିଲା, ''ହଁ ମତେ ତ ସେମିତି ଲାଗୁଛି । ପ୍ରଥମରୁ ତୁମେ ନିଶ୍ଚୟ କିଛି ଲେଖି ସାରିଛ ।'' ମୁଁ କହିଲି, ଆରେ ନା, ଯା ପୂର୍ବରୁ ପରା ଲେଖାପଢ଼ା କଥା ମତେ ଜଣା ନଥିଲା । ଏହା ମୋର ପ୍ରଥମ ବହି । ଏହା ପରେ ମୁଁ କିଛି ଲେଖି ପାରିବି କି ନା ତା' ବି ମୁଁ କହିପାରିବି ନାହିଁ । ଯା' ସତ୍ତ୍ୱେ ତା'ର ବିଶ୍ୱାସ ହେଉ ନଥିଲା । କହିଲା, ''ଏମିତି କେମିତି ହୋଇପାରିବ ? ହଠାତ୍ ଏକ ଉପନ୍ୟାସ ଲେଖି ଦେବ ଜଣେ ?'' କେଜାଣି କ'ଣ ଭାବୁଥିଲା ସେ, ପୁଣି କହିଲା, 'ତେବେ ତ ତୁମେ ତୁମ ପାଠକଙ୍କୁ ଅବାକ କରି ଦେଇଛ ! ତୁମ ପରିବାରରେ ଆଉ କିଏ କ'ଣ ଲେଖାପଢ଼ା କରନ୍ତି ?'' ମୁଁ କହିଲି, ''ଆରେ ବାବା ନା, କମ୍ ସେ କମ୍ ସେ କଥା ନା ମୁଁ ଦେଖିଛି ନା ଶୁଣିଛି ।'' ସେ କହିଲା, ''ଏଥିପାଇଁ ଦାଦୁ, ମାନେ ତୁମ ବାବା କେତେ ଖୁସୀ ଅଛନ୍ତି ! ଯେଉଁ କାମ ତାଙ୍କ ବଂଶରେ କେହି କରି ନାହାନ୍ତି, ତାହା ତୁମେ କରି ଦେଖାଇଲ ।'' ଟିକିଏ ଚୁପ୍ ରହି ସେ କହିଲା, '' ମୋର ବି ସାହିତ୍ୟରେ କିଛିକିଛି ଆଗ୍ରହ ଅଛି । କିନ୍ତୁ ସମୟ ନାହିଁ ।'' ମୁଁ କହିଲି, ହଁ, ଏହା ତ ତୁମକୁ ଦେଖିଲେ ହିଁ ଜଣାପଡୁଛି । କିନ୍ତୁ ଶୁଣିକି ମତେ ଆହୁରି ଭଲ ଲାଗିଲା । ଆଜିକାଲି କ'ଣ କରୁଛ ?'' ସେ କହିଲା, ଆଜିକାଲି ? ଗୃହ ମୁଁ ଦେଖୋଉଛି । ଏତିକି କହି ସେ ଶରତ ଚନ୍ଦ୍ର ରଚନାବଳୀର ପ୍ରଥମ ଓ ଦ୍ୱିତୀୟ ଭାଗ ବାହାରକରି ଟେବୁଲ୍ ଉପରେ ରଖିବାକୁ ଯାଉଥିଲା । ମୁଁ ତା' ହାତରୁ ବହିଗୁଡ଼ାକ ନେଇ କହିଲି, ତୁମେ କ'ଣପାଇଁ ଆଗରୁ ଏସବୁ

କହୁନାହଁ । ଏସବୁ ବହି ତମ ପାଖରେ ଅଛି ? ମୁଁ ତିନିଦିନ ଖାଲି ସମୟସବୁ ନଷ୍ଟ କରିଦେଲିଣି । ବହିଗୁଡ଼ିକ ଲେଉଟାଇ ଭାବିଲି, ପଢ଼ିବାପାଇଁ ଆଗରୁ ଯଦି ମିଳିଥା'ନ୍ତା କେତେ ଭଲ ଲାଗି ନଥା'ନ୍ତା !'' ସେ କହିଲା, ''ତୁମ ସାଙ୍ଗରେ ଆଜି ତ ପରିଚୟ ହେଲା । ମତେ ଜଣାଥିଲା ତୁମ ଆସିବା କଥା । ହେଲେ ତୁମ ଘରକୁ ଆସି ହେଲାନି । ଆଜି ଦୁଇପ୍ରହରେ ମୋ ବାବା ଯେତେବେଳେ ତୁମ କଥା କହିଲେ, ମୁଁ ଦେଖାକରିବାପାଇଁ ମନବଳେଇ ସାଙ୍ଗେସାଙ୍ଗେ ତୁମ ଘରେ ପହଞ୍ଚିଲି । ମୁଁ ତାଙ୍କୁ କହିଲି, ''ମୁଁ ଏବେ ଯାଉଛି । ଆଉ କେବେ ଫୁରସତ୍ ମିଳିଲେ ନିଶ୍ଚୟ ଆସିବି ।''

ଯିବାପାଇଁ ମୁଁ ଉଠି ଛିଡ଼ାହେଲି । ସେ ଅନୁନୟ କରି କହିଲା, ''ପିଇସୀ, ଆଉକିଛି ସମୟ ବସ । ତୁମକୁ ଯାହା ଦେଖେଇବାପାଇଁ ଡାକିଛି, ତାହା ମୁଁ ଏଯାଏ ଦେଖାଇ ପାରିନାହିଁ ।'' ମୁଁ କହିଲି, ''ଦେଖିବାପାଇଁ ଆଉ ପୁଣି କ'ଣ ଅଛି ? କହିଲା, ମୁଁ ବି କିଛି କିଛି ଲେଖିବାପାଇଁ ଚେଷ୍ଟା କରେ । ଟେବୁଲ୍ ଡ୍ରୟର୍‌ରୁ ସେ ଗୋଟିଏ ମୋଟା ଡାଏରୀ ବାହାରକରି ମତେ ଦେଖାଇଲା । ମୁଁ କହିଲି, ''ଏହାର କିଛି କରୁନାହଁ କାହିଁକି ?'' କହିଲା, ''କିଏ କରିବ ଏସବୁ ? ପୁଣି ଭଲକରି ମୋର ଚିହ୍ନାଜଣା ବି ନାହିଁ କାହା ସାଙ୍ଗରେ । କାହାକୁ କହିବି, କାହାକୁ ଦେଖାଇବି ?'' ଦେଖିବା ଟିକେ କହି ମୁଁ ଡାଏରୀଟା ତା' ହାତରୁ ନେଲି । ତାର ଲେଖା ହସ୍ତାକ୍ଷର ବଡ଼ ଜଟିଳ ମନେ ହେଲା । ମତେ ପଢ଼ିବାକୁ ଡେରିହେବ ମନେକରି ଗୋଟାଏ ଦୁଇଟା କବିତା ଶୁଣାଇବାପାଇଁ ତାଙ୍କୁ କହିଲି । ସେ ପଢ଼ିକି ଶୁଣାଇଲା । ମୋଦ୍ୱାରା କିଛି ଲୁଚେଇ ହୁଏ ନାହିଁ । ତେଣୁ ଆଦୌ ଅସହଜ ନ ହୋଇ ହସିହସି କହିଲି, ''ତୁମେ କ'ଣ କୌଣସି ଝିଅର ପ୍ରେମରେ ପଡ଼ିଥିଲ ? କବିତାଗୁଡ଼ିକ କେମିତି ଲେଖିଲ ତୁମେ ?'' ସେ ଟିକେ ଲାଜେଇ ଗଲା । ମୁଣ୍ଡ ତଳକୁ କରି ସ୍ମିତହସି କହିଲା, ''ପିଇସୀ, ତୁମେ ଜାଣିନ ? ବିନା କଷ୍ଟ ସହି ଲେଖିପାରିବା କ'ଣ ସମ୍ଭବ ?'' ମୁଁ ପୁଣି କହିଲି, ''ବିନା ଦ୍ୱିଧାରେ ଯଦି ମତେ ସବୁ କିଛି ଖୋଲି କହିପାରିବ, ଭଲ ଲାଗିବ । ଶୁଣିକି ମତେ ବି ଭଲ ଲାଗିବ ଆଉ ତୁମ ମନର ବୋଝ ହାଲୁକା ହୋଇଯିବ । ଏକଥା ସତ ଯେ ବିନା କଷ୍ଟ ସହି ଲେଖି ହୁଏ ନାହିଁ । କିନ୍ତୁ କ'ଣ କଷ୍ଟ ଉଠେଇବା କେବଳ ପାଇବା; ଅନ୍ୟର ଦୁଃଖ ଦରଦ ବୁଝିବା- ଶୁଣିବା କ'ଣ ପାଇବା ନୁହେଁ ? ମତେ କହ । ଏଥିରେ ତୁମର ହିଁ ଭଲ ହେବ ।'' ସେ କହିଲା, ''କ'ଣ କହିବି ପିଇସୀ, ସେହି କାରଣରୁ ମତେ ଜନ୍ମଭୂମି ଛାଡ଼ି ଏଠିକି ଆସିବାକୁ ପଡ଼ିଲା । ମୋର ବିଲ୍‌କୁଲ୍ ଇଚ୍ଛା ନଥିଲା । ଆଉ କିଛି ପଚାରନି । ତା' ପଛରେ ଅନେକ କାରଣ ଥିବ ଆଉ ଅଛି ମଧ୍ୟ । ତୁମେ ତ ବୁଝିପାର । ତୁମେ ବି କ'ଣ କମ୍ କଷ୍ଟ ସହିଛ ?'' ମୁଁ କହିଲି, ''ଛାଡ଼ ସେ କଥା । ଆଉ କିଛି କହନା । ଭାବୁଛି, କହିବା ତୁମକୁ କଷ୍ଟ ହେଉଛି ।'' କିଛି ସମୟ ଚୁପ୍ ରହି ପୁଣି ମୁଁ କହିଲି,''ଏବେ ଚାଲିଲି । ମତେ ଆଉ ଗୋଟିଏ ଜାଗା ଯିବାର ଅଛି । କାଲି ସକାଳୁ ପୁଣି କଲିକତା ଯିବାକୁ ପଡ଼ିବ ।'' ଡାକ୍ତର ଚେମ୍ବରରୁ ବାହାରି ଦେଖିଲି, କେତେଜଣ ଯୁବା ବୟସର ପିଲା ଇଆଡ଼େ ସିଆଡ଼େ ହେଉଛନ୍ତି । ଭାବିଲି, ବୋଧେ ମୁଁ ଅଛି ବୋଲି ସେମାନେ ଚେମ୍ବର ଭିତରକୁ ଆସିପାରୁନାହାନ୍ତି । ଶରତ ଚନ୍ଦ୍ରଙ୍କ ଦୁଇଟି ବହି ଡାକ୍ତରପାଖରୁ ନେଇ କବାଟ ପାଖରେ କହିଲି, ''ମୁଁ ଏ ବହି ନେଇଯାଉଛି, ଯିବା ଆଗରୁ ତୁମକୁ ଫେରେଇଦେଇ ଯିବି । ତୁମ ଡାଏରୀ ରଖ ।

ସିଏ କହିଲା, ''ଏହାକୁ ବି ନେଇ ଯାଅ ନା ପିଇସୀ । ବହୁତ ଦିନରୁ ଏମିତି ପଡ଼ିଛି । ହୁଏତ ତୁମେ ଏହାର କିଛି ମଙ୍ଗଳ କରିଦେଇ ପାରିବ । ତୁମ ଚିହ୍ନାଜଣା ତ ବହୁତ । ଏହା ପ୍ରକାଶିତ ହେଉ ବା ନହେଉ ମୁଁ ଖାଲି ଜାଣିବାପାଇଁ ଚାହୁଁଛି, ଲୋକଙ୍କୁ ଏହା କେମିତି ଲାଗିବ । ଆଜିକୁ ପାଞ୍ଚ ଛଅ ବର୍ଷ ହେଲାଣି ଡାଏରୀଟା ମୋ ପାଖରେ ପଡ଼ିଛି । କାହାକୁ ଦେଖେଇ ପାରିନି । ସେ ଧରଣର ଲୋକ ବି ଆଖପାଖରେ ନାହାନ୍ତି । ଏହାକୁ ତୁମେ ନେଇଯାଅ । କିଛି ହୁଏ ଯଦି ଭଲ । ନ ହେବ ଯଦି କିଛି କଥାନାହିଁ ।'' ମୁଁ କହିଲି, ''ଠିକ୍ ଅଛି, ଦିଅ ମୁଁ ତାକୁ ଅନ୍ୟମାନଙ୍କୁ ଦେଖାଇବି । ସେମାନେ ଯାହା କହିବେ ତମକୁ ଆସି ଜଣାଇବି ।'' ସେଠି ଆଉ ନରହି ମୁଁ ତୁରନ୍ତ ବାହାରକୁ ଆସିଲି । ମତେ ଦେଖି ସେଠି ଛିଡ଼ା ହୋଇଥିବା ପିଲାମାନେ ହସିଲେ । ମୋର ହାତରେ ବହି ଦେଖି ଗୋଟିଏ ପୁଅ ଡାକ୍ତରଙ୍କୁ ଶୁଣେଇ ଶୁଣେଇ କହିଲା, ''ଦହି ଖାଅ ଭରିଭରି, ବହିପଢ଼ ଧରିଧରି ।'' ତା' କଥାରେ ଡାକ୍ତର ହସିପକାଇଲା । ଜଣେ ପିଲା କହିଲା, ମୁଁ ଆମ୍ବ ଖାଇବା ପସନ୍ଦ କରେ । ସେଇଥିପାଇଁ ତ ହସୁଥାଏ ।'' ଡାକ୍ତର ପୁଣି ହସି ହସି ତାକୁ କହିଲା, ''ଆମ୍ବ ବଦଳରେ ବହିର କଥା କୁହ । ସ୍ଲୋଗାନ ଦିଅ । ''ବହି ମୋର ପସନ୍ଦ, ହସୁଥାଏ ମନ୍ଦ ମନ୍ଦ ।'' ଯାଉ ଯାଉ ମୁଁ ଏତିକି ଶୁଣି ପାରିଲି ।

ଘରକୁ ନ ପଶୁଣୁ ନିରୁଦା' ପଚାରିଲା, ''ତୁ କୁଆଡ଼େ ଗଲୁ ଯେ ? ସେଠିକି କେତେବେଳେ ଯିବୁ ?'' ମୁଁ କହିଲି, ''ମା' କହିନି ? ତୁମେ ସେଠାରୁ ମତେ ନେଇ ଯାଇ ପାରିଥାନ୍ତ । ଚାଲ ମୁଁ ରେଡ଼ି ଅଛି ।'' ବହି ଆଉ ଡାଏରୀ ଟେବୁଲ୍ ଉପରେ ରଖି ଆମେ ବାହାରି ପଡ଼ିଲୁ । ସାଇକେଲ୍‌ରେ ସେହି ଶିବମନ୍ଦିରର ସାମନାରେ ଏସ୍.ଟି.ଡି. ବୁଥ୍‌ରେ ପହଞ୍ଚିଲୁ । ମୁଁ ସଞ୍ଜୟଦା' ପାଖକୁ କାଞ୍ଚରାପଡ଼ା ଫୋନ୍ କଲି । ଜେଠୁଙ୍କୁ ଫୋନ୍-ଫାନ୍ ରିସିଭ୍ କରିବାକୁ ଭଲ ଲାଗେ ନାହିଁ । ନା ସେ ନିଜ ଘରେ ଫୋନ୍ ରଖନ୍ତି । ସଂଜୟଦା' ମୋତେ କହିଲେ, ଛଅଟାରେ ବାହାରି ସାଢ଼େ ଆଠଟାରୁ ନ'ଟା ଭିତରେ ତୁ ହାଓଡା ପହଞ୍ଚିବୁ । ଷ୍ଟେସନ୍‌ରେ ଜେଠୁ ଆଉ ମୁଁ ତୋ ବହି ହାତରେ ନେଇ ଛିଡ଼ା ହୋଇଥିବୁ । ଆମକୁ ଚିହ୍ନିବା କଷ୍ଟ ହେବନାହିଁ । ସେ ଆହୁରି କହିଲେ, କାଲି ଦୁଇଟାରେ ମୋ ସାଙ୍ଗରେ ଭେଟିବାପାଇଁ କିଛି ଲୋକଙ୍କୁ ଡାକିଛନ୍ତି । ତାଙ୍କ କଥା ଶୁଣି ମୁଁ ବ୍ୟସ୍ତ ହୋଇପଡ଼ିଲି । ଅବଶ୍ୟ ସେହି ବେଳାରେ ଫୋନ୍‌ରେ ମୁଁ କିଛି କହିପାରିଲିନାହିଁ । ଗୋଟିଏ ପକ୍ଷରେ ସେମାନଙ୍କୁ ଭେଟିବି ବୋଲି ମୁଁ ଯେତିକି ଖୁସି ଥାଏ, ଅନ୍ୟ ପକ୍ଷରେ ଡରରେ ମୋ ଛାତିର ଧକ୍‌ଧକ୍ ବଢ଼ିଯାଇଥାଏ । ଭାବିଲି, ମୋର ଅଭିନନ୍ଦନ କରାଗଲେ, ତାର ଉତ୍ତରରେ ମତେ କ'ଣ କରିବାକୁ ହେବ !

ଘରକୁ ଫେରି ମୁଁ ନିରୁଦା'ର ସ୍ତ୍ରୀକୁ ସବୁ କଥା ଜଣାଇ ଦେଲି ଯେ, ପିଲାମାନଙ୍କୁ ଏଇଠି ଛାଡ଼ି ମୁଁ କାଲି କଲିକତା ଯିବି । ସେ କହିଲେ, ''ପିଲାମାନେ ରହିବେ । ମୋ ପିଲାମାନେ ବି ତ ଅଛନ୍ତି । ତୁ ନିଶ୍ଚିନ୍ତ ହୋଇ କଲିକତା ଯା ।'' ମୁଁ ମା'କୁ ଯାଇ କହିଲି, ''ସେ ପଚାରିଲା, ଫେରିବୁ କେବେ ? ମୁଁ କହିଲି, କାଲି ଯିବି, ପଅରିଦିନ ଫେରିଆସିବି । ତା' ପରଦିନ ମୋର ଦିଲ୍ଲୀ ଯିବାର ଅଛି ।'' ମା' ପୁଣି ପଚାରିଲା, କଲିକତାରେ କ'ଣ କାମ ଅଛି ? ତାକୁ ସବୁକିଛି ନ ଜଣାଇ ମୁଁ

ଖାଲି କହିଲି, କଲିକତା କେବେ ଦେଖିନାହିଁ, ସେଥିପାଇଁ ବୁଲିବାକୁ ଯାଉଛି ।'' ବାବା ବି ଘରେ ଥିଲେ । ସେ ତୁରନ୍ତ ମା'କୁ କହିଲେ, ''ରାନୀ, ତୁ ଜାଣିନୁ ମୋ ଝିଅ ଏବେ ଆଗ ପରି କ'ଣ ହୋଇଛି ? ତା'ର ନାଁ ଏବେ ବହୁତ ବଢ଼ିଗଲାଣି । ବଡ଼ ବଡ଼ ଲୋକ ତାକୁ ସ୍ୱାଗତ କରିବାପାଇଁ ଷ୍ଟେସନ୍ ପହଞ୍ଚିବେ । ଥରକୁ ଥର ଏଭଳି କଥା ଶୁଣିବାକୁ ମୋତେ ଭଲ ଲାଗେ ନାହିଁ । ସେଥିପାଇଁ ମୁଁ ଆସି ନିରୁଦା'ର ସ୍ତ୍ରୀ ପାଖରେ ବସିପଡ଼ିଲି । ସେ ଖାଇବା ତିଆରି କରୁଥିଲା । ତା' ବଡ଼ ଝିଅ ସେଠି ବସି ଖାଉଥାଏ । ତାକୁ ଚା' ପାଇଁ ପଚାରିବାରୁ ନିରୁଦା'ବି ଚା' ତିଆରି କରିବାପାଇଁ କହିଲା । ଭାଉଜ କହିଲା, କ୍ଷୀର ନାହିଁ । ମୁଁ କହିଲି, ''ଚିନି ଆଉ ଚା'ଗୁଣ୍ଡ ତ ଅଛି । କ୍ଷୀର ଦରକାର ନାହିଁ, ଅଦା ଅଛି ଯଦି ଟିକିଏ ପକେଇ ତିଆରି କରିଦିଅ ।'' ମୁଁ ଝିଅକୁ ପଚାରିଲି, ''ତୁ ଏତେ ଆଗରୁ କ'ଣ ପାଇଁ ଖାଉଛୁ ?'' ତା'ର ମା' କହିଲା ''ସେ ସମସ୍ତଙ୍କଠୁ ଆଗରୁ ଖାଇନିଏ । ଦିନର ଯାହା ବଳିଥିବ ସେଥିରେ ତାର ଚଳିଯାଏ । ପରେ କିଏ ଖାଇଲା ନଖାଇଲା ତାକୁ ଜଣା ନଥାଏ ।'' ମୁଁ କହିଲି ''ଠିକ୍ ତ କରେ । ଭୋକ ଲାଗିବ ଯଦି ଖାଇବ ନାହିଁ ?'' ପୁଣି ସେଇ ଝିଅକୁ ପଚାରିଲି, 'କ'ଣ ଠିକ୍ ନା ?''

ଚା' ପିଉପିଉ ନିରୁଦା' ପଚାରିଲା, ''ତୁ ଆଗରୁ କେବେ କଲିକତା ଯାଇଛୁ ?'' ମୁଁ ମନା କଲାରୁ କହିଲା, ''ଆଚ୍ଛା ମୁଁ ଦେଖେ । ଏଠୁ ଦୁଇଜଣ ଲୋକ ପ୍ରାୟ ରୋଜ୍ କଲିକତା ଯାଆନ୍ତି । ମୁଁ ତାଙ୍କଠୁ ବୁଝିନିଏ । ଯଦି ସେମାନେ ଯାଉଥିବେ ଖୁବ୍ ଭଲ ହେବ । ହାଓଡ଼ା ପର୍ଯ୍ୟନ୍ତ ତାଙ୍କ ସାଙ୍ଗରେ ଚାଲିଯିବୁ ।'' ସେ ତୁରନ୍ତ ସାଇକେଲ୍‌ରେ ଯାଇ ବୁଝି ଆସି କହିଲା, ''ତୋର କିଛି ଅସୁବିଧା ହେବନାହିଁ । ସେମାନେ ବି ସେହି ଗାଡ଼ିରେ ଯାଉଛନ୍ତି । ମୁଁ କହିଲି, ''ସକାଳେ ମୋର ନିଦ ଭାଙ୍ଗିବ ତ ? ସେ କହିଲା, ତା'ହେଲେ ମୁଁ କ'ଣପାଇଁ ଅଛି ? କକା ପେନ୍‌ସନ୍ ନେବାପାଇଁ ଯେଉଁ ବରହମ୍ପୁର ଯାଆନ୍ତି, ସକାଳର ଗାଡ଼ିରେ ତାଙ୍କୁ କିଏ ବସେଇ ଦିଏ ? ମୁଁ ତ ତାଙ୍କୁ ତିନିଟାରେ ଉଠାଏ । ପୁଣି ସାଇକେଲ୍‌ରେ ଷ୍ଟେସନ୍‌ରେ ଛାଡ଼ିଆସେ ।

ମୁଁ ଭାବୁଥିଲି, ମୋର ନିଦ ଅବଶ୍ୟ ଭାଙ୍ଗିଯିବ । ଜେଠୁଙ୍କୁ ଭେଟିବା କଥା ଚିନ୍ତାକରି କେଜାଣି ନିଦଆସିବ ନା ନାହିଁ ! ନିରୁଦା' କହିଲା, ''ତୁ ଶୀଘ୍ର ଖାଇ ଶୋଇପଡ଼ ।'' ମୁଁ କହିଲି, ''ତୁମେ ବି ତ ସକାଳେ ଉଠିବ । ତୁମର ବି ଶୋଇପଡ଼ିବା କଥା ।'' ନିରୁଦା'ର ସ୍ତ୍ରୀ କହିଲା, ତମ ଦାଦାଙ୍କର ସକାଳେ ଉଠିବାର ଅଭ୍ୟାସ ଅଛି । ସେ ଉଠିଯିବେ ।'' ଆମେ ସମସ୍ତେ ପୁଣି ନିରୁଦା'ର ବାରଣ୍ଡାରେ ଖାଇବାପାଇଁ ବସିଲୁ । ମୁଁ ଭାଉଜକୁ ପଚାରିଲି, ''ତୁମେମାନେ ସବୁଦିନେ କ'ଣ ଏକା ସାଙ୍ଗରେ ବସି ଖାଅ ?'' ସେ କହିଲା, ସବୁଦିନ କୋଉ ହଉଛି ? ଚେଷ୍ଟା ତ କରେ; ହୋଇପାରେ ନାହିଁ । ଏବେ ତୁମେମାନେ ଅଛ, ସେଥିପାଇଁ ସମ୍ଭବ ହେଉଛି । ନହେଲେ ଖୁଡ଼ୀ ତ ସବୁ ନିଜ ଘରେ କରିପକାନ୍ତି ।

ଖାଇପିଇ ମୁଁ ଶୋଇବାକୁ ଗଲି । କିନ୍ତୁ ଚିନ୍ତାରେ ନିଦ ଆସିଲା ନାହିଁ । ପିଲାମାନଙ୍କ ଚିନ୍ତା, ବାବାଙ୍କ ଚିନ୍ତା, ତାତୁସ୍‌ଙ୍କ ଚିନ୍ତା, ଜେଠୁ, ଶଙ୍କର ଆଉ କେତେ କ'ଣ ଚିନ୍ତା ! ଚିନ୍ତା କରୁକରୁ ଗାଢ଼ ନିଦ ଆସିଗଲା । ସକାଳେ ନିରୁଦା' ଚାରିଟାରେ କେତେ ଥର ଡାକିଲା । କିନ୍ତୁ ଜାଣିପାରିଲି

ନାହିଁ । ବାବା ଜୋର୍‌ରେ ଡାକିବାରୁ ମୁଁ ଚମକି ଉଠିଲି । ଶୀଘ୍ର ହାତ ମୁହଁ ଧୋଇ କପଡ଼ା ବଦଳେଇବାପାଇଁ ନିଗୁଦା' ଘରକୁ ଗଲି । ପଛରେ ମା' ବି ଆସିଲା । ମୋର କପଡ଼ା ବଦଳେଇବା ଦେଖିଲା । ମୁଁ ଭାବିଲି, ସେହି ଘରେ ବାବା ମା' ଥିଲେ । ସେଇଥିପାଇଁ କପଡ଼ା ବଦଳେଇବାପାଇଁ ମୁଁ ଏହି ରୁମ୍‌କୁ ଆସିଲି । ହେଲେ ମା' ବି ପଛରେ ପଛରେ । ଛାଡ଼୍ କିଛି କଥାନାହିଁ । ଭାବିଲି, ମା' ଆଗରେ ଲଙ୍ଗଳା ହେଲେ ବି ଚଳିବ । ହଠାତ୍ ମା' କହିଲା, ''କ'ଣରେ ତୁ ବ୍ରେସିୟର୍ ପିନ୍ଧୁନାହୁଁ ।'' ମୁଁ କହିଲି, ''ସେଥିରେ ମୋତେ ଲାଗେ, କିଏ ମୋତେ ବାନ୍ଧିକି ରଖିଛି ।'' ମୁଁ କପଡ଼ା ବଦଳାଉଥିଲି ଆଉ ମା' ମତେ ଉପରୁ ତଳ ପର୍ଯ୍ୟନ୍ତ ଦେଖୁଥିଲା । ନିଗୁଦା'ର ସ୍ତ୍ରୀ ବି ସେଠି ପାଖରେ ବସିଥିଲା । ମା' ତାକୁ କହିଲା, ''ଜାଣିଛୁ ବୋହୂମା', ଆଗେ ମୋ ପେଟରେ ବି ବହୁତ ଚର୍ବି ଥିଲା । ହାତ ଦେଖାଇ କହିଲା, ଆଉ ଏତିକି ମୋଟା ମୋଟା ତିନିଟି ଗାର ପଡୁଥିଲା । ବେବି ଛୋଟ ଥିଲା ବେଳେ ସଦାବେଳେ ମୋ ପେଟରେ ହାତ ବୁଲାଉଥାଏ । ଆଉ ଏବେ ଦେଖ, ତା' ପେଟରେ ଚର୍ବି । ହେଲେ ମୋ ପେଟ ପିଠିରେ ଲାଗିଗଲାଣି ।'' ମୁଁ କିଛି ନକହି ବାପାଙ୍କ ରୁମ୍‌ରୁ ନିଜ ବ୍ୟାଗ୍ ବାହାର କଲି । ପଛରେ ପଛରେ ମା' ବି ସେଠିକୁ ଆସିଲା । ବାପା ନଥିଲେ । ମା' କହିଲା, ''ଶୁଣ୍, ତୋ ପାଖରେ କିଛି ଟଙ୍କା ଯଦି ଅଛି ଦେଇକି ଯା । ତୋର ପିଲାଙ୍କ ଲାଗି ଦରକାର ପଡ଼ିଲେ ମୁଁ କେଉଁଠୁ ଆଣିବି ? ମୋର ହାତ ଖାଲି । ତୋର ବାପା ମୋତେ ଆଉ ପଇସା ଦେଉନାହାନ୍ତି । ମତେ ଲାଗିଲା, ମା' ବୋଧେ ସେତିକି ବେଳୁ ଏଇଥିପାଇଁ ପଛରେ ପଛରେ ବୁଲୁଛି । ଛାଡ଼ ମୋ ପାଖରେ ସେସବୁ ଚିନ୍ତା କରିବାକୁ ବେଳ ନଥିଲା । ତେଣୁ ତାକୁ କିଛି ଟଙ୍କା ଦେଇ ବାହାରିପଡ଼ିଲି ।

ଭୋର୍ ବେଳ । ଅନ୍ଧାରଯୋଗୁଁ କିଛି ଦେଖାଯାଉ ନଥିଲା । ମୁଁ ଆଉ ନିଗୁଦା' କଥାବାର୍ତ୍ତା କରିକରି ଚାଲିଛୁ । ଯାହା ସାଙ୍ଗରେ ମତେ କଲିକତା ଯିବାର ଅଛି, ସେଠି ପହଞ୍ଚିଗଲୁ । ନିଗୁଦା' ମତେ ଛିଡ଼ା କରେଇ ସେମାନଙ୍କୁ ଡାକିବାପାଇଁ ଭିତରକୁ ଗଲା । ଅନ୍ଧାରରେ ସେଇ ନିର୍ଜନ ଜାଗାରେ ଡର ମାଡୁଥାଏ । ତା' ପଛରେ ପଛରେ ମୁଁ ବି ଗଲି । ନିଗୁଦା' ଦାଦା, ଦାଦା କହି ଡାକିଲା । ସେହି ସୁନ୍ଦର, ବଡ଼ ଅଗଣାର ଘର ଭିତରୁ କେହି ଜଣେ କହିଲେ, ଗଲେଣି । ନିଗୁଦା କହିଲା, ''ସେ ଷ୍ଟେସନରେ ମିଳିଯିବେ, ଶୀଘ୍ର ଚାଲ୍ ।'' ଆମେ କେତେବେଳେ ସାଇକେଲ୍‌ରେ ବସୁଥାଉ ତ କେତେବେଳେ ପୁଣି ପାଦରେ ଚାଲୁଥାଉ । ସେଥିରେ ଧଡ଼ଧଡ଼କରି ଯାଉଥିବା ଏକ ଶଗଡ଼ର ଆଗକୁ ଟପିଗଲୁ ଏବଂ ଶେଷରେ ଷ୍ଟେସନ୍‌ରେ ପହଞ୍ଚିଲୁ । ନିଗୁଦା' କହିଲା, ''ପଇସା ଅଛି ଯଦି ଦେଲୁ । ତୋର ଟିକଟ କରେଇ ଆଣିବି । ତୁ ଏଇଠି ଛିଡ଼ା ହୋଇଥା ।'' ଟିକଟ ଦେଇ ସେ କହିଲା, ସେମାନଙ୍କର ତ ଏ ପର୍ଯ୍ୟନ୍ତ ଦେଖା ନାହିଁ । ଚାଲ୍ ଚା' ପିଇଦେ । ମୁଁ କହିଲି, ''ମୁଁ ପିଇବି । ଆଉ ତୁମେ ? ତୁମେ ବି ତ ପିଇବ ?'' ସେ କହିଲା, ''ମୋର ନହେଲେ ଚଳିବ ।'' ଆମେ ଚା' ଦୋକାନକୁ ଗଲୁ । ଚା ପିଉପିଉ ନିଗୁଦା' କହିଲା, ଏଇ ଦେଖ, ସେ ଦୁହେଁ ଆସିଗଲେ ।'' ମୁଁ ଚା ପଇସା ଦେବାରୁ ଦାଦା ମନାକଲା, ତୁ ରହ, ଦୁଇ କପ୍ ଚା'ର ପଇସା କ'ଣ ମୁଁ ଦେଇପାରିବି ନାହିଁ ?'' ପଇସା ଦେଇ ସେ ମତେ ସେହି ଲୋକମାନଙ୍କ ସାଙ୍ଗରେ ଚିହ୍ନେଇ

ଦେଲା । ସେ ଦୁହେଁ ଭଦ୍ରବ୍ୟକ୍ତି ମନେହେଲେ । ନିରୁଦା' କହିଲା, ''ମୋର ଏହି ଭଉଣୀ କଥା ଗତକାଲି କହୁନଥିଲି !'' ସେମାନଙ୍କ ମଧ୍ୟରୁ ଜଣେ କହିଲା, ଆପଣ ହାବଡ଼ାରେ ଓହ୍ଲେଇବେ ତ ! ଆମେ ବି ସେଠି ଓହ୍ଲାଇବୁ । ଚିନ୍ତାର କିଛି କାରଣ ନାହିଁ । ନିରୁଦା କହିଲା, ''ତା'ହେଲେ ମୁଁ ଏବେ ଚାଲିଲି ।'' ଆସିବା ଆଗରୁ ଫୋନ୍ କରିଦେଇଥିବୁ, ମୁଁ ଷ୍ଟେସନ୍ ଆସିଯାଇଥିବି । ତା' ଯିବା ପରେ ଚାଲ ଚା' ପିଇବା କହି ଗୋଟିଏ ବଡ଼ ଚା' ଦୋକାନକୁ ମତେ ସେମାନେ ଡାକିନେଲେ । ମୁଁ ବାହାରୁ ହିଁ କହିଲି, ''ଦାଦା, ମୁଁ ଏବେ ନିରୁଦା' ସାଙ୍ଗରେ ଚା' ପିଇଛି । ଆପଣମାନେ ପିଅନ୍ତୁ । ମୁଁ ଛିଡ଼ା ହୋଇଛି । ସେମାନଙ୍କ ମଧ୍ୟରୁ ଜଣେ କହିଲେ, ଏଇଟା ଗୋଟାଏ କଥା ? ଚାଲନ୍ତୁ, ସକାଳେ ଟିକେ ବେଶି ଚା' ପିଇଲେ କିଛି ଖରାପ ହେବନାହିଁ । ଚା' ପିଇ ଆମେ ବାହାରିଲୁ । ଦୋକାନ ବାହାରେ ତେର-ଚଉଦ ବର୍ଷର ଜଣେ ପିଲା ପେପର ବିକୁଥାଏ । ତା'ଠାରୁ 'ଆନନ୍ଦ ବଜାର' ଟିଏ କିଣିଲି । ସକାଳୁ ସକାଳୁ ଟିକିଏ ଥଣ୍ଡା ଥିଲା । ହେଲେ ପିଲାଟି ଖାଲି ଟି ସାର୍ଟ ଓ ପଛପଟୁ ଚିରାଥିବା ହାପ୍‌ପ୍ୟାଣ୍ଟ୍‌ଟିଏ ପିନ୍ଧିଥିଲା । ପେପରଟା ହାତରେ ଧରି ମୁଁ ତା'ର ହାତ ଧରି ମୁହଁରେ ହାତବୁଲେଇ କହିଲି, କ'ଣରେ ଥଣ୍ଡା ଲାଗୁନାହିଁ ? ଆଉ କିଛି ପିନ୍ଧିନାହୁଁ ଯେ ?'' ପିଲାଟି ହସିହସି କହିଲା, ''କିଛି ହେବ ନାହିଁ । ଟିକେ ସମୟ ପରେ ଖରା ବାହାରି ଆସିବ ।'' ମୁଁ ପୁଣି ପଚାରିଲି, ''ତୋର ନାଁ କ'ଣ ?'' କିଛି ପଢ଼ାପଢ଼ି କରିଛୁ ।'' ହଁ, ଏବେ ନ'ଟା ଭିତରେ ଏ କାମ ସାରି ଘରକୁ ଯିବି । ତା'ପରେ ଗାଧୋଇ ପାଧୋଇ ଦଶଟାରେ ସ୍କୁଲ୍ ଯିବି । ପୁଣି ପଚାରିଲାରୁ କହିଲା, ''ସପ୍ତମ ଶ୍ରେଣୀରେ ପଢୁଛି । ଘରେ ମା' ଆଉ ଦି' ଭାଇ ଭଉଣୀ ଅଛନ୍ତି । ବାପା ନାହାନ୍ତି ।'' ଇଚ୍ଛା ହେଉଥିଲା, ତା' ଦେହରେ ନିଜ ସାଲ୍ ଘୋଡେଇ ଦେବି । ମୁଁ ତା' ସହିତ କଥାବାର୍ତ୍ତା କରୁଥାଏ । ନିରୁଦା'ର ବନ୍ଧୁମାନେ ମତେ ପାଖରେ ଖାଲି ଥିବା ବେଞ୍ଚ୍‌ରେ ବସିବାପାଇଁ ଡାକିଲେ । ମୁଁ ଶୀଘ୍ର ପିଲାଟିକୁ ଶହେଟା ଟଙ୍କା ଦେଇ କହିଲି, ''ତୋ ସମୟ ଆଉ ନଷ୍ଟ କରିବିନି । ଏଇ ପଇସାରେ ନିଜପାଇଁ ଗୋଟେ ସୁଇଟର କିଣିଦେବୁ ।'' ନିରୁଦା'ର ବନ୍ଧୁ ପଚାରିଲେ, ''ଆପଣ ପିଲାଟିକୁ ଚିହ୍ନନ୍ତି କି ? ମୁଁ ପଚାରିଲି, ପିଲା, କେଉଁ ପିଲା ? ସେ କହିଲେ, ''ସେଇ ଯେଉଁ ପେପର ବିକ୍ରୀ କରୁଥିଲା ।'' ମୁଁ କହିଲି, ''ଚିହ୍ନା ଜଣା ତ ନାହିଁ । କିନ୍ତୁ ଏବେ ଚିହ୍ନା ହେଲା ।'' ସେ କହିଲେ, ଆଚ୍ଛା ଏବେ ଚିହ୍ନିଲେ ? ମୁଁ ବୁଝି ପାରିଲି ନାହିଁ । ମୁଁ କହିଲି, ''ଏଥିରେ ବୁଝିବାର କ'ଣ ଅଛି । ତାକୁ ଡାକିଲି, ନାଁ ପଚାରିଲି । ସେମାନଙ୍କ ସାଙ୍ଗରେ ଏଭଳି କଥା ହେବା କେତେଦୂର ଠିକ୍ ହେବ କେଜାଣି ! କଲିକତାରେ ତ ଆହୁରି ବଡ଼ ବଡ଼ ଲୋକଙ୍କ ସାଙ୍ଗରେ କଥା ହେବାକୁ ପଡ଼ିବ । କିଏ ଜାଣେ ସେତେବେଳେ କ'ଣ ହେବ ?

## ॥ ୩ ॥

ଷ୍ଟେସନ୍‌ରେ ଟ୍ରେନ୍ ଆସିବାର ସୂଚନା ଦିଆଗଲା । ନିରୁଦା'ର ବନ୍ଧୁମାନେ ଉଠି ଛିଡ଼ା ହେଲେ । କିଏ ଜଣେ କହିଲେ, ''ଚାଲ, ଗାଡ଼ି ଆସିଗଲା ।'' ଆମ ତିନିଜଣଙ୍କୁ ଅଲଗା ଅଲଗା ବସିବାକୁ ପଡ଼ିଲା । ଗାଡ଼ି ଠସାଠସ୍ ଭର୍ତ୍ତି ହୋଇଥାଏ । ନିରୁଦା'ର ବନ୍ଧୁମାନେ ନିଜ ସାଙ୍ଗରେ ମତେ ବି ବାଧ୍ୟକରି ଚା' ପିଆଉଥା'ନ୍ତି । ଅବଶ୍ୟ କପ୍‌ରେ ଚା'ର ପରିମାଣ ବହୁତ କମ୍ ।

ଟ୍ରେନ୍‌ର ଯାତ୍ରୀଙ୍କଠୁ ଜଣାପଡୁଥିଲା, ଅଧିକାଂଶ ଡେଲି ପେସେଞ୍ଜର । ପ୍ରତିଦିନ ଯିବା ଆସିବାଯୋଗୁଁ ଫେରିବାଲାଙ୍କ ସାଙ୍ଗରେ ସେମାନଙ୍କର ଏମିତି ଚିହ୍ନାଜଣା ଯେ, ଜାଣି ସମସ୍ତେ ଗୋଟିଏ ମା ପେଟର । ଫେରିବାଲା ସାଙ୍ଗରେ ସେମାନେ କଥା କହୁଥିଲେ । ଅନେକ ଆଗରୁ ବାକିଥିବା ପଇସା ପରିଶୋଧ କରୁଥିଲେ । ମୋ ପାଖରେ ବସିଥିବା ଲୋକଟା ଦୁଇ କପ୍ ଚା' ପିଇ ଚା'ବାଲାକୁ ଶହେ ଟଙ୍କା ଦେଲା । ବହୁତ ଡେରି ପର୍ଯ୍ୟନ୍ତ ଚା' ବାଲା ବାକି ରେଜା ପଇସା ନେଇ ଆସିଲା ନାହିଁ । ଜଣେ ସହଯାତ୍ରୀ ଏଥିରେ ଚିନ୍ତା ବ୍ୟକ୍ତ କରିବାରୁ ଯାତ୍ରୀ ଜଣକ କହିଲେ, ''ଆଜି ନ ହେଲେ କାଲି ତା'ଠୁ ପଇସା ନେଇ ଯିବି । ଯିବ କୁଆଡ଼େ ? ଗାଡ଼ିରେ ତ ତା'ର ବ୍ୟବସାୟ ।''

ଗାଡ଼ିରେ ଲୋକ କଥାବାର୍ତ୍ତା କରୁଥାନ୍ତି । ଥଟ୍ଟା ମଜା କରୁଥାନ୍ତି । ହେଲେ ମୋର ଧ୍ୟାନ ଯାଇ ଆଉ କୁଆଡ଼େ । କଲିକତା ଯାଉଛି ବୋଲି ବହୁତ ଖୁସୀ ଥିଲି । ଲୋକଙ୍କଠୁ ଶୁଣିଛି, କଲିକତା ଖୁବ୍ ସୁନ୍ଦର, ପ୍ରସିଦ୍ଧ ସହର । ଦେଖିବାପାଇଁ ସେଠି କେତେ ଜିନିଷ । ଦୂରଦୂରାନ୍ତରୁ ଲୋକ ଆସନ୍ତି ବୁଲିବାପାଇଁ । ଥରେ ବାପାଙ୍କର ସେଠିକି ବଦଳି ହୋଇଥିଲା । ବାପା ସେଠି ରହୁଥିଲେ । ମୁଁ ତାଙ୍କୁ କଲିକତା ବୁଲେଇ ଆଣିବାଲାଗି କହିଥିଲି । ହେଲେ ସେ କଥା ଟାଳି ଦେଇଥିଲେ । ମା'କୁ ଅବଶ୍ୟ ଅନେକ ଥର ନେଇକି ଯାଇଛନ୍ତି । ମତେ କେବେ ନେଇକି ଯାଇ ନାହାନ୍ତି । ମୋର ସେତେବେଳେ ଦୁଇଟି ଛୁଆ । ବାପା ଭାବିଥିବେ, ନିଜେ ସିନା ଅଫିସ୍‌ରେ ରହନ୍ତି, ଆମେ ଗଲେ ଆମକୁ କେଉଁଠି ରଖିବେ ।

ଯଦି ମିଟିଙ୍ଗ୍ ବା ପ୍ରଦର୍ଶନୀ ଥାଏ, ତେବେ ଆମ ସେହି ପଡ଼ାରୁ ଲୋକଙ୍କୁ କଲିକତା ବିନା ପଇସାରେ କେହି କେହି ନେଇ ଯାଆନ୍ତି । ମିଟିଙ୍ଗ୍, ପ୍ରଦର୍ଶନୀରେ ସେମାନେ କ'ଣ ସାମିଲ୍ ହୁଅନ୍ତି ? ଗାଡ଼ିରୁ ଓହ୍ଲାଇ ଏପଟେ-ସେପଟେ ଚାଲି ଯାଆନ୍ତି । ପଡ଼ାର ପ୍ରେମିକ-ପ୍ରେମିକାମାନେ ମିଟିଙ୍ଗ୍ ବା ପ୍ରଦର୍ଶନୀରେ ଭାଗ ନେବା ବାହାନାରେ କଲିକତା ଯାଆନ୍ତି । ସେଠି ସାଙ୍ଗ ହୋଇ ବୁଲାବୁଲି କରି ଫେରନ୍ତି । ମୋର ସେତେବେଳେ ଆସିବାକୁ ସାହସ ହୁଏନା । ଏବେ ତ ସବୁ କାମ ନିଜେ ନିଜେ କରିପାରୁଛି । କଲିକତା ନିଜ ଭରସାରେ ଯାଉଛି । ଅବଶ୍ୟ ତାତୁସ୍‌ଙ୍କ ସାହାଯ୍ୟ ବିନା ଏହା ସମ୍ଭବ ହୋଇ ପାରିନଥାନ୍ତା । ମୋର ସୌଭାଗ୍ୟ ଯେ ମୁଁ ତାଙ୍କ ପରି ଲୋକଙ୍କ ଉପରେ ଭରସା କରିପାରୁଛି । କଲିକତା ଏମିତିରେ ମୁଁ ଯାଇପାରିଥାନ୍ତି । କିନ୍ତୁ ସେହି ଯିବାଟା ଏ ଭଳି ହୋଇ ନଥାନ୍ତା । ଆଜି ମୁଁ କେତେ ବଡ଼ବଡ଼ ଲୋକଙ୍କ ସହିତ ମିଶିବାଲାଗି ଯାଉଛି । ମୋର ବହି ସେମାନଙ୍କ ପ୍ରୟାସରେ ପ୍ରକାଶିତ । ଆଜି ଯଦି ସେହି ବହି ନଥାନ୍ତା; ଜେଠୁ, ରମେଶଜୀ, ଲଳିତଜୀଙ୍କ ପରି ଲୋକଙ୍କୁ ବା ମୁଁ କେମିତି ଜାଣନ୍ତି !

ଗାଡ଼ି କେଉଁ ଏକ ଷ୍ଟେସନରେ ଛିଡ଼ା ହେଲା । ନିରୁଦା'ର ବନ୍ଧୁଙ୍କ ମଧ୍ୟରୁ ଜଣେ କିଛି ଖାଇବାପାଇଁ ପ୍ରସ୍ତାବ ଦେଲେ । ଝାଲମୁଢ଼ି ଦେଖି ପଚାରିଲେ, ''ଆପଣ ଝାଲମୁଢ଼ି ଖାଆନ୍ତି କି ? ମୁଁ ହସିହସି କହିଲି, ''ମୁଁ ସକାଳୁ ବହୁତ ଚା' ପିଇଛି । ଆପଣମାନେ ନିଅନ୍ତୁ । ସେ ମାନିଲେ ନାହିଁ । ମତେ ମୁଢ଼ି ଆଳୁର ଠୁଙ୍ଗାଟିଏ ଧରେଇଦେଲେ । ମନେହେଲା, ଅଚିହ୍ନା ଲୋକଙ୍କଠାରୁ ମତେ ଯେତିକି ସ୍ନେହ ମିଳୁଛି, ସେତିକି ଜ୍ଞାତିପରିଜନଙ୍କଠାରୁ ବା ମିଳିଥାନ୍ତା ! ଛୋଟ ଭାଇ କଥା ମନେ ପଡ଼ିଲା । ସେ କଲିକତାରେ ରହେ । ହେଲେ ତାର ସଠିକ୍ ଠିକଣା ମୋ ପାଖରେ ନାହିଁ । ନୋହିଲେ ତାକୁ ଭେଟିଥାନ୍ତି । ବାପାଙ୍କୁ ପଚାରିଥିଲି । ମାତ୍ର ସେ ତା' ନାଁ ଶୁଣି ମୁହଁଟାକୁ ଏମିତି କଲେ ଯେ ଯେମିତି ସେ ତାଙ୍କର ପୁଅ ନୁହେଁ । ବାପା ନିଜେ ତା' ସାଙ୍ଗରେ କୌଣସି ସମ୍ବନ୍ଧ ରଖି ନାହାନ୍ତି । ଚାହାନ୍ତିନି ଯେ ତା' ସହିତ ଆମ ଭାଇ ଭଉଣୀଙ୍କର ସଂପର୍କ ରହୁ ।

ମୁଁ ପେପର ଉପରେ ମୁଢ଼ି ଆଳୁ ରଖି ଖାଉଥିଲି । ପାଖରେ ବସିଥିବା ଜଣେ ପେପର ମାଗିଲାରୁ ତାଙ୍କୁ ଦେଇଦେଲି । ମୁଢ଼ିଆଳୁବାଲାକୁ ସେମାନେ ପଇସା ଦେଲେ । ମୁଁ ଚେଷ୍ଟାକଲି ଦେବାକୁ । ସେମାନେ ଅବସର ଦେଲେ ନାହିଁ । ଏଯାଏ ସେମାନଙ୍କ ନାଁ ପଚାରିବାକୁ ଭୁଲିଯାଇଛି । ମତେ ସେମାନେ ସମ୍ମାନିତ ବ୍ୟକ୍ତି ଭଳି ମନେହେଲେ । ଏମିତି ଲୋକଙ୍କ ସାଙ୍ଗରେ କଥାବାର୍ତ୍ତା କଲାବେଳେ ମୋର ସଙ୍କୋଚବୋଧ ହୁଏ । ଲାଗେ, ଯାହା କହିବି ତାହା ଠିକ୍ ହେବ ନା ନାହିଁ ଯେ । ୟା ଭିତରେ ପେପରଟି ପୃଷ୍ଠାପୃଷ୍ଠା ହୋଇ କେତେ ଲୋକଙ୍କ ପାଖରେ ବାଣ୍ଟିହୋଇ ଯାଇଥିଲା । ମୁଁ ମୁଢ଼ିଆଳୁ ଖାଇ ହାତ ଉପରେ ହାତ ରଖି ବସିଥିଲି । ନିରୁଦା'ର ବନ୍ଧୁମାନଙ୍କ ପାଖରେ ଥିବା ପାଣି ବୋତଲରୁ ଆମେ ଥରକୁ ଥର ପାଣି ପିଉଥିଲୁ ।

ଲୋକାଲ୍ ଗାଡ଼ି ତେବେ ଏମିତି ଥାଏ ! ହସଖୁସିରେ ସମୟ କଟିଯାଏ, ଜଣାପଡ଼େନି । ମତେ ଚୁପ୍‌ଚାପ୍ ବସିଥିବା ଦେଖି ଜଣେ ଲୋକ ମୋର ଖବରକାଗଜ ମତେ ଫେରେଇ ଦେଲେ ।

ମୁଁ କହିଲି, ଆପଣ ପଢ଼ନ୍ତୁ । ମୁଁ ଘରକୁ ଯାଇ ଦେଖିନେବି । ଗାଡ଼ି ଏବେ ଯେଉଁ ଷ୍ଟେସନ୍‌ରେ ରହେ, ସେଠି ଓହ୍ଲାଉଥିବା ଲୋକଙ୍କ ଅପେକ୍ଷା ଚଢ଼ିବା ଲୋକସଂଖ୍ୟା ଅଧିକ । ସେମାନଙ୍କୁ ଦେଖି ମନେହେଲା ସେମାନେ ସବୁ ହାବଡ଼ା ଯାଉଛନ୍ତି । ସେଇଠି ଗାଡ଼ି ରହିବ ।

ନିରୁଦା'ର ବନ୍ଧୁମାନଙ୍କ ସହ ରାସ୍ତା ସାରା ଆଉ ଅଧିକ କିଛି କଥାବାର୍ତ୍ତା ହୋଇନଥିଲି । ଆରମ୍ଭରେ ଯାହା ମୁଢ଼ିଆଳୁ ଖାଇଥିଲୁ, ଚା' ପିଇଥିଲୁ । ଏବେ ରାସ୍ତା ସରିବାକୁ ବସିଲାରୁ ଆମ ଭିତରେ କଥାବାର୍ତ୍ତା ବେଶ୍ ଜମିଲା । ଜଣେ ପଚାରିଲା, ଆପଣ କଲିକତାର କେଉଁଠିକି ଯିବେ ? ମାନେ କାହା ପାଖକୁ ଯିବେ ? ଆମେ ଆପଣଙ୍କୁ ତ କେବେ ଦେଖି ନଥିଲୁ । ନିରୁଦା' କ'ଣ ଆପଣଙ୍କ ନିଜ ଭାଇ ? ମାନେ ମୋର କହିବାର ଅର୍ଥ, ଏମିତି ନିଜ ପାଖ ଲୋକ ? ଆପଣଙ୍କ ଘର କେଉଁଠି ? ଆଗରୁ କେବେ କଲିକତା ଯାଇଛନ୍ତି ?'' ଭାବିଲି, ଏତେବେଳ ଧରି ଗାଡ଼ିରେ କିଛି କଥାବାର୍ତ୍ତା ନାହିଁ, ଆଉ ଏବେ ଏକାସାଙ୍ଗେ ଅସଂଖ୍ୟ ପ୍ରଶ୍ନ । ମୁଁ ଗୋଟିଏର ଜବାବ ଦେଉଦେଉ ଅନ୍ୟଟି ଭୁଲିଯାଉଥିଲି । ହେଲେ ସେମାନଙ୍କ ସାଙ୍ଗେ କଥା ହେବାର ଅଛି । ସେଥିପାଇଁ ମୁଁ ଗୋଟିଏ ପରେ ଗୋଟିଏ ପ୍ରଶ୍ନର ଉତ୍ତର ଦେଲି । ଶେଷରେ ଉତ୍ତର ଦେଇସାରି ସ୍ୱସ୍ତିରେ ଏକ ଦୀର୍ଘ ନିଃଶ୍ୱାସ ମାରିଲି । ସବୁ ପ୍ରଶ୍ନର ସନ୍ତୋଷଜନକ ଉତ୍ତର ଦେଇ ନଥିଲେ ସୁଦ୍ଧା ସେମାନେ ବୁଝିଗଲେ ଯେ ମୋତେ କେଉଁଠିକୁ ଆଉ କାହା ପାଖକୁ ଯିବାର ଅଛି । ମୁଁ ତାଙ୍କୁ ନିଜ ପଢ଼ା-ଲେଖା କଥା କହିବାରୁ ସେମାନେ ମତେ ଆଶ୍ଚର୍ଯ୍ୟଚକିତ ହୋଇ ଉପରୁ ତଳ ଯାଏ ଦେଖିଲେ । କିଛି କ୍ଷଣ ପରେ ଜଣେ କହିଲେ, ''ଗେଟ୍ ପର୍ଯ୍ୟନ୍ତ ଚାଲନ୍ତୁ ।'' ଏବେ ଷ୍ଟେସନ୍ ଆସିଯିବ । ତାଙ୍କ କଥା ଶୁଣି ମୋର ଛାତି ଭୟ ଆଉ ଲାଜରେ ଥରିବାକୁ ଲାଗିଲା । ଓହ୍ଲାଇବାପାଇଁ ଗେଟ୍‌ରେ ସମସ୍ତେ ଜମା ହୋଇଗଲେ । ମତେ ଲାଗିଲା, ନିରୁଦା'ର ଜଣେ ବନ୍ଧୁ କିଛି କହିବାପାଇଁ ଚାହୁଁଛନ୍ତି । କିନ୍ତୁ କଥାବାର୍ତ୍ତାପାଇଁ ଆଉ ଅବସର କୁଆଡ଼େ ? ଗାଡ଼ି ରହିବା କ୍ଷଣି ଆମେ ଅଲଗା ଅଲଗା ହୋଇଗଲୁ ।

ଗାଡ଼ି ରହିବା ବେଳକୁ ମୋ ମନରେ ଜେଠୁ ଆଉ ସଂଜୟଦା'ଙ୍କୁ ଭେଟିବା ଚିନ୍ତା ପଶିଲା । ତାଙ୍କ ଆସିବା ଡେରି ହେଲେ ବଡ଼ ଘଡ଼ି ପାଖରେ ମତେ ଅପେକ୍ଷା କରିବାକୁ ପଡ଼ିବ । ତାତୁସ୍ ମତେ କହିଥିଲେ, ସେମାନେ ବଡ଼ଘଡ଼ି ପାଖରେ ମୋତେ ଖୋଜିବେ । କିନ୍ତୁ 'ବଡ଼ଘଡ଼ି' କେଉଁଠି ତାହା ମୁଁ କେମିତି ଜାଣିବି ? ନିରୁଦାଙ୍କ ବନ୍ଧୁଙ୍କୁ ପଚାରିଥିଲି । ତାଙ୍କ କହିବା କଥା ଯେ 'ବଡ଼ଘଡ଼ି' ବାଟ ଦେଇ ସମସ୍ତେ ଷ୍ଟେସନରୁ ବାହାରକୁ ଯାଆନ୍ତି । ଅନ୍ୟ ବନ୍ଧୁ ଜଣକ ପଚାରିଥିଲେ, ''କିଏ ଆସିବାର ଅଛି କି ?'' ଯଦି ନଆସନ୍ତି ଆପଣ କ'ଣ କରିବେ ? ମୁଁ କହିଲି, ''ଅସୁବିଧା ହେବ ନି । ତାଙ୍କ ଠିକଣା ମୋ ପାଖରେ ଅଛି ।

ଗାଡ଼ି ହାବଡ଼ା ଷ୍ଟେସନ୍‌ରେ ଯାଇ ପହଞ୍ଚିଲା । ମୋର ଖୁସିର ସୀମା ନଥାଏ । ଏଠି ଅନେକ ପ୍ଲାଟ୍‌ଫର୍ମ । କେତେ ସୁନ୍ଦର ! ଏହାର ତୁଳନାରେ ଦିଲ୍ଲୀ ଷ୍ଟେସନ୍ ତ କିଛି ନୁହେଁ । ମୁଁ ଧୀରେଧୀରେ ଭିଡ଼ ପଛେ ପଛେ 'ବଡ଼ଘଡ଼ି' ପାଖକୁ ଚାଲିଲି । ନିରୁଦା'ର ବନ୍ଧୁ ମୋ ଉପରେ ନଜର ରଖିଥାନ୍ତି । ମୁଁ କେବେ ତାଙ୍କ ଆଡ଼କୁ ଦେଖେ ତ ଆଉ କେବେ ଜେଠୁ ଓ ସଂଜୟଦା'କୁ ଖୋଜିବାରେ ଲାଗେ । କିଛି ଦୂର ଯିବା ପରେ ସଂଜୟଦା' ଆଉ ଜେଠୁଙ୍କୁ ମୋ ବହିଧରି ଛିଡ଼ାହୋଇଥିବାର ଦେଖିଲି । ମୁଁ

ସେମାନଙ୍କୁ ଦୂରରୁ ଚିହ୍ନି ପକାଇଲି । ବହି ନେଇ ଦୁହେଁ ଏମିତି ଛିଡ଼ା ହେଇଥିଲେ, ଯେମିତି କହୁଥିଲେ, "ଏହି ବହିକୁ ଦେଖ । ଦେଖିଲେ ପଢ଼ିବାକୁ ଇଛା ହେବ । ପଢ଼ିଲେ ଓ୍ୱା ଓ୍ୱା କହି ସାବାସି ଦେବାପାଇଁ ମନ ହେବ।" ତାଙ୍କ ପାଖରେ ମୋ ବହି ନଥାନ୍ତା ତ ଜେଠୁଙ୍କୁ ମୁଁ ବୋଧେ ଚିହ୍ନି ପାରିନଥାନ୍ତି। ତାତୁସ୍‌ଙ୍କ ଘରେ ଜେଠୁଙ୍କ ଯେଉଁ ଫଟୋ ଦେଖିଥିଲି, ସେଇ ଫଟୋରୁ ଏବେକାର ମୁହଁ ବଦଳି ଗଲାଣି । ଜେଠୁ ଦାଢ଼ି ରଖିଥିଲେ । ବୟସ ସତୁରି-ପଞ୍ଚସ୍ତରି ପାଖାପାଖି । ଦେହରେ କୁର୍ତ୍ତା-ପାଇଜାମା । ଗୋରା, ଲମ୍ବା, ଚଉଡ଼ା ଶରୀର । ଫଜୟଦା'କୁ ପ୍ରଥମ ଥର ଦେଖୁଥିଲି । ବୟସ ତିରିଶ ପଇଁତିରିଶ ବର୍ଷ ହେବ। ମଧ୍ୟମ ଧରଣର ଶରୀର ଗଠନ । ଗହମ ରଂଗ, କଳା ଛୋଟ ଦାଢ଼ି । କ୍ରୋଧ ଆଉ ମାୟା ଝଲକୁଥିବା ତୀକ୍ଷ୍ଣ, ଚମକଦାର ସୁନ୍ଦର ଆଖି । ମୁଁ ହସିହସି ସେମାନଙ୍କ ପାଖକୁ ଗଲି । ସେମାନେ ବୁଝିଗଲେ ଯେ ଏଇ ବେବି ହୋଇଥିବ । ମୁଁ ଶୀଘ୍ର ଯାଇ ଜେଠୁଙ୍କ ପାଦଛୁଇଁ ପ୍ରଣାମ କରିବାକୁ ଚେଷ୍ଟାକଲି । ସେ 'ହେଲା ହେଲା' କହି ପଛକୁ ଘୁଞ୍ଚି ଗଲେ । ପାଦ ଛୁଇଁବାକୁ ଦେଲେ ନାହିଁ । ମତେ ଦେଖି ଦୁହେଁ ବହୁତ ଖୁସୀ ହେଲେ । ଜେଠୁ କହିଲେ, "ଚାଲ ଚାଲ । ସବୁ ଠିକ୍ ତ ? ତୋ ପିଲାମାନେ କେମିତି ଅଛନ୍ତି ? ତାତୁସ୍ କେମିତି ଅଛନ୍ତି ? ଆଉ ଅର୍ଜୁନ କେମିତି ଅଛି ? ଜେଠୁ ସମସ୍ତଙ୍କ କଥା ପଚାରି ଯାଉଥିଲେ। ମୁଁ ହସିକି ଥରେ କହିଲି, "ସମସ୍ତେ ଭଲ ଅଛନ୍ତି ।" ଫଜୟଦା' ମୋତେ ଦେ କହି, ଜବରଦସ୍ତ ମୋ'ଠାରୁ ବ୍ୟାଗ୍ ନେଇଗଲେ । ମୁଁ ନିରୁଦା'ର ବନ୍ଧୁମାନଙ୍କୁ ଇସାରାରେ ଜଣାଇଦେଲି ଯେ ମତେ ମୋର ବନ୍ଧୁ ମିଳିଯାଇଛନ୍ତି। ସେମାନେ ବି ହାତ ଇସାରାରେ 'ଠିକ୍ ଅଛି' କହି ଚାଲିଗଲେ । ଫଜୟଦା' ପଚାରିଲେ, ସେମାନେ କିଏ ? ମୁଁ କହିଲି, ସେମାନେ ଦୁର୍ଗାପୁରରୁ ମୋ ସାଙ୍ଗରେ ଆସୁଥିଲେ ।

ଜେଠୁ ଗୋଟିଏ ହାତରେ ମୋର ବହି ଆଉ ଅନ୍ୟ ହାତରେ ମୋ ପାଇଁ କିଣିଥିବା ଖବରକାଗଜ ଧରି ଧୀରେଧୀରେ ଚାଲୁଥିଲେ । ଖବରକାଗଜ ମତେ ଦେଇ କହିଲେ, "ବେବି କିଛି ଖାଇନୁ ନା ? ଚାଲ୍ ଖାଇ ନେ ।" ମୁଁ କହିଲି, ନା ପ୍ରଥମେ ଘରକୁ ଚାଲ ।" ସେ କହିଲେ, "ନା କେତେବେଳୁ ଘରୁ ବାହାରିଥିବୁ । ଭୋକ ଲାଗିବଣି । ଚାଲ୍, କ'ଣ କିଛି ଖାଇ ନେ । ମତେ ଗୋଟିଏ ଦୋସା ଦୋକାନକୁ ନେଇଗଲେ । ଫଜୟଦା' ଦୋସାର ଅର୍ଡ଼ର ଦେଲେ । ମୋ ପାଖରେ ବସି, ଦୁଇଜଣ କଥା ହେବାରେ ଲାଗିଲେ । ଜେଠୁ ମୋ ଆଡ଼କୁ ଦେଖି ଫଜୟଦା'କୁ କହିଲେ, "ବେବିର ମୁହଁ ଦେଖ, ତାର ଫଟୋ ସାଙ୍ଗରେ ଆଦୌ ମିଶୁ ନାହିଁ ।"ଫଜୟଦା' ହଁ କଲେ । ମୁଁ ଭାବିଲି, ମୋ ଚେହେରା ମୋ ଫଟୋରୁ ବୋଧହୁଏ ଆହୁରି ଖରାପ । ଏହି କଥା ଭାବି ମୁଁ ଜେଠୁଙ୍କୁ ପଚାରିବାରୁ ସେ କହିଲେ, "ଆରେ ନା, ଫଟୋରେ ତୋର ଚେହେରା ଠିକ୍ ଆସିନାହିଁ । ଏକଥା ଫଜୟଦା' ବି କହିଲେ । ମୁଁ କିଛି କହିଲି ନାହିଁ। ଭାବିଲି, ଆପଣମାନଙ୍କ ଭଳି ବଡ଼ଲୋକଙ୍କ ସହିତ ବିନା ଲାଜ ଭୟରେ ତ ବସି ପାରୁଛି । ମୁହଁ ଭଲ ହେଉ ବା ଖରାପ । ସମସ୍ତେ କ'ଣ ଐଶ୍ୱର୍ଯ୍ୟା ରାୟ ବା ଜୁହି ଚାଓଲା ହୋଇପାରିବେ ! ଭଗବାନ ସେମାନଙ୍କୁ ସୃଷ୍ଟି କରିଛନ୍ତି ଆଉ ଅସୁନ୍ଦର ଝିଅଙ୍କୁ ବି । ସେଥିରେ କିଏ ବା କ'ଣ କରିପାରିବ ? ଭଲ ନଜରରେ ଦେଖିଲେ ଖରାପ ଜିନିଷ ବି ଭଲ ଲାଗେ । ଏଥିରେ ଦ୍ୱିରୁକ୍ତି ଅଛି ? ମୋଠାରେ ଅସାଧାରଣ କିଛି ନାହିଁ । କିନ୍ତୁ

ଯେତେବେଳେ ଲୋକ ଜାଣନ୍ତି ଯେ ମୁଁ ଲେଖାପଢ଼ା କରେ, ମୋର ଗୋଟିଏ ବହି ବାହାରିଛି, ସେମାନେ ଅବାକ୍ ହୋଇଯାଆନ୍ତି । ମୁଁ ଖାଲି ମୋ ନିଜ କଥା କହୁନାହିଁ । ଆମେ ସମସ୍ତେ ଉପରୁ ଉପରୁ ଦେଖି ଜଣକୁ ଖାରଜ କରିଦେଉ । ଜାଣିବାପାଇଁ ଚେଷ୍ଟା କରୁ ନାହିଁ ଯେ ତା' ଭିତରେ କିଛି ଭଲ ଲୁଚି ରହିଥାଇପାରେ ।

ବେବି ନିଜକୁ କେବେ କେବେ ଦର୍ପଣରେ ଦେଖେ । ଅନ୍ୟମାନଙ୍କ ନଜରରେ ସେ କେମିତି ଦିଶୁଥିବ । ଖରାପ ଲାଗୁଥିବାର ସନ୍ଦେହ ହେଲେ ନିଜ ଗାଲରେ ଦୁଇ ଚଟକଣା ମାରି ହୁଏ । ପୁଣି ଭଲ ଲାଗୁଥିବ ବୋଲି ଆଶା ରହିଲେ ମୁହଁକୁ ଚୁମା ଦିଏ । ହଉ, ଛାଡ଼ ସେ କଥା । ଆମେ ହୋଟେଲ୍‌ରେ ବସି କଥା ହେଉଥାଉ, ଜଣେ କୋଡ଼ିଏ ବାଇଶି ବର୍ଷର ପିଲା ତିନିଟା ପ୍ଲେଟ୍‌ରେ ଦୋସା, ବରା, ଚଟଣୀ, ତରକାରି ଆଉ କେତେ କ'ଣ ଦେଇକି ଗଲା । ଜେଠୁ ଖାଇ ଖାଇ କଥା ହେଉଥିଲେ । ତାଙ୍କ କଥା ଶୁଣି ମୁଁ କେବଳ ହଁ ହଁ କରୁଥିଲି । ଚାମଚରେ ଖାଇବାର ଅଭ୍ୟାସ ନଥିବାରୁ ମୁଁ ଟିକେ ଦ୍ୱିଧାରେ ଥିଲି । ସଂଜୟଦା' ମୋର ଅବସ୍ଥା ଦେଖି ସ୍ୱାଧୀନ ହୋଇ ଖାଇବାକୁ ଇସାରା କଲେ । ତା'ପରେ ରାଗରେ ଚାମଚକୁ ପ୍ଲେଟର ଗୋଟିଏ କଡ଼ରେ ରଖିଦେଇ ଖାଇବାରେ ଲାଗିଲି । ଭାବୁଥାଏ, ଏତେ ବଡ଼ ବଡ଼ ଲୋକଙ୍କ ସାଙ୍ଗରେ ଗୋଟିଏ ଟେବୁଲ୍‌ରେ ବସି କଥାବାର୍ତ୍ତା କରିବା, ଖାଇବା-ପିଇବା ମୋ ପରି ଝିଅପାଇଁ କ'ଣ କିଛି ଛୋଟ କଥା ହୋଇଛି ?

ଖାଇପିଇ ଜେଠୁ ବିଲ୍ ଦେବାପାଇଁ ଗଲେ । ମୁଁ ନିଜ ବ୍ୟାଗ୍‌ନେଇ ଉଠି ଛିଡ଼ା ହେଲି । ସଂଜୟଦା ବ୍ୟାଗ୍ ପୁଣି ମୋ'ଠାରୁ ନେଇଗଲେ । ମତେ ବହୁତ ଅଡୁଆ ଲାଗୁଥାଏ । ମୋ ପରି ଝିଅଠାରୁ କିଛି ସାହାଯ୍ୟ ନନେଇ ସେ ନିଜେ ମତେ କେତେ ସାହାଯ୍ୟ କରୁଛନ୍ତି, ମତେ କେତେ ସମ୍ମାନ ଦେଉଛନ୍ତି । ଆମେ ସେଠୁ ବାହାରିଲୁ । ଗୋଟିଏ ଗୋଲ୍ ବଡ଼ଘଡ଼ି ଉପରେ ମୋର ନଜର ପଡ଼ିଲା । ତା' ତଳେ ବସିବାପାଇଁ ଜାଗା ଥିଲା । ବହୁତ ଲୋକ ସେଠି ବସିଥିଲେ । ମୁଁ ସଂଜୟଦା'କୁ ପଚାରିଲି, ''କ'ଣ ଏହି ଜାଗାକୁ ବଡ଼ଘଡ଼ି କହନ୍ତି ?'' ସେ କହିଲେ, ହଁ, ତୁ କ'ଣ ପ୍ରଥମ ଥର ଲାଗି ହାବଡ଼ା ଆସୁଛୁ ? ମୁଁ କହିଲି, ''ହଁ ।'' ଜେଠୁ ଶୁଣି କହିଲେ, ''କ'ଣ ତୁ କଲିକତା କେବେ ଆସିନୁ ?'' ସଂଜୟଦା' କହିଲେ, କଲିକତାର ଏତେ ପାଖରେ ଥାଇବି କେବେ ଆସି ପାରିନୁ ?'' ଜେଠୁ ଅବସୋସ ପ୍ରକାଶ କରି ସଂଜୟଦାଙ୍କୁ କହିଲେ, ସମୟ ମିଳିଲେ ତାଙ୍କୁ ଟିକେ ବିଭିନ୍ନ ସ୍ଥାନ ଦେଖେଇଦେବୁ ।''

ଜେଠୁ ଏତିକି କହି ଟେକ୍ସିକୁ ଡାକିଲେ । ଗୋଟିଏ ଡ୍ରାଇଭର ସାଙ୍ଗରେ କଥା ହେଲେ । ମତେ କିଛି ଶୁଣାଗଲା ନାହିଁ । ପୁଣି ଆଉ ଏକ ଡ୍ରାଇଭର ସାଙ୍ଗରେ କଥା ହେବାରୁ ସେ ସଙ୍ଗେସଙ୍ଗେ ରାଜି ହେଲା । ଟେକ୍ସିରେ ଆମେ ତିନି ଜଣ ପଛରେ ବସି ଚାଲିଲୁ । ସଂଜୟ ଦା' ହାତ ଦେଖେଇ ବିଭିନ୍ନ ବିଲ୍ଡିଂ ଆଉ ଜାଗା ବିଷୟରେ କହୁଥିଲେ । ମୁଁ ଅଧା ବୁଝୁଥିଲି, ବାକି ଅଧାକ ନ ବୁଝି କେବଳ ହୁଁ ହାଁ କରୁଥିଲି । ସବୁକିଛି ଆଶ୍ଚର୍ଯ୍ୟ ହୋଇ ମୁଁ ଦେଖୁଥାଏ । ଭାବୁଥିଲି, ମୋର ଛୋଟ ଭାଇ ଏହି ସହରରେ ରହେ । ରାସ୍ତାରେ ତା ସହିତ ଦେଖା ହୋଇଗଲେ କେତେ ସୁନ୍ଦର ନ ହୁଅନ୍ତା ? ରାସ୍ତାରେ ଚାଲୁଥିବା ଭିଡ଼ ଭିତରେ ମୁଁ ମୋ ନିଜ ଭାଇକୁ ଚିହ୍ନିବାକୁ ପ୍ରୟାସ କରୁଥିଲି ।

ଟେକ୍ସିବାଲାକୁ ଧ୍ୟାନପୂର୍ବକ ଦେଖିଲି । ଲାଗିଲା, ଇଏତ ମୋ ଭାଇ ! ସେ ବିଚରା ମୁଁ ତାକୁ ବାରମ୍ବାର ଦେଖୁଥିବାରୁ ମୁହଁ ବୁଲେଇ ଦେଲା । ଜେଠୁ ମତେ ପଚାରିଲେ, ''ତୋତେ ତୋର ଛୋଟ ଭାଇର ଠିକଣା ଜଣାଅଛି ?'' ଉତ୍ତର ଦେଲି, ''ନା, ଠିକ୍ କରି ଜାଣିନି ।'' ଜେଠୁ ପୁଣି ସଂଜୟଦାଙ୍କୁ କହିଲେ, ''ତାହାହେଲେ କ'ଣ ଖୋଜି ହେବ ? ତା'ଠାରେ ସମୟ ବି ନାହିଁ । କ'ଣ ବା କରିବା ଯେ ? ଜେଠୁ ପୁଣି ଅଲଗା କଥା ଆରମ୍ଭ କଲେ । ମତେ କହିଲେ, ''ବେବି, ତୋର ବହି ତୋତେ କେମିତି ଲାଗିଲା ? ମୁଁ ଚିନ୍ତାରେ ପଡ଼ିଗଲି, କେମିତି ବା ଜଣେଇବି । କିନ୍ତୁ କିଛି ତ କହିବାକୁ ପଡ଼ିବ । ମୁଁ ଖୁସି ହୋଇ କହିଲି, ''ବହୁତ ଭଲ ଲାଗିଲା ।'' ଯେଉଁ ଢଙ୍ଗରେ କହିଲି ତାହା ଶୁଣି ଦୁହେଁ ଯାକ ଖୁସୀ ହେଲେ । ମୋର ବହି ବାହାରିବାରୁ ମତେ କେତେ ଖୁସି ଲାଗୁଛି ମୁଁ ପ୍ରକାଶ କରି ପାରୁନାହିଁ । ମୁଁ ତ ଚିନ୍ତା ବି କରିପାରୁ ନଥିଲି ଯେ ଏତେ ବଡ଼ କାମଟିଏ କରିପାରିବି । ପ୍ରକାଶିତ ବହିଟିକୁ ନ ଦେଖିବା ଯାଏ, ମୋର ବିଶ୍ୱାସ ହେଉ ନଥିଲା, ଲାଗୁଥିଲା, ଏସବୁ ସତ ନା ସପନ !

ଘରେ ପହଞ୍ଚି ଜେଠୁ କହିଲେ, ''ଦୁଇଟା ସୁଦ୍ଧା ସମସ୍ତେ ଆସିଯିବେ । ମୁଁ କହି ରଖିଛି । ପୁଣି କ'ଣ ଭାବି କହିଲେ, ''ତୁମେମାନେ ବସ, ମୁଁ ଏବେ ଆସୁଛି ।'' ସେ ଚାଲିଗଲେ । ମୁଁ ଏବଂ ସଂଜୟଦା' କବାଟ ପାଖରେ ଜୋତା ଖୋଲି ଘର ଭିତରକୁ ଗଲୁ । ଘରେ ସଂଜୟଦା' ବସିପଡ଼ିଲେ, ମୁଁ ଏପଟ ସେପଟ ବୁଲି ଘରର ବହିଗୁଡ଼ିକୁ ଦେଖିବାରେ ଲାଗିଲି ।

ସତରେ ଏହା କ'ଣ ଜଣେ ଲେଖକଙ୍କ ଘର ! ଚାରିଆଡ଼େ ବହିପତ୍ର, କାଗଜ, ମଝିରେ ଶୋଇବାପାଇଁ ଖଟ । ଗୋଟିଏ ପାଖରେ ଆଲମାରି ଆଉ ତଳେ ବିଛା ହୋଇଚି ଗୋଟିଏ ଗଦି । ଏହାକୁ ଛାଡ଼ି ଆଉ ଗୋଟିଏ ବଡ଼ ରୁମ୍ ଅଛି । ସେଠି ଗୋଟିଏ ଖଟ, ଡାଇନିଙ୍ଗ୍ ଟେବୁଲ୍ ଆଉ ଜପଡ଼ା ଆଦି ରଖିବାପାଇଁ ଆଲମାରି । ରନ୍ଧାଘର ଯେମିତି ସମସ୍ତଙ୍କ ଲାଗି ଖୋଲା । ସମସ୍ତେ ଜେଠୁଙ୍କୁ ନିଜର ଭାବି ତାହାର ସଦୁପଯୋଗ କରନ୍ତି । ଜେଠୁଙ୍କ ଘରକୁ ବହୁତ ଲୋକ ଆସନ୍ତି । ସମସ୍ତଙ୍କ ପ୍ରତି ତାଙ୍କର ସ୍ନେହ । ସ୍ନେହ ନ ମିଳିଲେ କିଏ କାହିଁକି କାହା ପାଖକୁ ଭଲା ଯିବ !

ମୁଁ ବୁଲି ବୁଲି ଜେଠୁଙ୍କ ବହି ଦେଖୁଥିଲି । ସେତେବେଳେ ସଂଜୟଦା' ମତେ ବସିବାପାଇଁ କହିଲେ । ଜେଠୁ ତଳପଟୁ ଆସୁଥିଲେ; କହିଲେ, ''ଛିଡ଼ା କ'ଣ ହେଇଛୁ ବେବି ? ବସିପଡ଼ । ମୁଁ କହିଲି, ''ହଁ ବସୁଛି, ପ୍ରଥମେ ହାତ ମୁହଁ ଧୋଇଦିଏ ।'' ଜେଠୁ ମତେ ବାଥ୍ ରୁମ୍ ଦେଖାଇବାପାଇଁ ଯାଉଥିଲେ । ମୁଁ କହିଲି, ମୁଁ ଆଗରୁ ଦେଖିସାରିଛି । ସଂଜୟଦା' କହିଲେ, ''ବେବି ବୁଲିବୁଲି ସବୁ ଦେଖିସାରିଲାଣି । ବାଥ୍ ରୁମ୍‌ରୁ ଆସି ମୁଁ ଜେଠୁଙ୍କୁ ପଚାରିଲି, ''ଶର୍ମିଳା ଦିଦି ଆଜି କ'ଣ ଆସିବେ ନାହିଁ ?'' ସେ କହିଲେ, ''ହଁ, ତାକୁ ତୋର ଆସିବା କଥା ଜଣାଅଛି । ଦେଖ୍, ଆସିପାରୁଛି କି ନାହିଁ । ତାର ଶରୀର ବହୁତ ଭାରି ହୋଇଗଲାଣି ନା । ତତେ ତ ଜଣାଥିବ ତା' କଥା ?'' ତାଙ୍କ କଥାରୁ ମନେହେଲା, ଶର୍ମିଳା ଦିଦି କଥା କହିବାପାଇଁ ଯେମିତି ତାଙ୍କୁ ଅସୁବିଧା ବୋଧ ହେଉଥିଲା । ତାଙ୍କ କଥାରୁ ମୁଁ ବୁଝିଗଲି । ତିନିତିନିଟା ଛୁଆର ମା' ବେବି କ'ଣ ବୁଝିପାରିବ ନାହିଁ ଯେ ଶର୍ମିଳା ଜୀ ମା' ହେବାକୁ ଯାଉଛି । ଏଥିରେ ଲଜ୍ଜା ବା କ'ଣ ଯେ ? ବାହାଘର ପରେ ଠିକ୍ ସମୟରେ

ପିଲାଛୁଆ ନହେଲେ ଝିଅମାନଙ୍କୁ ଯେଉଁ ଅପମାନ ସହିବାକୁ ପଡ଼େ, ସେଇଟା କିଏ ନ ଜାଣେ ? ପିଲାପିଲି ହେଲେ ଝିଅକୁ ଶାଶୂଘରେ ସମ୍ମାନ ମିଳେ । ନହେଲେ 'ବାଞ୍ଝ' କହନ୍ତି । ସମସ୍ତେ ତା'ଠାରୁ ଦୂରେଇ ରହନ୍ତି ।

ମୁଁ, ଜେଠୁ ଆଉ ସଂଜୟଦା' କଥାବାର୍ତ୍ତା କରୁଥିଲୁ । ସଂଜୟଦା' ମତେ ପଚାରିଲେ, ''ବେବି, ମୁଁ ତୋ' ପାଇଁ ଜୟନଗରର ମୁଆଁ ଆଣିଛି । ଖାଇବୁ ?'' ମୁଁ କହିଲି, ''ଜୟନଗରର ମୁଆଁ ।'' ସଂଜୟଦା' କହିଲେ, ''ହଁ ଖାଇଛୁ ?'' ନାଁ ତ ଶୁଣିଲା ପରି ଲାଗୁଛି । ବୋଧେ ଖାଇଛି । ଆଚ୍ଛା ଖଇରେ ତିଆରି ମୁଆଁ ତ ? ଭଗବାନ ଶ୍ରୀଗୋପାଳ ହାତରେ ଧରିଥାନ୍ତି । ସଂଜୟଦା' କହିଲେ, ହଁ, ସେଇଟା । ତା' ମାନେ ତୁ ଜାଣିଛୁ । ଏଇଠି ରଖାହୋଇଛି । ଖାଇନେ । ଠିକ୍ ଏହି ସମୟରେ ସେଠିକି ତିରିଶି ପଇଁତିରିଶି ବର୍ଷର ଗେଡ଼ା ଆଉ ଗହମ ରଂଗର ସ୍ତ୍ରୀ ଲୋକ ଜଣେ ଆସିଲା । ତଳେ ଜେଠୁଙ୍କ ଭାଇଙ୍କ ଘରେ ସେ କାମକରେ । ସବୁଦିନ ଜେଠୁଙ୍କୁ ଭେଟିବାପାଇଁ ଚାଲିଆସେ । ଚଟାଣରେ ବସି ସେ ଜେଠୁଙ୍କଠୁ ମୋ କଥା ଜାଣିବାକୁ ଚାହିଁଲା । ସଂଜୟଦା' ବୁଝିପାରିଲେ, ଜେଠୁଙ୍କୁ ସେ କାହାକଥା ପଚାରୁଛି । କହିଲେ, ମୋ କଥା ପଚାରୁଛ ? ସ୍ତ୍ରୀ ଲୋକଟି କହିଲା, ''ନା ନା ମୁଁ ତ ଆପଣଙ୍କୁ ଜାଣିଛି । ପ୍ରାୟ ସବୁଦିନ ଆସନ୍ତି । ଜେଠୁ କହିଲେ, ''ସେ ବେବି କଥା ପଚାରୁଛି ।'' ଆଉ ତାକୁ କହିଲେ, ''ବାବାରେ, ଏବେ ସେ ଜଣେ ଲେଖିକା ।'' ସେହି ସ୍ତ୍ରୀ ଲୋକଟି ମତେ ପଚାରିଲା, ''ସତରେ ତୁମେ ଲେଖ ?'' ମୁଁ ଚୁପ୍ ରହିଲି । ସଂଜୟଦା' କହିଲେ, ''ହଁ ସେ ବହିଟିଏ ଲେଖିଛି । ଏହି ବହି ।'' ସେ ବହିଟିକୁ ଦେଖାଇଦେଲେ । ସ୍ତ୍ରୀ ଲୋକଟି ଜେଠୁଙ୍କୁ ପଚାରିଲା, ''ଆପଣଙ୍କ ପାଖକୁ ଯେତେ ଲୋକ ଆସନ୍ତି, କ'ଣ ସମସ୍ତେ ସେହି ଲେଖାପଢ଼ା କାମ କରନ୍ତି ?'' ସଂଜୟଦା' ହଁ କହିଲାରୁ ସେ ଆଶ୍ଚର୍ଯ୍ୟ ହୋଇ କହିଲା, ''ଏ ମା, ମତେ କ'ଣ ଜଣା, ମୁଁ ଭାବୁଥିଲି ସେମାନେ ତାଙ୍କୁ ଭଲ ପାଆନ୍ତି । ଆଉ ସେ ସମସ୍ତଙ୍କୁ । ସଂଜୟଦା କହିଲେ, ତୁମେ ଏତେ ଦିନଧରି ଆସୁଛ । ଅଥଚ ଏତିକି ଜାଣିନ ?'' ସ୍ତ୍ରୀ ଲୋକଟି କହିଲା, ''ମୁଁ ଯଦି ନପଚାରେ ଜାଣିବି କେମିତି ? ମୁଁ ପଚାରିବି ବା କାହିଁକି ? ମତେ ଜଣା, ଇଏ ଜଣେ ମିଳାମିଶା କରିବାକୁ ଭଲ ପାଉଥିବା ଲୋକ । ସମସ୍ତଙ୍କ ସାଙ୍ଗରେ ସେ ମିଳିମିଶି ରହନ୍ତି ।'' ସେହି ସ୍ତ୍ରୀ ଲୋକଟିର ପ୍ରତି କଥାକୁ ମୁଁ ଗିଳି ଯାଉଥାଏ । ସଂଜୟଦା'କୁ ପୁଣି ପଚାରିଲେ, ''ଦାଦା ତୁମେମାନେ ତେବେ କ'ଣ ବହି ଛପାଛପି କାମ କର ? ଜେଠୁଙ୍କ କଥାରେ ସଂଜୟଦା'ଙ୍କ ଧ୍ୟାନ ରହିଥିଲା । ସେ ଉତ୍ତର ଦେଲେ ନାହିଁ । ତେଣୁ ସ୍ତ୍ରୀ ଲୋକଟି ଧୀର କଣ୍ଠରେ ମତେ ପଚାରିଲା, ସଂଜୟଦା' କ'ଣ ବହି କାମ କରେ ।'' ମୁଁ ହଁ ମାରିଲି । ଏହା ପରେ ସେ ବଡ଼ ପାଟିରେ 'ଓ ଦାଦା' କହି ନିଜ ଆଡ଼କୁ ଧ୍ୟାନ କେନ୍ଦ୍ରିତ କରିବାକୁ ଚେଷ୍ଟାକଲା । କହିଲା, ''ତେବେ ତୁମେ ମୋର କାମ କରିପାରିବ ?'' ସଂଜୟ ଦା' ତାକୁ ପଚାରିଲେ, ''ତୁମର ଏବେ କ'ଣଟା କାମ ମୋ'ଠାରେ ପଡ଼ିଲା ?'' ସେ କହିଲା, ''ନା, ମୋର ନୁହେଁ, ମୋ ବରର ଗୋଟିଏ କାମ ଅଛି । ଆପଣଙ୍କୁ ତ ଜଣା ଥିବ, ମୋ ବର ସବୁବେଳେ ବସି ଲେଖୁଥାଏ । କ'ଣ ଲେଖେ ତାକୁ ଜଣା । ଥରେ ଥରେ ମତେ ଏତେ ରାଗମାଡ଼େ ଯେ, ତାର ସବୁ କାଗଜପତ୍ର ମୁଁ ଫାଡ଼ିଫୁଡ଼ି ଫିଙ୍ଗିଦିଏ । କିନ୍ତୁ ତାକୁ ଗୋଟାଇ ନେଇ ସେ ପୁଣି

ଯୋଡ଼ିବାକୁ ଲାଗେ । ମୋର ରାଗ, ମୁଁ ବୁଲିବୁଲି ଯା ଘରେ ତା' ଘରେ କାମ କରି ଦୁଇଚାରି ପଇସା ରୋଜଗାର କରିବାକୁ ଚେଷ୍ଟାକରେ । ଅଥଚ ସେ କିଛି ନକରି କାଗଜ କଲମ ନେଇ ପଡ଼ି ରହିଥାଏ । ଏହି କଥାକୁ ନେଇ ବେଳେବେଳେ ମୁଁ ତାକୁ ଖୁବ୍ ଗାଳି କରେ ।'' ଆମେମାନେ ସ୍ତ୍ରୀ ଲୋକଟିର କଥାକୁ ଚୁପ୍‌ଚାପ୍ ଶୁଣୁଥିଲୁ । ମୁଁ ଭାବିଲି, ତା'ର ସ୍ୱାମୀ ଦିନରାତି କ'ଣପାଇଁ ପଢୁଥାଏ, ତାହା ସ୍ତ୍ରୀ ଲୋକଟି ବୁଝିପାରୁ ନାହିଁ । ତାକୁ ଲେଖାପଢ଼ାରୁ ବେଶି ଆନନ୍ଦ ମିଳୁଥିବ । ଚବିଶି ଘଣ୍ଟା ସେ ସେହି ଦୁନିଆରେ ରହିବାକୁ ଚାହେଁ । ଲୋଡ଼ା କେବଳ କାଗଜ କଲମ । ସ୍ତ୍ରୀ ଲୋକଟି କିଛି ସମୟ ଚୁପ୍ ରହି ପୁଣି କହିଲା, ''ଜାଣିଛ ଦାଦା, ତାକୁ କାହାରି ଉପରେ ଭରସା ନାହିଁ । ଚିହ୍ନା ପରିଚୟଙ୍କ ମଧ୍ୟରେ ବି ଏମିତି କେହି ନାହାନ୍ତି, ଯେ ତା'ର ଲେଖାକୁ ଛପେଇଦେବେ । ତା' କହିବା କଥା, ତା ଲେଖା ଭଲ ନା ଖରାପ, ସେ କଥା ସେ ଜାଣେ । ହେଲେ ଯଦି କୌଣସି ଅଯୋଗ୍ୟ ଲୋକ ହାତରେ ତାହା ପଡ଼ିଯାଏ, ଯଦି ଲୋକଟି ତାକୁ ନିଜ ନାଁରେ ଛପେଇଦିଏ, ସବୁ ଗଲା । ସେଥିପାଇଁ ତା' ଲେଖାଗୁଡ଼ିକୁ କାହାକୁ ଦେବାପାଇଁ ସେ ଚାହେଁନାହିଁ । କହୁଛି, ''କିଛି କଥାନାହିଁ । ମୋର ଜିନିଷ, ମୋ ପାଖରେ ଥିବ ।'' ସ୍ତ୍ରୀ ଲୋକଟିର କଥାରେ ସମସ୍ତେ ହୁଁ ହାଁ କରୁଥିଲୁ । ଶେଷରେ ବସାଗଳାରେ କହିଲା, ''ଜାଣିଛ ଦାଦା, ତାକୁ ଦେଖି ଥରେ ଥରେ ମୋର ବହୁତ ଦୁଃଖ ହୁଏ । ତାର କାଗଜପତ୍ର ଫୋପାଡ଼ିଲେ କହେ ଏହାକୁ ଫିଙ୍ଗନା । ମୋର ମଲା ପରେ, ଅନ୍ତତଃ ଏହା ତୋ ପାଖରେ ରହିଥିବ । ସେତେବେଳେ ତୋ'ର ମୋ କଥା ମନେପଡ଼ିବ । ଅବଶ୍ୟ ମୁଁ ଦେଖିବାପାଇଁ ଆସିବି ନାହିଁ । କାଗଜ-କଲମ ନେଇ କ'ଣପାଇଁ ମୁଁ ଦିନ ରାତି ପଢ଼ିରହେଁ, ସେତେବେଳେ ତୁ ବୁଝିପାରିବୁ ।'' ତା'ର ଆଖି ଛଳଛଳ ହୋଇଗଲା । ନିଜ ଲୁହପୋଛି ସଂଜୟଦା'କୁ କହିଲା, ଜାଣିଛ ଦାଦା, ତାକୁ ରାଗମାଡ଼େ ନାହିଁ । ମୁଁ ରାଗି ମାଗି ଯାହା କଲେ ବି ସେ ରାଗେନି ।'' ତା'ର କଥା ଶୁଣି ମୋର ଆଖି ଲୁହରେ ଭରିଗଲା । ସଂଜୟଦା'ର ଚେହେରା ବି ଅଲଗା ଦିଶିଲା । ନିଜ ଲୁହ ପୋଛି କହିଲା, ମୁଁ ତ କିଛି ବୁଝେନାହିଁ । ପଢ଼ିବା ଲେଖିବା ଲୋକ ବୁଝିପାରିବେ । ମୁଁ ବୁଝିପାରେନି । ତେଣୁ ରାଗମାଡ଼େ । ତୁମେମାନେ ବହିଛପା କଥା ଜାଣିଛ... ।'' ହୁଏତ ସେ ଆଉ ଅନେକ କଥା କହିଥା'ନ୍ତା । ହେଲେ ଜେଠୁ ମଝିରେ କହିଲେ, ''ଆଚ୍ଛା, ଠିକ୍ ଅଛି । ତୁ ତା' ଲେଖା କିଛି ନେଇକି ଆ । ଆମେ ଦେଖିବା । ସବୁ ଆଣିବୁ ନାହିଁ । ବାଛି ବାଛି କେତୋଟି ଆଣିବୁ ।'' ସେ କହିଲା, ''ଠିକ୍ ଅଛି । ମୁଁ କାଲି ଆଣିକି ଆସିବି ।'' ପୁଣି ସେ କହିବା ଆରମ୍ଭ କଲା । ଜେଠୁ କହିଲେ ''ଆଉ ଶୁଣ୍, ବଡ଼ ବୋହୂମା' ରାଗରେ କେବେ କିଛି କହନ୍ତି ଯଦି ଖରାପ ଭାବିବୁ ନାହିଁ । ତାଙ୍କ ମନ କେବେ କେବେ ଠିକ୍ ନଥାଏ । ସେ କହିଲା, ''ନା ନା, ମୁଁ କାହିଁକି ଖରାପ ଭାବିବି ? ମୁଁ ଜାଣେ, ସେ ଥରେଥରେ ରାଗନ୍ତି । ହେଲେ ରାଗ ଉଣା ହେଲେ, କେତେ ଭଲ କରି କଥା କହନ୍ତି । ତାଙ୍କ କଥାକୁ ମୁଁ କେବେ ଧରେନି ।'' ସେ ଯିବାପାଇଁ ଉଠିଲା । ମତେ ଲାଗିଲା, ତା' ମନରୁ ଅନେକ ବୋଝ ଉଣା ହୋଇଗଲା ।

କିଛି ସମୟ ପରେ ଜେଠୁ ସଂଜୟଦା'କୁ କହିଲେ, ''ତୁ ତ କହୁଥିଲୁ ପୁଅର ଦେହ ଭଲ ନାହିଁ । ହେଲେ କାଲିଠାରୁ ରହିଛୁ । କିଛି ଅସୁବିଧା ହେବନି ତ ? ଯାଆ ଫୋନ୍‌ରେ ଖବର

ପଚାରି ନେ । ଯମୁନାକୁ କହି ଦେ, ବେବି ଠିକ୍‌ଠାକ୍ କରି ପହଞ୍ଚିଗଲା ।'' ମୁଁ ପଚାରିଲି, କ'ଣ ହେଲା ପିଲାକୁ ? ସଂଜୟଦା' କହିଲେ, ''ହଁ, କାଲି ମୁଁ ଆସିଲାବେଳେ ସାମାନ୍ୟ ଜ୍ୱର ହୋଇଥିଲା ।'' ମୁଁ କହିଲି, ''ଏ ମା, ତୁମେ କାଲିଠାରୁ ଏଠି ଅଛ । ଅଥଚ ଥରେ ବି ଫୋନ୍ କରିନ । ଯାଅ ଯାଅ, ପ୍ରଥମେ ଖବର ବୁଝି ଆସ । ସଂଜୟଦା' କିନ୍ତୁ ତା' ପାଇଁ କୌଣସି ତତ୍ପରତା ପ୍ରକାଶ କଲେ ନାହିଁ । କାଗଜ କଲମ ନେଇ ନିଜ କାମ କରିବାକୁ ଲାଗିଲେ । କଥାବାର୍ତ୍ତା ବି ଚାଲିଥାଏ । ମୋର ପିଲାମାନେ ବେମାର ପଡ଼ିଲେ ମତେ ଶଙ୍କର ସାଙ୍ଗରେ ଝଗଡ଼ା କରିବାପାଇଁ ପଡ଼େ । ତାଙ୍କ ପ୍ରତି ସେ ଧ୍ୟାନ ଦିଏ ନାହିଁ । ମୁଁ ହିଁ ଶେଷରେ ରୋଗିଣା ଛୁଆଙ୍କୁ ନେଇ କାନ୍ଦି କାନ୍ଦି ଡାକ୍ତର ପାଖକୁ ଯାଏ । ସଂଜୟଦା' ଏବେ ବି ବସିଥିଲା । ତାକୁ ପିଲାର ଦେହ କଥା ଜଣା ନାହିଁ । ମୁଁ ପୁଣି ଥରେ ମନେ ପକେଇଲି, ''ଦାଦା ତୁମେ ଯାଇନ ଏଯାଏଁ । ଥରେ ଫୋନ୍ କରି ଆସିବାକୁ କେତେ ବା ସମୟ ଲାଗିବ ! କେତେ ଦୂର ଯିବାକୁ ପଡ଼େକି ? ସଂଜୟଦା' କହିଲେ, ''ହଁ, ବେଶି ଦୂର ନୁହେଁ । ଏଇ ସାମନାରେ ଫୋନ୍ ବୁଥ୍ ଅଛି । ମୋର କଥା ଶୁଣି ଜେଠୁ ତୁରନ୍ତ ସଂଜୟଦା'କୁ କହିଲେ, ''ନା ତୁ ଗଲୁ ଆଗ । ଯାହା ହେଉ ବେବି ବିଚାରୀ ମନେ ପକେଇ ଦେଇଛି । ମୁଁ ତ ପୂରାପୂରି ଭୁଲିଯାଇଥିଲି । ଏବେ ଯା' । ସଂଜୟଦା' ଗଲା ପରେ ମୁଁ ଆଉ ଜେଠୁ କଥା ହେବାରେ ଲାଗିଲୁ । ଏହି ସମୟରେ ଶର୍ମିଲା ଦିଦି ଆସିଲେ । ତାକୁ ଦେଖି ବେବି ଖୁସିରେ ଉଚ୍ଛୁଳି ପଡ଼ିଲା । ଜେଠୁ ବୋଧେ ଡରିଗଲେ । ବେବି ଶର୍ମିଲାକୁ ଜାକି ନଦେଉ । ବେବି ସାଙ୍ଗରେ ସେ ବି ଉଠିଗଲେ । ବେବିକୁ କହିଲେ, ବସ୍ ବସ୍ । ଶର୍ମିଲା ବି ବସିବ । ଶର୍ମିଲା ଦିଦି ବୋଧେ ତାଙ୍କ କଥା ଶୁଣି ଭୟ ପାଇଥିବ । ଗପୁଁ ଗପୁଁ ସେ ଖଟପାଖରେ ପଡ଼ିଥିବା ଏକ ଚୌକି ଉପରେ ବସିପଡ଼ିଲା । ବେବି ତା' ପାଖକୁ ଗଲା । ସେ ତା'ର ହାତ ବଢ଼େଇ ଦେଲା । ବେବି ଆଉ ତାକୁ କୁଣ୍ଢେଇ ପାରିବ ନାହିଁ । ବେବି କ'ଣ ଏତେ ବୁଦ୍ଧୁ ଯେ ଏତିକି ବୁଝି ପାରିବ ନାହିଁ । ଜେଠୁ ବି ଦେଖିଲେ, ବେବି ଏମିତି କିଛି ଦେଖାଣିଆ ଭାବ ପ୍ରଦର୍ଶନ ନ କରି ଶର୍ମିଲା ସହିତ ହାତ ମିଳେଇଲା ।

ମୁଁ ଓ ଶର୍ମିଲା ଦିଦି ବସି କଥାବାର୍ତ୍ତା ହେବାକୁ ଲାଗିଲୁ । ଶର୍ମିଲା ଦିଦି ଆଗ ଅପେକ୍ଷା ଆହୁରି ଅଧିକ ସୁନ୍ଦର ଆଉ ସଫା ଲାଗୁଥିଲେ । ଦେଖିବାକୁ ସେ ଗୋଲ୍‌ଟୋଲ୍ ଜଣା ପଡୁଥାନ୍ତି । ପିଲା ପେଟରେ ରହିଲେ ଝିଅମାନେ ଏମିତି ଦେଖାଯାନ୍ତି । ଶର୍ମିଲା ଦିଦି କହିଲେ ମୁଁ ତୁମମାନଙ୍କ ଲାଗି କିଛି ନେଇଆସିଛି । ବେବି ତୁମେ ବି ଖାଇବ । ଏହା ମୁଖ୍ୟତଃ ତୁମପାଇଁ ଆସିଛି । ବ୍ୟାଗରୁ ଖାଇବା ଜିନିଷତକ କାଢ଼ି ସେ ଟେବୁଲ୍ ଉପରେ ରଖିଦେଲେ । ପୁଣି ସୁଇଟରଟାଏ ବି ବାହାର କଲେ । ମତେ କହିଲେ, ''ବେବି ଏଇଟା ତୁମ ବଡ଼ ପୁଅପାଇଁ ।'' ମୁଁ ଭାବିଲି, ଯାହାକୁ ସେ କେବେ ଦେଖିନାହିଁ ତା'ପାଇଁ ସେ ଉପହାର ଆଣିଛି । ଖୁସି ହୋଇ ମୁଁ ନେଇଗଲି । ଜେଠୁ ଶର୍ମିଲା ଦିଦିଙ୍କୁ କହିଲେ, ''ତୁ ଏଇ ସବୁ କାହିଁକି ଆଣିଲୁ ? ହେଇ ଦେଖ୍, ବଡ଼ ବୋଉ ମା ଆଗରୁ ଏତିକି ଫଳ କାଟି ରଖି ଦେଇଛି । କିଏ ଖାଇବ ଏଗୁଡ଼ା? ତୁ କିଛି ଖାଇକି ଯା । ତୋର ଏବେ ଫଳ ଖାଇବା

ଦରକାର । ଯା ଖାଇ ନେ । ମୁଁ ଫଳ ତା' ପାଖରେ ଆଣି ରଖିଦେଲି ଆଉ କହିଲି, ''ନିଅ, ଖାଇଦିଅ ।''

ଫୋନ୍ କରିସାରି ସଞ୍ଜୟଦା ଫେରିଲେ । ଜେଠୁ ପଚାରିଲେ, ''କ'ଣ କେମିତି ଅଛି ପୁଅ ?'' ସଞ୍ଜୟଦା ବସୁ ବସୁ କହିଲେ ''ଠିକ୍ ଅଛି । କାଲି ତା' ମା' ତାକୁ ଡାକ୍ତର ପାଖକୁ ନେଇ ଯାଇଥିଲା । ଆଜି ଜର ନାହିଁ ।'' ମୁଁ ଶର୍ମିଳା ଦିଦିଙ୍କୁ ଥରକୁ ଥର ଫଳ ଖାଇବାପାଇଁ କହୁଥିଲି । ଜେଠୁ ଆଉ ସଞ୍ଜୟଦା' ବି ତାଙ୍କୁ ଖା, ଖାଇପକା ବୋଲି କହୁଥା'ନ୍ତି । ସମସ୍ତଙ୍କ ମନ ରଖିବାପାଇଁ ସେ ଖଣ୍ଡିଏ ଫଳ ନେଲେ । ସେ କିଚେନକୁ ଯିବାକୁ ବାହାରିଲାରୁ ଜେଠୁ ପଚାରିଲେ, ''କ'ଣ ହେଲା, ଉଠିଲୁ କାହିଁକି ? ତୁ ବସ ।'' ମୁଁ ବି ତାଙ୍କୁ ବସିବାପାଇଁ କହିଲି । କିନ୍ତୁ ସେ, ମୁଁ ଚା' ତିଆରି କରୁଛି କହି ରନ୍ଧାଘରକୁ ଚାଲିଗଲେ । ମୁଁ ତାଙ୍କ ପଛେ ପଛେ ଗଲି । ମୁଁ କହିଲି, ''ଆପଣମାନେ କାହିଁକି ଏତେ ହଇରାଣ ହେଉଛନ୍ତି ? ମୋ ଥିବା ଭିତରେ ଶର୍ମିଳାଦିଦିର କିଛି ଅସୁବିଧା ହେବନି । ଏମିତି ଟିକେ ଚାଲିବା, ବୁଲିବା ତାଙ୍କ ପାଇଁ ଭଲ ।'' ଆମେ ଦୁହେଁ ଚା' ତିଆରି କରି ଆଣିଲୁ । ଶର୍ମିଳା ନିଜ କପ୍‌ର ଚା'କୁ ଶୀଘ୍ର ଶେଷ କରି କହିଲେ, ଚାଲ୍ ଟିକେ ବୁଲି ଆସିବା ।

ଜେଠୁ ମନା କରୁଥିଲେ । ମାତ୍ର ଏଇ ପାଖରୁ ଆସୁଛୁ କହିବାରୁ ରାଜି ହେଲେ । ଶର୍ମିଳା ମତେ ଏକ ଆଶ୍ରମକୁ ନେଇ ଗଲେ । ଆମେ ସେଠି ଯାଇ ଭିତରେ ବସିଲୁ । ଆମ ସାମ୍ନାରେ ମୂର୍ତ୍ତିଟିଏ ଥିଲା । ସେ କହିଲେ, ଏହା ଶ୍ରୀଅରବିନ୍ଦଙ୍କର । ଜାଗାଟା ଖୁବ୍ ସୁନ୍ଦର । ରଙ୍ଗ ବେରଙ୍ଗର ଫୁଲ । ଚଢ଼େଇର କିଚିରି ମିଚିରି ଶବ୍ଦ । ଖୁବ୍ ଭଲ ଲାଗିଲା । ଶର୍ମିଳା କହିଲେ, ଜାଗାଟି ତାତୁସଙ୍କର ଖୁବ୍ ପସନ୍ଦ । ମୁଁ ଭାବିଲି, ଜାଗାଟା ତ ସତରେ ସୁନ୍ଦର । ଏମିତିରେ ବି ତାତୁସଙ୍କୁ ଗଛପତ୍ର ଭଲ ଲାଗେ । ଜାଗା ଛାଡିଯିବାପାଇଁ ମନ କରୁ ନଥାଏ । ପୁଣି ଡର, ଜେଠୁ ନ ଭାବନ୍ତୁ, ଆମେ ଦୁହେଁ ବହୁତ ଦୂରକୁ ଚାଲି ଯାଇଛୁ । ସେଥିପାଇଁ ଫେରିଆସିଲୁ । ଭିତବାଲା ରାସ୍ତା ପାରିକରି ଶର୍ମିଳା ମତେ ଏକ ବଡ଼ ସ୍କୁଲକୁ ନେଇଗଲେ । ବାରଣ୍ଡାରେ ଗୀତ ବାଜୁଥାଏ । ଝିଅମାନଙ୍କୁ ଶିକ୍ଷକ ନାଚ ଶିଖାଉଥାନ୍ତି । ପାଖରେ କେଣ୍ଟିନ୍‌ଟିଏ । ମତେ ବାହାରେ ବସେଇ ସେ ଭିତରକୁ ଗଲେ । ଝିଅମାନଙ୍କ ନାଚ ଦେଖି ମୋର ବି ମନ ହେଉଥାଏ ସେମାନଙ୍କ ସହିତ ନାଚିବାକୁ । କେଣ୍ଟିନ୍‌ରୁ ଶର୍ମିଳା ଦୁଇ ବୋତଲ କୋଲ୍‌ଡ ଡ୍ରିଂକ୍ସ ଆଣିଲେ । ତାଙ୍କ ଠୁ ବୋତଲଟିଏ ନେଇ କହିଲି, ''ଦରକାର ନ ଥିଲା । ମୋର ଦାନ୍ତ ଏମିତି ବି ଖରାପ ।'' ସେ କହିଲେ, ଆରେ ଗୋଟିଏ ଦିନରେ କିଛି ହେବ ନାହିଁ । ଦାନ୍ତ କଥା କହିବାରୁ ମନେ ପଡ଼ିଲା, ଦାନ୍ତ ବିଂଧା ହେବାରୁ କିଛି ଦିନ ଆଗରୁ ମୁଁ ଡାକ୍ତର ପାଖକୁ ଯାଇଥିଲି । ତା' କହିବା ଅନୁସାରେ ମୁଁ ମୁହଁ ଖୋଲିଛି । ଶଳା ଡାକ୍ତରର ଆଖି ସିନା ମୋର ମୁହଁ ଉପରେ, ହେଲେ ଧ୍ୟାନ ଥାଏ ମୋର ଶରୀର ଉପରେ । ଥରକୁ ଥର ସେ ନିଜ କହୁଣି ମୋ ଛାତିରେ ବଜେଇ ଦେଉଥାଏ । ରାଗ ଆଉ ଲାଜରେ ମୁଁ କାଠ ହୋଇଗଲି । ଦ୍ୱିତୀୟଥର ଆଉ କେବେ ସେଠାକୁ ଯାଇନାହିଁ ।

ସ୍କୁଲ୍ ଗେଟ୍ ପାଖରେ ମୂର୍ତ୍ତିଟିଏ ରଖାହୋଇଥିଲା । ଶର୍ମିଳା ପଚାରିଲେ, ''ଜାଣିଛ, ଏହା କାହାର ମୂର୍ତ୍ତି ? ତଳେ ନାଁ ଲେଖା ହୋଇଛି । ତୁମେ ପଢୁଥାଅ, ମୁଁ ବାଥ୍ ରୁମ୍‌ରୁ ଆସେଁ । ମୁଁ

ଭଲ ଭାବେ ମୂର୍ତ୍ତିକୁ ଦେଖିଲି । ତଳେ ହିନ୍ଦୀରେ ନାଁ ଲେଖା ହୋଇଥିଲା । ନାଁ ଆଉ ଜନ୍ମ ତିଥି ପଢ଼ିଲି । ଶର୍ମିଲା ଦିଦି ଆସି ପଚାରିଲେ, ''ପଢ଼ି ପାରିଲ ନା ନାହିଁ ? ମୁଁ କହିଲି, ''ହଁ, ଏହା ଜେଠୁଙ୍କ ବାପାଙ୍କ ମୂର୍ତ୍ତି ନା ? ସେ କହିଲେ ହଁ । ଏହି ସ୍କୁଲର ସେ ପ୍ରତିଷ୍ଠାତା ।'' ସ୍କୁଲରୁ ବାହାରି ପଚାରିଲି, ଆଚ୍ଛା ଶର୍ମିଲା ଦିଦି, ଜେଠୁ ମତେ ଭେଟିବାଲାଗି ଯେଉଁ ଲୋକମାନଙ୍କୁ ଡାକିଛନ୍ତି ସେମାନଙ୍କ ସାମ୍ନାରେ ମତେ କ'ଣ କିଛି କହିବାକୁ ପଡ଼ିବ ? ମୁଁ କ'ଣ କହିବି ? ସେ କହିଲେ, ''ନା ନା, ତୁମକୁ କିଛି କହିବାକୁ ପଡ଼ିବ ନାହିଁ । ତୁମେ ଶୁଣିବ । ଦେଖିବ, ସେମାନେ କେମିତି କଥାବାର୍ତ୍ତା କରୁଛନ୍ତି । ମୁଁ କହିଲି, ମତେ ତ ଜଣାନାହିଁ । ଡର ଡର ଲାଗୁଛି । ସେମାନେ ଯଦି କିଛି ପଚାରନ୍ତି ମୁଁ ଠିକ୍ କରି ଜବାବ ଦେଇପାରିବି ନାହିଁ । ତାହା ଲାଜର କଥା ହେବନି ?'' ଶର୍ମିଲା କିଛି ସମୟର ନୀରବତା ପରେ କହିଲେ, ''ନା ନା ସେ କଥା ନୁହେଁ । ଜାଣିଛ, ଯାହାକୁ ଯାହା ଭଲ ଲାଗେ, ସେ ତାହା ଲେଖେ । ଶର୍ମିଲା ଦିଦିଙ୍କ ଏହି ପଦକ କଥା ମୁଁ ବୁଝି ପାରିଲି ନାହିଁ । ତା'ର ଅର୍ଥ ତାଙ୍କୁ ପଚାରି ପାରିଲି ନାହିଁ, କାରଣ ସେତେବେଳକୁ ଆମେ ଜେଠୁଙ୍କ ଘରେ ପହଞ୍ଚି ସାରିଥିଲୁ ।

ଘରକୁ ଆସି ଶର୍ମିଲା ଦିଦି ଚୌକିରେ ବସିଗଲେ, ମୁଁ ତଳେ । ଜେଠୁ ପଚାରିଲେ, ତୁମେ ଦୁହେଁ କୁଆଡ଼େ ଗଲ ? ଶର୍ମିଲା ଦିଦି କହିଲେ, ''ବେଶୀ ଦୂର ନୁହେଁ । ଅରବିନ୍ଦ ଆଶ୍ରମ ଆଉ ସ୍କୁଲ ଯାଏଁ ଯାଇଥିଲୁ ।'' କଥାବାର୍ତ୍ତା ବେଳେ ଜେଠୁଙ୍କ ନାଁରେ ଲେଖା ହୋଇଥିବା ତାତୁସ୍‌ଙ୍କ ଚିଠି କଥା ମୋର ମନେ ପଡ଼ିଲା । ବ୍ୟାଗ୍‌ରୁ କାଢ଼ି ମୁଁ ତାଙ୍କୁ ଚିଠି ଦେଲି । ଜେଠୁ ଚିଠି ପଢ଼ିଲେ । ସଂଜୟଦା' ଆଉ ଶର୍ମିଲାଦିଦି ମଧ୍ୟ ପଢ଼ିଲେ । ତାତୁସ୍ କହନ୍ତି, ଅନ୍ୟର ଚିଠି ପଢ଼ିବା ଉଚିତ୍ ନୁହେଁ । ମୋର କଲିକତା ଆସିବା ସଂପର୍କରେ ତାତୁସ୍ ହୁଏତ କିଛି ଭଲ ମନ୍ଦ ବି ଲେଖିଛନ୍ତି । ବୋଧହୁଏ ସେଥିପାଇଁ ସେମାନେ ଚିଠିପଢ଼ି ଜଣେ ଅନ୍ୟ ଜଣକୁ ଦେଖିଲେ । ଅବଶ୍ୟ ସେ କଥା ଚିନ୍ତା ନ କରି ଶର୍ମିଲାଦିଦିକୁ କହିଲି, ''ତୁମ ପାଇଁ ମୁଁ ମୋ ବହି ଆଣିଛି ।'' ପ୍ରଥମ ପୃଷ୍ଠା ଓଲଟାଇ ସେ କହିଲେ, ''ବେବି ତୁମେ ନିଜେ କ'ଣ ଲେଖିଛ ପଢ଼ି ଶୁଣେଇଲ ।'' ମୁଁ କହିଲି, ''ଉପହାର ଦେଲାବେଳେ ଯାହା ଲେଖନ୍ତି, ମୁଁ ସେଇୟା ଲେଖିଛି ।'' ତଥାପି ତୁମ ଭାଷାରେ କ'ଣ ଲେଖିଛ ତାହା ଶୁଣେଇବାକୁ ପଡ଼ିବ । ମୁଁ କହିଲି, ତୁମେ ଶୁଣିବ ତ ଦିଅ ବହି । 'ପ୍ରିୟ ଶର୍ମିଲାଦିଦି, ବହୁତ ଚେଷ୍ଟା କଲି ତୁମ ଉପନ୍ୟାସ, 'ଶାଦି ସେ ପେଶତର'ରୁ ଅନ୍ତତଃ ପୃଷ୍ଠାଏ ଅଧିକ ଲେଖିବି । କିନ୍ତୁ ପାରିଲି ନାହିଁ । ତେଣୁ ଅଧିକ ପୃଷ୍ଠାଏ ହାତରେ ଲେଖି ତା'ଠୁ ଅଧିକ କରି ଦେଇଛି । ବହିଟି ତୁମ ପାଇଁ, ଅମିତ ଦା' ପାଇଁ ଏବଂ ନବାଗତ ପାଇଁ । ଇତି ବେବି ।' ଜେଠୁ ଶୁଣି କହିଲେ, ''ବାଃ ବହୁତ ଭଲ ଲେଖିଛି ।'' ଶର୍ମିଲାଦିଦି ମୋଠାରୁ ବହି ନେଇ କିଛି ସମୟ ପରେ ଚାଲିଗଲେ ।

ଦିନ ବାରଟା ବାଜିବା ଉପରେ । ଜେଠୁ ମତେ କହିଲେ, ''ବେବି, ତୁ ଏବେ ଗାଧୋଇ ପାଧୋଇ ରେଡି ହୋଇ ଯା । ଲୋକ ଆସିଯିବେ । ସମୟ ପାଇବୁ ନାହିଁ । ତତେ ଗରମ ପାଣି ଦରକାର କି ?'' ମୁଁ କହିଲି, ''ନା ମୋର କିଛି ଦରକାର ନାହିଁ । ଦରକାର ହେଲେ ନିଜେ ଖୋଜି ନେବି । ବାଥ ରୁମ୍‌ରେ ଥିଲା ବେଳେ ଶୁଣିଲି ଜେଠୁ ଜଣେ ମହିଳା ସାଙ୍ଗରେ କଥାବାର୍ତ୍ତା କରୁଛନ୍ତି ।

ବାହାରିବା ପରେ ଦେଖିଲି, ସେହି ମହିଳା ମତେ ବସିବାଲାଗି କହୁଛନ୍ତି । ମୋର ପଚାରିବା ଆଗରୁ ନିଜ ନାଁ କହିଲେ । ଖୁସିରେ କହିଲେ, ''ଅଲକା ଦି ! ଆପଣଙ୍କ ନାଁ ତ ମୁଁ ଅନେକ ଥର ଶୁଣିଛି । ଡାକ୍ତର କହନ୍ତି, ଆପଣଙ୍କ ବହିର ଚାରିଆଡ଼େ ଚର୍ଚ୍ଚା ! ମୋର ଭାଗ୍ୟ, ଆପଣଙ୍କ ସହ ଭେଟ ହେଲା ।

ଅଲକା ଦିଦି, ଜେଠୁ ଆଉ ମୁଁ କଥାବାର୍ତ୍ତା କରୁଥିଲୁ । ଜେଠୁ ମଝିରେ ଉଠି କୁଆଡ଼େ ଗଲେ । ସେତେବେଳେ ଅଲକା ଦିଦି ନିଜ ବ୍ୟାଗ୍‌ରୁ ବିଛେଇବାପାଇଁ ଗୋଟିଏ ଚାଦର ଶୀଘ୍ର ବାହାର କରି ଜେଠୁଙ୍କ ଖଟ ଉପରେ ରଖିଲେ । ପେକେଟଟିଏ ମତେ ଦେଇ କହିଲେ, ''ଏହା ତୁମପାଇଁ ।'' ମୁଁ ଖୁସିରେ ପେକେଟଟି ନେଇଗଲି । ଜେଠୁଙ୍କ ବିଛଣାରେ ପଡିଥିବା ଜିନିଷ ସାଉଁଟିଦେଇ ସେ କହିଲେ, ''ଆସ ଅଶୋକଜୀଙ୍କ ଆସିବା ଆଗରୁ ଏହି ଚାଦର ବିଛେଇ ଦେବା, ନୋହିଲେ ସେ ବିଛେଇବାକୁ ଦେବେ ନାହିଁ ।'' ଆମେ ଦୁଇଜଣ କଳା-ଧଳାର ସେହି ଚାଦରଟି ଖଟରେ ବିଛେଇ ଦେଲୁ । ଜେଠୁ ଆସିବା କ୍ଷଣି ପଚାରିଲେ, ''ଏହି ଚାଦର କିଏ ଆଣିଲା ? ଅଲକା ଦିଦି କହିଲେ, ''ମୁଁ ଶାନ୍ତିନିକେତନ ଯାଇଥିଲି, ସେଠୁ ଆଣିଛି ।'' ଜେଠୁ କହିଲେ ଆଚ୍ଛା ଠିକ୍ ଅଛି । ଏବେ ଖାଇନେବା, ନହେଲେ ଲୋକ ଆସିଯିବେ । ଖାଇବା କାମଟି ରହିଯିବ ।

ଅଲକା ଦିଦି କହିଲେ, ''ଆଜି ମୋର ଶୀଘ୍ର ଯିବାର ଅଛି । ବେବି ଆସିଛି ଶୁଣି ମୁଁ ଚାଲି ଆସିଲି । ନହେଲେ ଆସି ପାରିନଥାନ୍ତି ।'' ଏତିକି କହି ସେ ରନ୍ଧା ଘରକୁ ଗଲେ । ସେଠୁ ବାସନର ଶବ୍ଦ ଶୁଣି ମୁଁ ତାଙ୍କ ପାଖକୁ ଗଲି । ଆମେ ଦୁହେଁ ରନ୍ଧା ଜିନିଷତକ ଗରମ କଲୁ । ପୁଣି ଜେଠୁ ସାଙ୍ଗରେ ଖାଇବାପାଇଁ ବସିଗଲୁ । ଅଲକାଦି' ମୋ ଆଡ଼କୁ ଦେଖି ଜେଠୁଙ୍କୁ କହିଲେ, ବେବିର ମୁହଁ ଖୁବ୍ ସଦାପ୍ରସନ୍ନ, ସ୍ୱଭାବ ଶାନ୍ତ ନା ? ଜେଠୁ ହଁ କଲେ, ''ତୁମେ ବେବିର ଫଟୋ ଦେଖିଛ ? ଫଟୋରେ ତା'ର ଚେହେରା ଖୁବ୍ ସୁନ୍ଦର । କିଏ କହିବ ସେ ତିନୋଟି ପିଲାର ମା । ତହିଁରେ ପୁଣି ବଡ଼ ପୁଅ ସତର ବର୍ଷର । ଅଲକା ଦିଦି ଅବାକ୍ ହୋଇ କହିଲେ, ''ଆଚ୍ଛା'' ଜେଠୁ କିଛି ସମୟ ପରେ ତାଙ୍କୁ ପଚାରିଲେ, ''ତୁମର କ'ଣ କାମ ଅଛି ଘରେ ? ଅଲକାଦି କହିଲେ, ଆଜି ତାଙ୍କ ଘରେ କ'ଣ ଆୟୋଜନ ହୋଇଛି । ପରିବାରର ଅନେକ ଲୋକ ଜୁଟିବେ ।'' ଏହା ଶୁଣି ଜେଠୁ କହିଲେ, ''ତେବେ ତୁମର ବିଲ୍‌କୁଲ୍ ଡେରି କରିବା କଥା ନୁହେଁ ।

ଖାଇସାରି ଅଲକାଦି' ଓ ମୁଁ ମିଶି ଟେବୁଲ୍‌ରୁ ବାସନ ଉଠେଇ ନେଲୁ । ହାତ ମୁହଁ ଧୋଇ ଜେଠୁ ଓ ଅଲକାଦି' ଅନ୍ୟ ରୁମ୍‌କୁ ଗଲେ । ମୁଁ ଟେବୁଲ୍ ସଫା କରି ନେଲି । ଭାବିଲି ବାସନ ବି ମାଜି ଦିଏଁ । ଜେଠୁ ରାଗିଯାଇ କହିଲେ, ''ବେବି କ'ଣ କରୁଛୁ ତୁ । ଏଇଠିକି ଆସ ।'' ମୁଁ କହିଲି ଆସୁଛି । ଜେଠୁ କହିଲେ, ତୁ କିଛି କରନା । ଏଇଠି ବସ ।'' ସେ ମତେ ବାଧ୍ୟ କରି କିଚେନ୍‌ରୁ ନେଇଗଲେ । ଏହା ଦେଖି, ଅଲକାଦି' ହସ ସମ୍ଭାଳି ପାରିଲେ ନାହିଁ । ଜେଠୁ କହିଲେ, ''ଅଲକା ଏବେ ଚାଲିଯିବ । ତୁ ତା' ସାଙ୍ଗରେ ଦୁଇ ଚାରିପଦ କଥା ହୋଇଯା । ଅଲକାଦି' ଖୁବ୍ ସ୍ନେହରେ ମୋ ସାଙ୍ଗରେ କଥା ହେବାରେ ଲାଗିଲେ । ଲାଗିଲା, କେବେଠୁ ସେ ମତେ ଜାଣନ୍ତି । ଯିବା ବେଳେ ତାଙ୍କ ପାଖକୁ ଟାଣି ନେଇ କହିଲେ, ''ଭଲରେ ରହିବ । ଲେଖା ପଢ଼ା ବନ୍ଦ କରିବ ନାହିଁ, ବୁଝିଲ ।'' ଶେଷରେ ଜେଠୁଙ୍କୁ କ'ଣ କହି ଚାଲିଗଲେ ମୁଁ ବୁଝିପାରିଲି ନାହିଁ ।

ଅଳକାଦି' ଯିବାର କିଛି ବେଳ ପରେ ସଂଜୟଦା ହାତରେ କେତେଗୁଡ଼ିଏ ବହିଖାତା ନେଇଆସିଲେ । ଖାତା ବହି ଦେଖି ମୋର ଡାଏରୀ କଥା ମନେ ପଡ଼ିଲା । ହୋମିଓପାଥି ଯୁବ ଡାକ୍ତରଠାରୁ ତାକୁ ମୁଁ ଆଣିଥିଲି । ଏ ପର୍ଯ୍ୟନ୍ତ ତାକୁ କାହାକୁ ଦେଖାଇ ପାରିନି । ମୁଁ ଡାଏରୀ ବାହାର କରି ଜେଠୁଙ୍କୁ କହିଲି, ମତେ ଜଣେ ପିଲା ତାର କିଛି କବିତା ଆପଣମାନଙ୍କୁ ଦେଖାଇବାପାଇଁ ଦେଇଛି । ଆପଣ ଦେଖି କୁହନ୍ତୁ, କେମିତି ହୋଇଛି । ମୋ ଠାରୁ ଡାଏରୀ ନେଇ ଜେଠୁ କିଛି ପୃଷ୍ଠା ଓଲଟାଇ ଡାଏରୀଟି ନିଜ ପାଖରେ ରଖିଲେ । ଏହି ସମୟରେ ଜଣେ-ଜଣେ କରି ଲୋକ ଆସିଲେ । ଜେଠୁ ମୋର ପରିଚୟ କରାଇଲେ । କାଜଲ, ବଲାଇ ଆଉ କେତେଜଣ ଲୋକ । ସେମାନେ ମୋର ଅଭିନନ୍ଦନ କରିବେ । ମତେ ନେଇ ଚର୍ଚ୍ଚା କରିବେ । ଏହା ମୋ ପାଇଁ ଖୁବ୍ ଆଶ୍ଚର୍ଯ୍ୟ କଥା । କାଜଲ ଦା' ପିଇବାପାଇଁ ପାଣି ମାଗିଲେ । ସମସ୍ତଙ୍କ ପାଇଁ ପାଣି ଆଣିବାକୁ ମୁଁ ଯାଉଥିଲି । ଜେଠୁ କହିଲେ, ''ତୁ ବସ୍, ମୁଁ ଆଣି ଆସୁଛି'' । ଖାଲି ପାଣି କ'ଣ ଦିଆଯାଏ ? ଏହା ଚିନ୍ତା କରି ସେ ପାଣି ସାଙ୍ଗରେ ସଂଜୟଦା ଆଣିଥିବା ରାଜନଗରର ମୁଆଁ ଆଣି ଆସିଲେ । କହିଲେ, ''ଏଇ ନିଅ । ରାଜନଗରର ମୁଆଁ । ସଂଜୟ ଆଣିଛି ।'' ସମସ୍ତେ ଖୁବ୍ ଆଗ୍ରହରେ ତାକୁ ଖାଇଲେ । ମୋ ପାଇଁ ଖଣ୍ଡଟିଏ ବି ରହିଲା ନାହିଁ । ଚଳିବ । ନିଜେ ଖାଇବା ଅପେକ୍ଷା ଅନ୍ୟଙ୍କୁ ଖୋଇଲେ ବେଶି ଆନନ୍ଦ ମିଳେ । ଜେଠୁ ଘରେ ସେଦିନ ଲେଖକ, ସାଂବାଦିକ, ପତ୍ରକାର, ସମ୍ପାଦକ ସମସ୍ତେ ଥିଲେ । ମୋର ସୌଭାଗ୍ୟ ଯେ ମୋ ପାଇଁ ସମୟ ବାହାର କରି ସମସ୍ତେ ଆସିଥିଲେ ।

ମୁଁ ଚା' ତିଆରି କରିବାପାଇଁ ରନ୍ଧାଘରକୁ ଗଲି । ଜେଠୁ ପୁଣି ପାଟି କଲେ, ''ବେବି ତୁ କାହିଁକି ଉଠିଗଲୁ ? ତୋର ଚା' କରିବାର କିଛି ଦରକାର ନାହିଁ । ତୁ ଏଇଠି ଆସି ବସ । ତୋ ପାଇଁ ସମସ୍ତେ ଆସିଛନ୍ତି ।'' ମୁଁ କହିଲି ଚା ନେଇକି ଏବେ ଆସୁଛି ।'' ବଲାଇ ଜେଠୁଙ୍କ କଥା ଶୁଣି କହିଲେ, ଆଚ୍ଛା ଠିକ୍ ଅଛି ବେବି, ତୁମେ ବସ ମୁଁ ଚା' ତିଆରି କରୁଛି । ସେ ରନ୍ଧା ଘରକୁ ଆସିଲେ । ଚା' ପିଆ ହେଲା । ତା' ସହିତ ମୋର ବହିକୁ ନେଇ ଚର୍ଚ୍ଚା ଚାଲିଲା । ତେଣିକି ସମସ୍ତେ ଜଣେ ଜଣେ କରି ଚାଲିଗଲେ । ତିନିଟା ହେବ ସମୟ । ସଂଜୟଦା' ଜେଠୁଙ୍କୁ କହିଲେ, ''ବେବି ତ ଆଜି ଆମର ସେଠିକି ଯିବ ନା ? ହେଲେ ପୁସ୍ତକ ମେଳାକୁ ସେ ଯାଇ ପାରିବ ନାହିଁ ।'' ଜେଠୁ କହିଲେ, କାହିଁକି ? ବେବି କାଲି ଯଦି ରହିଯାଏ, ଆଜି ଆମେ ସମସ୍ତେ ପୁସ୍ତକ ମେଳକୁ ଯାଆନ୍ତେ । ସଂଜୟଦା କହିଲେ, ହଁ ସେଇଟା ବେଶୀ ଭଲ ହେବ । ଠିକ୍ ତ ବେବି ? କିଛି ଅସୁବିଧା ହେବ ନାହିଁ ତ । ପିଲାଏ ତୁମ ବାପାଙ୍କ ପାଖରେ ରହିଯିବେ ତ । ମୁଁ କହିଲି, ଦିନେ ଦୁଇ ଦିନରେ ସୋମନଙ୍କୁ କିଛି ଫରକ୍ ପଡ଼ିବ ନାହିଁ । ହେଲେ ତାତୁସ ମତେ କାଲି ଦୁର୍ଗାପୁର ଫେରିଯିବାପାଇଁ କହିଛନ୍ତି । ଜେଠୁ କହିଲେ, ରଖ ସେସବୁ କଥା । ମୁଁ ତୋର ତାତୁସକୁ ଫୋନ୍‌ରେ ଜଣେଇ ଦେବି । ସେ କିଛି କହିବେ ନାହିଁ । ଆଉ ଗୋଟିଏ କଥା, ତୁ ଏଠାକାର ଖବର ତାଙ୍କୁ କ'ଣ ଜଣେଇବୁ ନାହିଁ ? ମେଳାରୁ ଫେରି ରାତିରେ ଆମେ ଫୋନ୍ କରିବାଲାଗି ଯିବା ।

କଲିକତା ଯାଇ ପୁଣି ପୁସ୍ତକ ମେଳାକୁ ଯିବି ନାହିଁ । ବର୍ଷସାରା ବହି ଦେଖିବା- କିଣିବାର ଯେଉଁ ଆଶାରେ ଲୋକ ବସି ରହନ୍ତି, ସେହି ପୁସ୍ତକ ମେଳାର ବାଟମୁହଁରୁ ମୁଁ ପୁଣି ଫେରିଯିବି ? ନା ଏହା ଠିକ୍ କଥା ନୁହେଁ ।

ଏହି ସମୟରେ ସ୍କୁଲ୍ ଡ୍ରେସ୍‌ରେ ପିଠିରେ ବ୍ୟାଗ୍ ଝୁଲାଇ ଦଶବାର ବର୍ଷର ଜଣେ ଆକର୍ଷକ ଚେହେରାର ପିଲା ହସି ହସି ଘର ଭିତରକୁ ଆସିଲା । ଜେଠୁ କହିଲେ, ବାଲେଶ୍ୱରକୁ ତ ଜାଣୁ ? ତା' ପୁଅ । ମୁଁ କହିଲି, ଶୁଣିଥିଲି । ଦେଖାହୋଇନି ଏ ପର୍ଯ୍ୟନ୍ତ ।'' ସଂଜୟଦା କହିଲେ, ଭାରତୀୟ ଭାଷା ପରିଷଦରେ ବାଲେଶ୍ୱର କାମ କରନ୍ତି । ଏବେ ଆସି ଯିବେ । ତାଙ୍କ ଆସିବା ବେଳ ହେଲାଣି । ପଚାରିଲି, ପିଲାଟି କ'ଣ ଏଠି ରହେ ? ଜେଠୁ କହିଲେ, ହଁ ଏଠି ରହେ । ତା' ବାପା ସାଙ୍ଗରେ ।

ଛୁଆଟି ଯେଉଁ ଖୁସିରେ ଥାଏ, ଲାଗୁନଥାଏ ଯେ ତା' ମା' ଏଠାରେ ନାହାନ୍ତି । ବାପା ତାକୁ ଗାଁରୁ ନେଇ ଆସିଛନ୍ତି । ଆଶା, ଭଲ ସ୍କୁଲରେ ପଢ଼ିବ, ଭଲ ପିଲାଙ୍କ ସାଙ୍ଗରେ ରହି ସହର ପିଲା ପରି ହେବ । ମତେ ଦେଖି ସେ ହସ ହସ ମୁହଁରେ କପଡ଼ା ବଦଳେଇବାଲାଗି ଭିତରକୁ ଗଲା । ଜେଠୁ ଡାକୁ ଡାକିଲେ, ''ହିରୋ, ଏ ହିରୋ ଶୁଣ । ଟିକେ ଏପଟେ ଆ; ସେ ଆସି ଜେଠୁଙ୍କ ସାଙ୍ଗରେ ଲାଡ଼ ଗେଲ ହେବାରେ ଲାଗିଲା । ଜେଠୁ ତାକୁ କହିଲେ, ''ଶୁଣ ତତେ ଯେଉଁ ବେବିର କଥା କହିଥିଲି, ଏଇ ସେହି ବେବି । ଯା ବେବିକୁ ତୁ ଟିକେ ତୋର ପିଆନୋ ଶୁଣା ।'' ମୁଁ ଆଶ୍ଚର୍ଯ୍ୟ ହୋଇ କହିଲି, ''ଆଚ୍ଛା ! ସେ ପିଆନୋ ବି ବଜାଏ । ଜେଠୁ କେହିଲେ, ବହୁତ ଭଲ ବଜାଏ ।'' ପ୍ରଶଂସା ଶୁଣି ଲାଜରେ ସେ ନିଜ ମୁଣ୍ଡକୁ ଜେଠୁଙ୍କ କୋଳରେ ଲୁଚେଇ ଦେଲା । ସଂଜୟ ଦା' ତାକୁ ଶୁଣାଇ ଥଟ୍ଟାରେ ଜେଠୁଙ୍କୁ କହିଲେ, ''ଆଜି ଆମେ ପୁସ୍ତକ ମେଳା ଯିବୁ । ହିରୋ ତ ଯିବ ନାହିଁ ।'' ଜେଠୁ ବି ଥଟ୍ଟାରେ କହିଲେ- ''ନା-ନା ତାକୁ ନେବାର କ'ଣ ଦରକାର ।''

ଥଟ୍ଟା ମଜାକ୍ ମଝିରେ ଜେଠୁ ମତେ କହିଲେ, ''ତୁ ଯା ରେଡି ହୋଇପଡ଼ । ସନ୍ଧ୍ୟା ହେବାକୁ ବସିଲାଣି । ମେଳାକୁ ଯିବା ।'' ମୁଁ ପ୍ରସ୍ତୁତ ହୋଇ ଜେଠୁଙ୍କ ସାଙ୍ଗରେ ବାହାରକୁ ବାହାରିଲି । ଚପଲ ପିନ୍ଧିବା ସମୟରେ ମୋ ଜୋତା ଦେଖି ସେ କହିଲେ, ''ବାପ୍‌ରେ ବେବି, ତୋର ଜୋତା ତ ଖୁବ୍ ସୁନ୍ଦର । କିଏ କିଣିଛି, ତୁ ନା ତୋର ତାତୁସ ? ଜବାବ ନ ଦେଇ ମୁଁ ଖାଲି ହସିଦେଲି । ଭାବିଲି କେବଳ ମତେ ଖୁସି କରିବାପାଇଁ ସେ ଏହା କହୁଛନ୍ତି । ନହେଲେ ସକାଳୁ କବାଟ ପାଖରେ ଖୋଲି ରଖିଥିବା ଏତେ ଜୋତା ଚପଲ ଭିତରୁ ମୋର ଜୋତା ବା ତାଙ୍କୁ ଭଲ ଲାଗିଲା କେମିତି ? ସେ ଯାହା ବି ହେଉ, ଆତ୍ମୀୟତାର ସହିତ ସେ ମତେ 'ତୁମେ' ନ କହି 'ତୁ' କହୁଥିଲେ; ମତେ ତାହା ଚାରିବର୍ଷର ବେବିଟିଏ କରିଦେଲା ।

ମୁଁ, ସଂଜୟଦା ଆଉ ବଲାଇ ଜେଠୁଙ୍କ ପଛରେ ଧୀରେ ଧୀରେ ଚାଲୁଥିଲୁ । ପୁସ୍ତକ ମେଳା ତାଙ୍କ ଘରଠାରୁ ବେଶି ଦୂର ନୁହେଁ । ଏ ପର୍ଯ୍ୟନ୍ତ ଆମେ ଜେଠୁ ଆଉ ହିରୋକୁ ଦେଖି ପାରୁଥିଲୁ । କିନ୍ତୁ ହଠାତ୍ ସେମାନେ ଅଦୃଶ୍ୟ ହୋଇଗଲେ । ସଂଜୟଦା' ଟିକେ ଡରି ଗଲେ । ଡରିବା କଥା ବି । ସତକରେ ଆଲୁଅ ଥିଲା । ତା'ପରେ ବି ବୁଢ଼ା ଲୋକ । ରାତିରେ ତାଙ୍କୁ କମ୍ ଦେଖାଯାଏ । ସଂଜୟଦା ଆମମାନଙ୍କ ଉପରେ ରାଗିଗଲେ । ''ତୁମେ ତାଙ୍କ ଉପରେ ନଜର ରଖି ପାରୁନ ?

ଏତେ ଭିତରେ କେଉଁଠି ଖୋଜିବି ତାଙ୍କୁ ?'' ବଲାଇ କହିଲେ, ଆପଣମାନେ ଏଠି ରହିଥାନ୍ତୁ । ମୁଁ ଟିକେ ଆଗକୁ ଯାଇ ଦେଖିଆସୁଛି । ସଂଜୟଦା କହିଲେ, ''ନା-ନା ତୁମେମାନେ ଏଠି ରୁହ । ମୁଁ ମେଳା ଭିତରେ ଦେଖେ । କାଳେ କେଉଁଠି ଥିବେ । ସଂଜୟଦା ଜେଠୁଙ୍କୁ ଏକ ଟିକଟ କାଉଣ୍ଟର ଆଗରେ ଛିଡ଼ା ହୋଇଥିବାର ଦେଖିଲେ । ଆମେ ଆଶ୍ୱସ୍ତ ହେଲୁ ।

ମେଳାରେ ଜେଠୁ କିଣିବାପାଇଁ ବହି ଦେଖିବାରେ ଲାଗିଲେ । ଶରତଚନ୍ଦ୍ର ରଚନାବଳୀ, ରବୀଠାକୁରଙ୍କ ଗଳ୍ପଗୁଚ୍ଛ, ଭାରତୀୟ ଲୋକକଥା । ସେ ବହି କିଣୁଥାନ୍ତି । ମୋର ଲୋଭ ହେଲା ଦେଖି । ମୁଁ ସଂଜୟଦା'ଙ୍କୁ ପଚାରିଲି, ''ଜେଠୁ ଏତିକି ବହି କିଣୁଛନ୍ତି- ପଢ଼ିବେ କେତେବେଳେ ? ସେ କହିଲେ, ''ଜାଣିନ, ଏସବୁ ତୁମପାଇଁ କିଣା ହେଉଛି ।'' ମୁଁ ଆଶ୍ଚର୍ଯ୍ୟରେ କହିଲି, ''ମୋ ପାଇଁ । କିନ୍ତୁ ବହିଗୁଡ଼ିକ ତ ଖୁବ୍ ଦାମିକା ?'' ''ଦାମପାଇଁ ଚିନ୍ତା କାହିଁକି ? ତା'ପାଇଁ ଆମେ ଅଛୁ । ତୁମେ କେବଳ ଲେଖିବା ପଢ଼ିବାରେ ମନ ଦିଅ ।'' ମୁଁ ଖୁସିରେ ଗଦ୍‌ଗଦ୍ ହୋଇଗଲି । ହେ ଭଗବାନ, ଏଭଳି ଚିନ୍ତା କୋଡିଏ ପଚିଶ ବର୍ଷ ତଳେ ବା ମୋ ପାଇଁ କିଏ କରିଥାନ୍ତା !

ବହି ନେଇ ଆମେ ସେଠୁ ବାହାରିଲୁ । କେଉଁ ଏକ ଦୋକାନରୁ ଜଣେ ପିଲା ଆସି ମତେ ଏକ ନିମନ୍ତ୍ରଣ କାର୍ଡ ଦେଇ କହିଲା, ''କାଲି ଆପଣଙ୍କୁ ଆମ ଅନୁଷ୍ଠାନକୁ ଆସିବାକୁ ପଡ଼ିବ ।'' ମୁଁ କହିଲି- ''କିନ୍ତୁ, କାଲି ତ ମୁଁ ଏଠି ରହିବି ନାହିଁ ।'' ଜେଠୁ କହିଲେ, ''ହଁ କାଲି ସେ ସଂଜୟ ଘରକୁ ଯିବ ।'' ପିଲାଟି କହିଲା, ଆମର କାର୍ଯ୍ୟକ୍ରମ ଛଅଟାରେ । ଆପଣ ନଅଟା ପର୍ଯ୍ୟନ୍ତ ରହିଲେ ଚଳିବ । ମୁଁ ଚୁପ୍‌ଚାପ୍ ଜେଠୁ ଆଉ ସଂଜୟଦା'ଙ୍କ ଆଡ଼କୁ ଅନାଇଲି । ଜେଠୁ କହିଲେ, ''ଆଚ୍ଛା ଠିକ୍ ଅଛି । ଆସିବାପାଇଁ ସେ ଚେଷ୍ଟା କରିବ ।'' ମେଳାରୁ ଫେରିବାର ଇଚ୍ଛା ନ ଥିଲା । ମନ କହୁଥିଲା, ସବୁ ବହି ଓଲଟାନ୍ତି । ଫେରିବାକୁ ଆଦୌ ଇଚ୍ଛା ନଥାଏ । ସମସ୍ତଙ୍କର ପଛରେ ମୁଁ ଚାଲୁଥାଏଁ । ସଂଜୟଦା ମତେ ପଚାରିଲେ, ''କଣ ହେଲା ବେବି, ଏତେ ଧୀରେ ଧୀରେ ଆସୁଛ ଯେ । କଥା କ'ଣ ? ମୁଁ ନିଜ ନିରାଶା ପ୍ରକାଶନ କରି କହିଲି, ''କିଛି ନାଇଁ, ସମୟ ହେଲେ ମେଳାରେ ଆଉ ଗୋଟିଏ ଦିନ ବୁଲନ୍ତି । ପରେ କ'ଣ ଆସିହେବ !'' ସଂଜୟଦା କହିଲେ, ''କିଏ ଜାଣେ ? ପରେ ପୁଣି ହୁଏତ ଆସିବାକୁ ମିଳିପାରେ । ବହିମେଳା ତୁମକୁ ଟାଣି ଆଣିବ । ମନକୁ ମନ କହିଲି, ଏମିତି ହୁଅନ୍ତା କି ?

ରାସ୍ତାରେ ହିରୋ ଆଉ ଜେଠୁ ଦୁହେଁ ଦୁହିଁଙ୍କ ହାତଧରି କଥାବାର୍ତ୍ତା କରି ଚାଲୁଥାନ୍ତି । ଆଉ ଯା'ଆସ କରୁଥିବା ଗାଡ଼ିମାନଙ୍କ ଠାରୁ ଦୂରତା ରଖି ଦୁହେଁ ନିଶ୍ଚିନ୍ତରେ ବାଟ ଚାଲୁଥାନ୍ତି । ଜାଣି, ସାରା ସହର ତାଙ୍କୁ ଚିହ୍ନେ । ସହର ତାଙ୍କୁ ପାଳିପୋଷି ବଡ଼ କରିଛି ।

କିଛି ଦୂର ସାଙ୍ଗରେ ଆସି ବଲାଇ ତା' ଘରକୁ ଚାଲିଗଲା । ଜେଠୁ ସଂଜୟଦା'ଙ୍କୁ କହିଲେ ''ସଂଜୟ, ତୁମେମାନେ ଘରକୁ ଯାଅ । ମତେ ଟିକେ ମୋର ଭଉଣୀଙ୍କ ଘରକୁ ଯିବାକୁ ହେବ । ଆଜି ତାଙ୍କର ସେଠି କ'ଣ ଉତ୍ସବ ଅଛି, ମୁଁ ଘଣ୍ଟେ ଦୁଇ ଘଣ୍ଟା ଭିତରେ ଫେରି ଆସିବି । ତୁମେମାନେ ଘରେ ପହଞ୍ଚି ଖିଆପିଆ କର । ମୋ ପାଇଁ ଅପେକ୍ଷା କରିବ ନାହିଁ । ତାଙ୍କ କଥା ନ ସରୁଣୁ ସେଠି ଠସାଠସ୍ ଭର୍ତ୍ତି ଏକ ବସ ଆସି ଛିଡ଼ା ହେଲା । ସେ କୌଣସି ମତେ ତହିଁରେ ଚଢ଼ିଗଲେ । ପାଖରେ

ଥିବା ମିଠା ଦୋକାନ ଆଗରେ ସଂଜୟଦା ପଚାରିଲେ, ''ବେବି କିଛି ଖାଇବ ? ଚାଲ୍ କିଛି ଖାଇ ନିଅ ।'' ମୁଁ କହିଲି, ଘରର ଏତେ ପାଖରେ ଥାଇ ପୁଣି ଦୋକାନରେ ଖାଇବି ? ନା-ନା ଚାଲ ଘରେ ଖାଇବା, ତିଆରି ହୋଇଥିବ । ସେ କହିଲେ, ତା ହେଲେ ଟିକେ ଅପେକ୍ଷା କର । ମୁଁ ମିଠାଟିକେ କିଣି ନିଏଁ ।

ମିଠା ନେଇ ଆମର ଘରେ ପହଞ୍ଚିଲା ବେଳକୁ ନଅଟା ବାଜିଲାଣି । ବାଲେଶ୍ୱର ସେତେବେଳକୁ ରନ୍ଧା ଆରମ୍ଭ କଲେଣି । ପୁଅକୁ ସେ ଗାଳିକଲେ । ଖୁବ୍ ବୁଲା ଚାଲିଛି । ସ୍କୁଲ୍‌ର ପାଠ ପୁଣି କେତେବେଳେ ହେବ ? ବାପାର ଗାଳି ଶୁଣି ହିରୋ ଶୀଘ୍ର ଶୀଘ୍ର ବହି ନେଇ ପଢ଼ିବାପାଇଁ ବସିଗଲା । ମୁଁ ଆଶ୍ଚର୍ଯ୍ୟ ହୋଇ ତାର ଇଂରେଜୀ ପଢା ଶୁଣୁଥିଲି । ଅଟକୁ ନଥାଏ ସେ ।

ସଂଜୟଦା କପଡ଼ା ବଦଳେଇ ନିଜ ପଢ଼ାପଢ଼ିରେ ଲାଗିପଡ଼ିଲେ । ମତେ କହିଲେ, ''ବେବି ତୁମର ପ୍ରଥମ ବହି ବାହାରି ଗଲାଣି । ମାତ୍ର ତୁମେ ତାକୁ ପଢ଼ି ପାରିନାହଁ । ତୁମ ପିଲାମାନେ ତ ହିନ୍ଦି ପଢ଼ନ୍ତି । ମୁଁ ହଁ କଲାରୁ ସେ କହିଲେ, ତେବେ ତୁମେ ତାଙ୍କଠୁ ହିନ୍ଦୀ ପଢ଼ିବା ଶିଖିପାରିବ । ମତେ ଗୋଟିଏ କାଗଜ ଦେଇ ସେ ପଢ଼ି ଶୁଣେଇବାକୁ କହିଲେ । ମୁଁ ତାକୁ ଡରି ଡରି ପଢ଼ି ପକାଇଲି । ସେ କହିଲେ, ''ତୁମେ ତ ହିନ୍ଦୀ ଜାଣିଛ । ଟିକେ ଚେଷ୍ଟା କଲେ ଭଲରେ ଶିଖି ଯିବ ।

କିଛି ସମୟ ପରେ, 'ଦେଖିବା ବାଲେଶ୍ୱର କଣ ରାନ୍ଧୁଛନ୍ତି କହି ମୁଁ ଉଠିଗଲି । ବାଲେଶ୍ୱରଦା'ଙ୍କୁ ମୁଁ ପଚାରିଲି, ''କଣ ତିଆରି କରୁଛ ଦାଦା ? କି ତରକାରି ଏହା ? ଭାତ ହେବ ନା ରୋଟି ? ରୋଟି ଯଦି ମୁଁ କରିଦେବି । ସେ କହିଲେ, ''ନା-ନା ତୁମେ ସେଠି ଯାଇ ବସ । ଏବେ ସବୁ ହୋଇଯିବ ।'' କିଛି ମଇଳା ବାସନ ପଡିଥିଲା, ତାକୁ ଧୋଇବାରେ ଲାଗିଲି । ବାଲେଶ୍ୱର ତାକୁ ବି ମନା କଲେ । କିଛି ସମୟ ପରେ ବାଲେଶ୍ୱର କହିଲେ, ''ତୁମେମାନେ ଖାଇନିଅ । ଅଶୋକଜୀଙ୍କୁ ଡେରି ହୋଇପାରେ ।'' ସଂଜୟଦାଦା କହିଲେ, ''ନା, ଅଶୋକଜୀଙ୍କୁ ଆସିବାକୁ ଦିଅ, ନା କ'ଣ ବେବି ? ମୁଁ କହିଲି ''ହଁ ଜେଠୁ ଆସିଲେ ଏକା ସାଙ୍ଗରେ ଖାଇବା । ଠିକ୍ ଏହି ସମୟରେ ଜେଠୁ ଆସିଲେ । ବାଲେଶ୍ୱରକୁ ଶୀଘ୍ର ଶୀଘ୍ର ଭୋଜନ ବାଢ଼ିବା ଦେଖି କହିଲେ, ''ତୁମେମାନେ ଏ ପର୍ଯ୍ୟନ୍ତ ଖାଇନାହଁ ?'' ବାଲେଶ୍ୱର କହିଲେ, ''ନା, ସମସ୍ତେ ଆପଣଙ୍କ ଅପେକ୍ଷାରେ ଅଛନ୍ତି ।'' ଜେଠୁ କହିଲେ, ''କଣ ପାଇଁ ? କେତେ ଲୋକ ସେଠି ଥିଲେ, ମତେ ଅଖିଆ ଛାଡ଼ିବେ ? ଚାଲ ଚାଲ ଆଗ ତୁମେମାନେ ଖାଇବସ । ହିରୋ, ତୁ ବି ବସ । ଏ ପର୍ଯ୍ୟନ୍ତ ଶୋଇନାହୁଁ ? ଏମିତିରେ ଆଠଟା ଆଗରୁ ଶୋଇପଡୁ ।

ଖିଆପିଆ କରିବା ପରେ ଜେଠୁ କହିଲେ, ''ଚାଲ, ତାତୁସ୍‌ଙ୍କୁ ଫୋନ୍ କରି ଆସିବା । ରାତି ହେଲାଣି । ଫୋନ୍ ବୁଥ୍ ଖୋଲାଥିବ ନା ନାହିଁ ଯେ ।'' ଦୁଇ ତିନିଟା ଜାଗାରେ ଏସ୍‌ଟିଡି ବୁଥ୍ ବନ୍ଦ ହୋଇ ସାରିଥିଲା । ଯେଉଁଠି ଖୋଲାଥିଲା, ସେଠି କିଛି ମଦୁଆ ପିଲାମାନଙ୍କର ଭିଡ । ତାତୁସ ଜଣ ଜଣ କରି ଆମ ତିନିଜଣଙ୍କ ସହ କଥା ହେଲେ । ଜଣେ ମଦୁଆ ମତେ ଦେଖି ଆଖି ମାରିଲା । ରାଗରେ ତାକୁ ଥରେ ଚାହିଁ ମୁଁ ମୁହଁ ବୁଲେଇ ଦେଲି । ଇଚ୍ଛା ହେଉଥାଏ, ଏହି ଲମ୍ପଟ ଟୋକାକୁ

ଚାବୁକ୍ ମାରି ସିଧା କରିବା କଥା । ଏମାନଙ୍କ ଯୋଗୁଁ ଝିଅମାନେ ସନ୍ଧ୍ୟା ହେଲେ ଘରୁ ବାହାରି ପାରନ୍ତି ନାହିଁ ।

ଆମେ ଫୋନ୍ କରି ଫେରିବା ପରେ ଖାଇବା ଟେବୁଲ୍‌ରେ ବସି ଗପସପ କରିବାକୁ ଲାଗିଲୁ । ଜେଠୁ ପଚାରିଲେ, ''ଅର୍ଜୁନର ସାଙ୍ଗମାନେ ଏବେ ତାତୁସ ସାଙ୍ଗରେ ଅଛନ୍ତି ନା ଚାଲି ଗଲେଣି ? ସୁଖଦୀପ, ସମିତ୍, ରମଣ, ସମସ୍ତେ କେମିତି ଅଛନ୍ତି ? ମୁଁ କହିଲି, ''ରମଣ ତ ଗଲାଣି । ସୁଖଦୀପ ଆଉ ସମିତ୍ ଅଛନ୍ତି । ସଂଜୟଦା କହିଲେ, ତମର ନ ରହିବାରେ ତାତୁସଙ୍କର ଅସୁବିଧା ହେଉଥିବ ?'' ମୁଁ କହିଲି, କିଛି ଅସୁବିଧା ହେବ । କିନ୍ତୁ ନିଜ ଖାଇବା ସେ ତିଆରି କରି ନିଅନ୍ତି । ମାତ୍ରାସ ଗଲେ ସେଠି ଖାଇବା ସେ ତିଆରି କରନ୍ତି । ହିରୋକୁ ନିଦ ମାଡୁଥିଲା । ଆମ କଥାରେ ସେ ବୋର ବି ହେଉଥିଲା । ଜେଠୁଙ୍କ ବିଛଣା ପାଖରେ ସପଟିଏ ବିଛାଇ ସେ ଶୋଇ ପଡିଲା । ଜେଠୁ ମତେ କହିଲେ, ''କଣ ବେବି, ନିଦମାଡୁଛି ତ ? ଶୋଇପଡ । ବହୁତ ରାତି ହେଲାଣି ।'' ଘଡିଦେଖି ସେ ଚମକି ପଡ଼ିଲେ । କହିଲେ, ବାବା ବାରଟା ହେଲାଣି । ଯାଅ ସମସ୍ତେ ଶୋଇପଡ଼ । ସେ ନିଜେ ବି ଯିବାପାଇଁ ବାହାରିଲେ ତ ମୁଁ କହିଲି, ''ଆପଣଙ୍କୁ ତ ରାତିରେ ନିଦ ଆସେ ନାହିଁ । ଚାଲନ୍ତୁ ଆଜି ମୁଁ ଆପଣଙ୍କ ସାଙ୍ଗରେ କଥା ହେବି ।'' ସେ କହିଲେ, ''ପାଗଳ ହେଲୁ ନା କ'ଣ ? ତୁ ଥକି ଯାଇଛୁ । ଶୋଇପଡ଼ ।'' ମୁଁ ମାନିଲି ନାହିଁ । ରାତି ଦୁଇଟା ଯାଏଁ ଆମେ ଦୁହେଁ କଥାବାର୍ତ୍ତା କଲୁ ।

ସକାଳ ସାତଟାରେ ଆମେ ସମସ୍ତେ ଏକାଠି ଚା ପିଉଥିଲୁ । ସଂଜୟଦା' ମନରେ କଣ ଆସିଲା କେଜାଣି ? କହିଲେ, ''ବେବିର ଏଠିକାର ଗୋଟିଏ ଫଟୋ ରଖିଲେ ଭଲ ହେବ ।'' ସେ ହିରୋକୁ କହିଲେ ଦେଖିଲୁ, ତୋ ବାବା କେମେରାରେ ରିଲ୍ ଥାଇପାରେ । ସେ ବାପାଙ୍କୁ ନ ପଚାରି ଆଖି ପିଛୁଳାକେ ଡ୍ରୟରରୁ କେମେରା ଆଣି ଆସିଲା । ସଂଜୟଦା ମତେ ଆଉ ଜେଠୁଙ୍କୁ ବସେଇ କେତେ ଗୁଡ଼ିଏ ଫଟୋ ନେଲେ । ସେଥିରେ ଜେଠୁଙ୍କୁ ଧରି ହିରୋ ବି ବସିଥିଲା । ମୁଁ ସଂଜୟଦା'ଙ୍କୁ କହିଲି ''ଦାଦା ମୋ ପାଇଁ ବଜାରରୁ ଗୋଟିଏ କେମେରା କିଣି ଦେବ । ମୁଁ ତାତୁସଙ୍କୁ କହିଛି । ସେ ବିଗୁଡୁଥିଲେ, ବେକାର ପଇସା ବରବାଦ କରିବୁ । ପରେ କହିଲେ, ସଂଜୟକୁ ପଇସା ଦେବୁ । ସେ ଭଲ ଦେଖି କିଣିଦେବ । ଜେଠୁ ଶୁଣି କହିଲେ, ତୋ ତାତୁସ ଠିକ୍ କହୁଛି । ବେକାର କାହିଁକି ପଇସା ଖର୍ଚ୍ଚ କରିବୁ । ମୁଁ ଭାବିଲି, ଏମାନେ ସମସ୍ତେ ଗୋଟିଏ କିସମର ଲୋକ । ଗୋଟିଏ ବୁଦାର ବାଉଁଶ । ଜେଠୁଙ୍କ ଆଗରେ ମତେ କେମେରା କଥା ଉଠେଇବାର ନଥିଲା । ହେଲେ ଯେମିତି ହେଉ ମୁଁ କେମେରା ନେବି । ତାତୁସଙ୍କୁ ଜେଠୁଙ୍କ ଫଟୋ ଦେଖାଇବି । କେତେ ଦିନରୁ ଦୁଇ ଜଣଙ୍କ ମଧ୍ୟରେ ଦେଖାସାକ୍ଷାତ୍ ହୋଇନାହିଁ । ଫଟୋ ଦେଖି ଖୁସୀ ହେବେ । ସଂଜୟଦା ମୋ ମନ ଠଉରାଇ ନେଲେ । ସ୍ମିତ ହସ ହସି ଜେଠୁଙ୍କୁ କହିଲେ, ''ବେବିକୁ ଏଠି ଆଖପାଖରୁ ମୁଁ ଟିକେ ବୁଲେଇ ଆଣେ । ନା କ'ଣ ବେବି ? ବେବି ତୁମେ ତ କେବେ କଲିକତା ଆସିନାହଁ । ଚାଲ ତୁମକୁ ଭିକ୍‌ଟୋରିଆ ମେମୋରିଆଲ ଦେଖାଇ ଆଣିବି ।'' ଏତିକିରେ ବାଲେଶ୍ୱର ଆମକୁ ଜଳଖିଆପାଇଁ ଡାକିଲା । ଜେଠୁ ଜଳଖିଆରେ ପ୍ରତିଦିନ ଉପମା ଖାଆନ୍ତି ବୋଲି ମୁଁ ଜାଣିନଥିଲି । ନୋହିଲେ ରାତିରେ ବାଲେଶ୍ୱରକୁ କହି ନଥାନ୍ତେ, ତାଙ୍କ

ତିଆରି ପୋହାର ସ୍ୱାଦ ଅର୍ଜୁନଦା ଆଜି ବି ଭୁଲି ନାହିଁ । ଜଳଖିଆରେ ପୋହା ହୋଇଥିଲା । ଜେଠୁ ବାଲେଶ୍ୱରକୁ ପଚାରିଲେ, ''ଆଜି ଉପମା ହୋଇନି ?'' ବାଲେଶ୍ୱରଦା'କହିଲେ, ସବୁଦିନ ତ ଉପମା ଖାଉଛ । ଆଜି ଚୁଡ଼ା ଉପମା ଖାଅ । ଖାଉ ଖାଉ ସଂଜୟଦା କହିଲେ, ବେବି ତୁମେ ଖାଇସାରି ରେଡି ହୁଅ । ସେଇଠୁ ଫେରି ପୁଣି ତୁମକୁ ଆମ ଘରକୁ ଯିବାକୁ ହେବ । ମୁଁ ପ୍ରସ୍ତୁତ ହେବାପାଇଁ ଗଲି । କପଡ଼ା ବଦଳେଇ ବାଥ୍ ରୁମ୍‌ରୁ ଫେରି ଦେଖିଲି, ଜେଠୁ ଖଟରେ ଆଉଜି ସୁଟ୍-ସାଲଓ୍ୱାର ପିନ୍ଧିଥିବା ତଥା ଘନକଳା ବାଳଥିବା ଜଣେ ଝିଅ ସାଙ୍ଗରେ କଥା ହେଉଛନ୍ତି । ଜାଣି, ଝିଅଟିର ଆଖି ଚମକୁ ଥାଏ । ମୁହଁ ହସ ହସ । ମତେ ଦେଖି ସେ ହସିଲା । ତା ମୁହଁ ଶର୍ମିଳା ଦିଦିଙ୍କ ସାଙ୍ଗରେ ମିଶୁଥିଲା । ଜେଠୁ ମତେ କହିଲେ, ଏହି ଦେଖ.. । ମୁଁ ତାଙ୍କ କଥା ପୂରା ହେବାକୁ ନଦେଇ କହିଲି, ''ତୁମେ ଶର୍ମିଳା ଦିଦିଙ୍କ ଭଉଣୀ ନା ?''

ସଜୟଦା' କୁଆଡ଼େ ବାହାରକୁ ଯାଇଥିଲେ । ଫେରିକି ମତେ କହିଲେ, ''ବେବି ଚାଲ, ଚାଲ, ପୁଣି ଶର୍ମିଳାଦିଦିଙ୍କ ଭଉଣୀକୁ ଦେଖି ପଚାରିଲେ, ''ତୁମେ କେତେବେଳେ ଆସିଲ ? ସବୁ ଠିକ୍ ଅଛି ତ ? ସିଏ କହିଲା, ହଁ ଠିକ୍ ଅଛି । ତୁମେ ସବୁ କୁଆଡ଼େ ଯାଉଛ ? ଜେଠୁ କହିଲେ, ''ଏହି ପାଖକୁ । ତୁମେ ବି ଟିକେ ବୁଲି ଆସ । ସେତେବେଳ ଯାଏଁ ମୁଁ ଟିକେ ଆରାମ କରେ ।'' କହୁଁ କହୁଁ ସେ ଖଟରେ ଶୋଇପଡିଲେ । ରାତିରେ ମତେ ଦେଇଥିଲେ ସେହି ଖଟ । କିଛି ସମୟ ପର୍ଯ୍ୟନ୍ତ କେବଳ ଏକଡ଼ ସେକଡ଼ ହେଲେ । ହେଲେ ତାଙ୍କୁ ନିଦ ଲାଗିଲା ନାହିଁ । ସେ ଉଠିକି ବସିଲେ । କହିଲେ, ଜାଣିଛୁ ବେବି, ଏହି ବେଡ୍‌ରେ ମୋ ବାବା ଶୋଉଥିଲେ । ବେଡ୍ ଉପରେ ଯେଉଁ କମ୍ବଳ ରହିଛି ତାକୁ ସେ ଘୋଡେଇ ହଉଥିଲେ । ସେହି କଥା କହି ସେ କିଛି ସମୟ ଧରି ଉଦାସ ରହିଲେ । ତାଙ୍କ ସ୍ୱର ଥରିଲା ଥରିଲା ପରି ଲାଗୁଥିଲା । ମତେ ବି ଦୁଃଖ ଲାଗିଲା । ବାହାରୁ ସଂଜୟଦା' ଡାକିଲେ, ''କୁଆଡ଼େ ଗଲୁ ବେବି, ଚାଲ୍ ।'' ମୁଁ ବାହାରକୁ ବାହାରିଲି । ଶର୍ମିଳାଦି'ଙ୍କ ଭଉଣୀ ଜେଠୁଙ୍କୁ କହିଲା, ''ସେମାନେ ବୁଲି ଆସନ୍ତୁ, ମୁଁ ଆପଣଙ୍କ ସଙ୍ଗେ ବସି କଥା ହେଉଛି । ଜେଠୁ ଟିକେ ଆରାମ କରିବେ ଭାବି ତାକୁ ଆମ ସାଙ୍ଗରେ ପଠେଉଥିଲେ । ଏବେ କେମିତି ଆରାମ୍ କରିବେ ଯେ ? ଠିକ୍ ସେତିକି ବେଳେ ଜଣେ ଭଦ୍ରବ୍ୟକ୍ତି ଜେଠୁଙ୍କୁ ଭେଟିବାପାଇଁ ଆସିଲେ ।

ସବୁଆଡ଼େ ବୁଲାବୁଲି କରି ଆମେ ତାପରେ ଭିକ୍ଟୋରିଆ ମେମୋରିଆଲ୍‌ରେ ପହଞ୍ଚିଲୁ । ସେଠୁ ବାହାରିବା ପରେ ଶର୍ମିଳାଦିଙ୍କ ଭଉଣୀ କହିଲେ, ''ଯଦି ମୁଢ଼ିଆଳୁ ମିଳିବ, ଖାଇବା ।'' ଏଠି-ସେଠି ଦେଖି କହିଲେ, ''ସେଠିକି ଚାଲ ।'' ସେ ଦୁଇ ଜଣ ମୁଢ଼ିଆଳୁ ନେବାକୁ ଲାଗିଲେ । ମା' କଥା ମୋର ମନେ ପଡିଲା । ଏହି କଲିକତାରେ ନିଜ ଛୋଟଛୋଟ ଛୁଆଙ୍କୁ ଛାଡ଼ି କୁଆଡ଼େ ସେ ଲୁଚିଗଲା । ବାବା ଯେତେ ଖୋଜିଲେ ମିଳିଲା ନାହିଁ । ପରେ ଦାଦା ତାକୁ ଖୋଜି ବାହାର କଲା । ସାଙ୍ଗରେ ନେଇଗଲା । ସେତେବେଳକୁ ସେ ବହୁତ ବଦଳି ଯାଇଥିଲା । ଚିହ୍ନା ଯାଉ ନଥିଲା । ପୂରାପୂରି ବିକ୍ଷିପ୍ତ ମସ୍ତିଷ୍କ । ମତେ ଲାଗିଲା, ହୁଏତ ମା' ଦିନେ ସାନ ଭାଇର ହାତଧରି ଏହି ଜାଗାକୁ ଆସିଥାଇ ପାରେ । ମୁଢ଼ି, ବେଲୁନ୍, ଆଇସ୍‌କ୍ରିମ ଦେଖି ଭାଇ କ'ଣ କିଣିଦେବାଲାଗି ମା' ପାଖରେ ଜିଦି କରି ନଥିବ ? କିଣିବାଲାଗି କ'ଣ ମା' ପାଖରେ ପଇସା ଥିବ ? ହୁଏତ ସେ ପିଲାର ଜିଦ୍

ପୂରା କରିଥିବ । ପଇସା ନଥିଲେ ଗାଳିଦେଇ ଚୁପ୍ କରେଇ ଦେଇଥିବ । କହିଥିବ କେତେ ବା ପଇସା ପାଖରେ ? ଆଜି ସାରିଦେଲେ କାଲି କ'ଣ ଖାଇବା ! ମନମାରି ଭାଇ ରହିଯାଇଥିବ । ମା' ବି ହୁଏତ ଦୁଃଖରେ ପିଲାଙ୍କୁ ନିଜ କୋଳକୁ ନେଇ ଗେଲ କରିଥିବ । ମା'ର ସ୍ନେହ ପାଇ ସାନ ପିଲାଟି ଖୁସୀ ହୋଇ ଯାଇଥିବ ।

ସଂଜୟଦାଦା ମୁଢ଼ିଆଳୁ ନେଇ ଛିଡ଼ା ହୋଇଥିଲେ । କହିଲେ, ''କଣ ହେଲା ବେବି, ସେଠି ଛିଡ଼ା ହୋଇ କ'ଣ ଦେଖୁଛୁ ? ଅନେକ ବେଳୁ କ'ଣ ଭାବୁଛୁ ? ମୁଁ କହିଲି, ''ନା କିଛି ନାହିଁ । କଲିକତା ଦେଖିବାକୁ ବହୁତ ଇଚ୍ଛା ଥିଲା । ଦେଖି ନଥିଲି ତ । ସଂଜୟ ଦାଦା ବୁଝିଗଲେ ଯେ ମୁଁ କଥା ଲୁଚାଉଛି । ଅସଲ କଥା ଆଉ କିଛି । ହେଲେ ସେ କିଛି କହିଲେ ନାହିଁ । ଶର୍ମିଲାଦି'ର ଭଉଣୀ ମୁଢ଼ିଆଳୁର ପଇସା ଦେବା ଦେଖି ମନା କଲେ । କହିଲେ, ଆରେ ନା, ପଇସା ମୁଁ ଦେଉଛି । ସେ କହିଲେ, ''ନା ନା ମୁଁ ଦଉଛି । ମୁଁ ଖୁଆଇବି । ଏଥିରେ କଣ ଅଛି, ତୁମେ ଦିଅ ବା ମୁଁ । ଏକା କଥା ।''

ସଂଜୟଦାଦା ମତେ କହିଲେ, ''ତୁମର ପରା କେମେରା ନେବାର ଅଛି । ଚାଲ ବଜାରକୁ ଯିବା ।'' ଦୋକାନରେ ସଂଜୟଦା' କେମେରାର ଦାମ୍ ମୂଲଚାଲ କଲେ । ବାରଶହ ଦଶ ଟଙ୍କା କେମେରାରେ ଦଶ ଟଙ୍କା କମ୍ କରିବାକୁ କହିଲେ । ଦୋକାନୀ ଆଦୌ ମାନିଲା ନାହିଁ । ମୁଁ ବି କେତେ ମୂର୍ଖ ଯେ ସେ ମୋ ଦଶଟଙ୍କା ବଞ୍ଚେଇବାପାଇଁ ଲାଗିଥିଲେ, ଅଥଚ ତାଙ୍କ ପଛରେ ଛିଡ଼ା ହୋଇ ଦୋକାନୀକୁ ବାରଶହ ଦେଲା ପରେ ପାଞ୍ଚ ଶହର ନୋଟ୍ ଦେଲି । ଶେଷରେ ସେହି ପାଞ୍ଚଶହ ଟଙ୍କାକୁ ଭଙ୍ଗେଇ ଦୋକାନୀକୁ ବାକି ଟଙ୍କା ଦେବାକୁ ପଡିଲା । କେମେରା କିଣିଲା ପରେ ମୋର ଆନନ୍ଦର ସୀମା ନଥିଲା । ଏବେ ମୁଁ ନିଜ ଇଚ୍ଛାରେ ଫଟୋ ଉଠାଇ ପାରିବି । ମୋର ଅଭିଳାଷ ପୂରା ହୋଇଗଲା ।

ଆମେ ଘରକୁ ଆସିଲୁ । ଘରେ ସୁନେଲି ରଙ୍ଗର ଫେରା ପଡିଥିବା ତନ୍ତର କଳାଶାଢ଼ି ପିନ୍ଧି ମଝି ମଝିକିଆ ଗଢ଼ଣର ଜଣେ ଗୋରୀ ସୁନ୍ଦରୀ ଖୁସ୍‌ମିଜାଜୀ ମହିଳା କୋଳରେ ବ୍ୟାଗ୍‌ଟିଏ ରଖି ଜେଠୁଙ୍କ ସାଙ୍ଗରେ କଥାବାର୍ତ୍ତା କରୁଛନ୍ତି । ଆମେ ଦୁହେଁ ପରସ୍ପରକୁ ଦେଖି ହସିଲୁ । ଜେଠୁ ମତେ କହିଲେ, ସଂଜୟର ସ୍ତ୍ରୀ ଯମୁନା । ଏହି ପାଖର ଏକ ସ୍କୁଲରେ ଟିଚର ଅଛି । ସ୍କୁଲ୍ ପରେ ତମକୁ ଘରକୁ ନେବାପାଇଁ ଆସିଛି । ଯମୁନା ଦିଦି ସଂଜୟଦାଙ୍କୁ ଉଲ୍ଲହନା ଦେଇ କହିଲେ, ''ଏବେ ଚାଲ । ଘରେ ପହଞ୍ଚୁ ପହଞ୍ଚୁ ସନ୍ଧ୍ୟା ହୋଇଯିବ ।  ଘରେ ପହଞ୍ଚି କଥା ହେବା । ସଂଜୟଦା କହିଲା, ''ହଁ ଚାଲ ।'' ଜେଠୁ କହିଲେ, ''ରହ, ପ୍ରଥମେ କିଛି ଖାଇନିଅ । ଦେଖ ବାଲେଶ୍ୱର କଣ ରାନ୍ଧିଛି । ଯମୁନାଦିଦି ଶୀଘ୍ର ଖାଇବା ଗରମ କଲେ । ମୁଁ ବି ତାଙ୍କୁ ସାହାଯ୍ୟ କରିବାପାଇଁ ଗଲି । ଖାଇବା ଟେବୁଲରେ ସମସ୍ତେ ଜମା ହେଲୁ । କିନ୍ତୁ ହିରୋର କୁଆଡ଼େ ଦେଖାନାହିଁ । ତା ପ୍ରତି କାହାରି ଧ୍ୟାନ ନାହିଁ । ଜେଠୁ, ''ହିରୋ କୁଆଡ଼େ ଗଲା, ହିରୋ କୁଆଡ଼େ ଗଲା ? କହି କହି ତାକୁ ଖୋଜିବାରେ ଲାଗିଲେ । କିଏ କହୁଛି ଏବେ ତ ଏଠି ଥିଲା, ଆଉ କିଏ କହୁଥିଲା ତାକୁ ତ ବହୁତ ବେଳ ହେଲା ଦେଖିଥିଲେ । ଜେଠୁ ଆମମାନଙ୍କୁ ପଚାରିଲେ, ସେ କଣ ତୁମମାନଙ୍କ ସାଙ୍ଗରେ ଯାଇଥିଲା ?''

ଆମେ ମନା କଲୁ । ଜେଠୁଙ୍କ ପାଇଁ ସେ ବଡ଼ ସାହାରା । ରାତିରେ କୁଆଡ଼େ ଗଲେ ତାକୁ ସାଙ୍ଗରେ ନେଇ ସେ ଯାଆନ୍ତି । ଛୁଟି ଦିନରେ ସେ ଜେଠୁଙ୍କ ପାଇଁ ସିଗାରେଟ୍, ଦିଆସିଲି, ଖବରକାଗଜ ଆଣିକି ଦିଏ । ତା' ବଦଳରେ 'ଦାଦାଜୀ ଦାଦାଜୀ' କହି ସ୍ନେହରେ ବେଟ୍ ବଲ୍‌ପାଇଁ ଜିଦି କରେ । ବିନା ହିରୋରେ ଜେଠୁ କେମିତି ଖାଇ ପାରିବେ । ସବୁ ଆଡ଼େ ଖୋଜି, ଆଉ ସମସ୍ତଙ୍କୁ ପଚାରିବା ପରେ ବି ଯେତେବେଳେ ତା'ର ପତ୍ତା ମିଳିଲା ନାହିଁ, ଅଚାନକ ପଛପଟୁ ଆସି ସେ 'ହାଉ କରିଦେଇ ଚମକେଇ ଦେଲା । ଜେଠୁ ଆଉ ଆମ ସମସ୍ତଙ୍କୁ ଚମକାଇ ସେ ଜେଠୁଙ୍କୁ କୁଣ୍ଢାଇ ପକାଇଲା । ଜେଠୁ କହୁଥାନ୍ତି, ''କେଉଁଠି ଥିଲୁ ତୁ ? ସମସ୍ତଙ୍କୁ ଡରେଇ ଦେଲୁ । ଚାଲ୍ ଖାଇବୁ ଚାଲ୍ ।'' ଜେଠୁ ତାକୁ ଖାଇବା ଟେବୁଲ୍‌କୁ ନେଇଗଲେ । ହିରୋ ଜେଠୁଙ୍କୁ ଧରି ଉଠିଲା, କୁଦିଲା, ବଡ଼ ପାଟିରେ କହୁଥାଏ- ମତେ କେହି ଖୋଜି ପାଇଲ ନାହିଁ । ମୁଁ ଆଲମାରି ଭିତରେ ଲୁଚିଥିଲି । ମତେ କେହି ଖୋଜି ପାଇଲ ନାହିଁ ।'' ସଂଜୟଦା କହିଲେ, ''ଖୁବ୍ ମଜା ଆସିଲା ନା ? ଏମିତି ବଦମାସି କରିବୁ ଯଦି ହଷ୍ଟେଲ୍‌ରେ ରଖିଦେଇ ଆସିବି । ତାପରେ ଦେଖିବା କାହା ସାଙ୍ଗରେ ତୁ ସେଠି ବଦମାସି କରିବୁ । ସେ ଡରିଯାଇ ପଚାରିଲା, ''କଣ ସତରେ ? ସଂଜୟଦା' କହିଲେ, ''ସତ ନୁହେଁ ତ କ'ଣ ମିଛ ? ଏହି ଦିଦିକୁ ପଚାରୁନୁ । ଶର୍ମିଲା ଦିଦିଙ୍କ ଭଉଣୀ ଆଡକୁ ସେ ଇସାରା କଲେ । ଦିଦିଙ୍କ ଭଉଣୀ କହିଲେ, ହଁ ତତେ ଜଣାନାହିଁ । ଆମେ ତ ତୋ ପାଇଁ ହଷ୍ଟେଲରେ କଥା ବି ହେଇ ସାରିଛୁଁ । ତତେ କାଲି ସେଠାକୁ ଯିବାକୁ ହେବ । ନିଜ ବହି ଖାତା ସବୁ ରେଡି କର । ଉଦାସ ହୋଇ ସେ ଧୀରେ ଧୀରେ ଜେଠୁଙ୍କୁ ପଚାରିଲା, ''କଣ ସତରେ ଦାଦାଜୀ । ମତେ ହଷ୍ଟେଲରେ ରଖି ଆସିବେ ?'' ଜେଠୁ ଖାଇ ଖାଇ କହିଲେ, ''ଆରେ ବାବା, ତତେ ଚିଡ଼େଇବାପାଇଁ ସେମାନେ ଏକଥା କହୁଛନ୍ତି । ଏବେ ତୁ ଖା । ମତେ ବି ଖାଇବାକୁ ଦେ ।''

ଖାଇବା ପରେ ସଂଜୟଦା ଓ ଯମୁନାଦିଦି ମତେ ନେଇ ତାଙ୍କ ଘରକୁ ଯିବାପାଇଁ ବାହାରିଲେ । ମୁଁ ଜେଠୁଙ୍କୁ ପ୍ରଣାମ କଲି । ତାଙ୍କ ଆଶୀର୍ବାଦ ନେଇ ଆମେ ବାହାରେ ଛିଡ଼ା ହୋଇଥିବା ଟେକ୍ସିରେ ବସିଲୁ । ସିଆଲଦା ଷ୍ଟେସନରେ ଯମୁନା ଭାଉଜ ଟିକଟ ନ କାଟୁଣୁ ଟ୍ରେନ୍ ଆସି ଠିଆ ହେଲା । ଭାଗ୍ୟକୁ ଆମେ ସିଟ୍ ପାଇଗଲୁ । ଲୋକାଲ୍ ଟ୍ରେନ୍‌ରେ ସିଟ୍ ମିଳିବା ସହଜ ନୁହେଁ । ଗାଡିରେ ବସୁଁ ବସୁଁ କେତେ ଲୋକଙ୍କୁ ନିଦ ଆସିବା ଆରମ୍ଭ ହୁଏ । ସାରା ରାସ୍ତା ସେମାନେ ଶୋଇ ଶୋଇ କଟେଇ ଦିଅନ୍ତି । ନିଦରେ କେହି ନିଜ ପାଖଲୋକର ଉପରେ ଢଳିପଡ଼ିବା ଦେଖିଲେ ତାହା ଭାରି ମଜା ଲାଗେ । ଥରେ ଅଧେ ତ ଦ୍ୱିତୀୟ ଲୋକଟି ତାକୁ ସିଧା ବସେଇ ଦିଏ । ଯେତେବେଳେ ଥରକୁ ଥର ଲୋକଟି ତା' ଉପରେ ଢଳିପଡ଼େ, ଚିଡିଯାଇ ସେ କହେ ''କ'ଣ ମହାଶୟ, କଣ ?'' ତାକୁ ଦୁଇ ପଦ ଶୁଣାଏ । ଏହା ପରେ ନିଦଉଥିବା ଲୋକର ନିଦ କାହିଁ କୁଆଡ଼େ ଉଭେଇ ଯାଏ ।

ମୁଁ ଯମୁନାଦି'କୁ କହିଲି, ଏହି ନିଦ ବି ଏମିତି ଗୋଟିଏ ଜିନିଷ ଯେ ନ ଆସିଲେ ତ କଷ୍ଟ ଆଉ ଅସୁବିଧା ଜାଗାରେ ଆସିଲେ ଅନ୍ୟକୁ କଷ୍ଟ । ସେ କହିଲେ, ''କେତେ ଲୋକ ଅଛନ୍ତି ଯାହାଙ୍କୁ ଗାଡ଼ିରେ ବସୁ ବସୁ ନିଦ ଆସିଯାଏ । ମତେ ଯଦି ଭଲ ଜାଗା ମିଳିଯାଏ, ସେଠି ମୁଣ୍ଡ ରଖି ଦୁଇ ଘଣ୍ଟା ଶୋଇ ପଡିବି । ସବୁଦିନେ ମୁଁ ଶୋଇ ଶୋଇ ଟ୍ରେନ୍‌ରେ ଯା-ଆସ କରେ ।'' ମତେ ପୁଣି

କହିଲେ, ''ତୁମେ ଶୋଇବ ବେବି ?'' ସଂଜୟଦା' କହିଲେ ''ନା, ବେବି ଶୋଇବ ନାହିଁ । ସବୁ ଦେଖି ଦେଖି ଯିବ । ନା କ'ଣ ବେବି ? ମୁଁ କିଛି ନ କହି ଦୁହିଁଙ୍କୁ ଦେଖି କେବଳ ହସି ଦେଲି । ଗାଡ଼ି ଚାଲିଲା । ଯମୁନା ଭାଉଜ ଜଣେ ଫେରିବାଲା ପାଖରୁ ସପେଟା କିଣି ମତେ ଦେଲେ । ନିଜେ ବି ଖାଇଲେ । ଟିକିଏ ସମୟ ପରେ ସେ ଝରକା କୋଣରେ ମୁଣ୍ଡ ରଖି ଶୋଇଗଲେ । ସାମ୍ନା ସିଟ୍‌ରେ ସଂଜୟଦା' ବ୍ୟାଗ୍‌କୁ କୋଳରେ ରଖି ନିଦରେ ଢୁଳେଇବା ଆରମ୍ଭ କଲେ । ମୁଁ ଝରକା ପଟୁ ଗଛ-ଲତା, ଛୋଟ ଛୋଟ ଘର ଆଉ ପଡ଼ିଆ ଦେଖୁଥାଏଁ । ଥରେ ସଂଜୟଦା'ଙ୍କ ବ୍ୟାଗ୍ ତଳେ ପଡିଗଲା । ତାକୁ ଉଠାଇ ମୁଁ ତାଙ୍କୁ ଦେଲି । ସେ ପୁଣି ଶୋଇପଡିଲେ । ମଝିରେ ଦୁଇ ଥର ଯମୁନା ଭାଉଜଙ୍କ ନିଦ ଭାଙ୍ଗିଥିଲା । ସଂଜୟ ଦାଦାର ନିଦ ଭାଙ୍ଗିଲା ପରେ ବି ଲାଗୁଥିଲା ଯେମିତି ତାଙ୍କୁ ଜଣାନାହିଁ ସେ ଚେଇଁଥିଲେ ନା ଶୋଇଥିଲେ । ସବୁ ଦିନ ସେମାନେ ଯିବା- ଆସିବା କରନ୍ତି । ତେଣୁ ଟ୍ରେନ୍ କେତେବେଳେ ପହଞ୍ଚିବ, ସେ ନେଇ ଠିକ୍ ଅନୁମାନ ଥିଲା । ତେଣୁ ଗାଡ଼ି ତାଙ୍କ ଷ୍ଟେସନରେ ପହଞ୍ଚିବା ପୂର୍ବରୁ ଦୁହିଁଙ୍କ ନିଦ ଭାଙ୍ଗି ଯାଇଥିଲା ।

ଗାଡ଼ିରୁ ଓହ୍ଲେଇ ସଂଜୟଦା ମୋର ବ୍ୟାଗ୍ ନେଇ ଗଲେ ଓ ବାହାରକୁ ଆସି ଯମୁନା ଭାଉଜଙ୍କୁ କହିଲେ, ଯଦି କିଛି ଫଳ କିଣିବାର ଅଛି, ସେଇଠୁ କିଣିବା । ଫଳ କିଣିସାରି ଆମେ ରିକ୍ସାରେ ବସିଲୁ । ଘରେ ପହଞ୍ଚିବାକୁ ଅଧଘଣ୍ଟାରୁ ବି କମ୍ ସମୟ ଲାଗିଲା । ତାଙ୍କ ପୁଅ ସେତେବେଳେ ଶୋଇଥିଲା । ମୁଁ ହାତ ମୁହଁ ଧୋଇ ବସିପଡ଼ିଲି । ଉମା ମୋ ପାଇଁ ଚା' ତିଆରି କରି ଆଣିଲା । ବାର ତେର ବର୍ଷର ଉମା ପୁଅକୁ ସମ୍ଭାଳେ, ଘରର ଛୋଟମୋଟ କାମ କରେ । ମୁଁ ଆଉ ଯମୁନା ଦିଦି ଚା ପିଉଥିଲୁ । ଏହି ସମୟରେ ସଂଜୟଦା' ଚବିଶି-ପଚିଶି ବର୍ଷର ଜଣେ ଯୁବକ ସହିତ ଆସିଲେ । କହିଲେ, ସେ ତାଙ୍କ ଛୋଟ ଭାଇ । ''ତମର କିଛି ପାଠକ ତମକୁ ଦେଖାକରିବାପାଇଁ ଆସୁଛନ୍ତି ।'' ମୁଁ କହିଲି, ''ମତେ ? ମୋ ସାଙ୍ଗରେ ଭେଟିବା କ'ଣ ଦରକାର ? ଯମୁନା ଭାଉଜ କହିଲେ, ''ତମର ବହି ସେମାନଙ୍କୁ ବହୁତ ଭଲ ଲାଗିଲା । ତୁମେ ଏଠି ଅଛ ଯେତେବେଳେ, ତୁମକୁ କଣ ଭେଟିବେ ନାହିଁ ? ଯମୁନା ଭାଉଜଙ୍କୁ ସଂଜୟଦା କହିଲେ, ତୁମେ ବି ନିଜ କାମ ଆଗ ସାରିଦିଅ । ତା' ସାଙ୍ଗରେ ବସିବ । ବଜାରରୁ କଣ ଆଣିବାର ଅଛି ? କୁହ ଆଣି ଆସିବା । ଯମୁନା ଭାଉଜ କହିଲେ ''କଣ ଆଣିବ ! କଣ ଖାଇବ ବେବି ? ବେବିକୁ ପଚାରନା । ମାଛ ନା ମାଂସ ? ମୁଁ କହିଲି, ''ବାବା, ମତେ କଣ ପଚାରୁଛ, ଯାହା ସମସ୍ତେ ଖାଇବେ ତାହା ମୁଁ ଖାଇବି । ପଚାରିଲେ, ଇଲିଶି ମାଛ ଖାଇବୁ ବେବି ? ମୁଁ କହିଲି ଇଲିଶି ? ଏବେ କଣ ମିଳିବ ? ଆମର ସେଠି ଇଲିଶି ମାଛପାଇଁ ବହୁତ ଖୋଜାଖୋଜି କରିବାକୁ ପଡ଼େ । ମୋ କଥାରୁ ସେମାନେ ଭାବିଥିବେ ଯେ, ଇଲିଶି ମାଛ ଖାଇବାକୁ ମୁଁ ଭଲ ପାଇବି । ଅବଶ୍ୟ ତାହା ସତ ବି । ବଂଗାଳୀ ଘରେ ପ୍ରାୟ ପ୍ରତିଦିନ ମାଛ ରନ୍ଧା ହୁଏ । କିସମ କିସମର ତରକାରି ଥିଲେ ବି ଲୋକ କହିବେ, ମାଛ ହେଇଥିଲେ ଆହୁରି ଭଲ ହୋଇଥାନ୍ତା । ତହିଁରେ ଯଦି ଇଲିଶି ମାଛ ହୁଏ ତା'ର କି ତୁଳନା ଅଛି ? ଘରେ ସ୍ତ୍ରୀ ଲୋକମାନେ କହିବେ, ଆଜି ଇଲିଶି ମାଛ ତରକାରି ପରା ! ରନ୍ଧାବେଳେ ଅଧିକ ଦୁଇ ମୁଠି ଚାଉଳ ପକେଇ ଦେବ ।

ସଂଜୟ ଦା' ବଜାର ଯିବାକୁ ବାହାରିଲାରୁ ତା'ର ପାଞ୍ଚ ବର୍ଷର ପୁଅ ଆପୁ ଆଖି ମଳି ମଳି ନିଦରୁ ଉଠିଲା । ଯମୁନା ଭାଉଜ ତାକୁ କହିଲେ, ''ଦେଖ କିଏ ଆସିଛି ? ଆଖି ଖୋଲ । ଦେଖ. ଆଗ ।'' ମୁଁ ତାକୁ କୋଳକୁ ଟାଣି ନେଇ ଗେଲ କଲି । ସେ ଦେଖିଲା ଯେ ସମସ୍ତେ ତା' ଆଡ଼େ ଅନାଇଛନ୍ତି । ଲାଜରେ ପୁଣି ଭିତରକୁ ଚାଲିଗଲା । ଆପୁ ମତେ ବହୁତ ଭଲ ପାଏ । ମୋର କଥା ଉପନ୍ୟାସରେ ଶୁଣିଲା ବେଳେ ଯଦି ମା'ଙ୍କ ଝଗଡ଼ା କଥା ଆସେ, ସେ ମା'କୁ କହେ, ଆଉ ପଢ଼ନା । ତା (ବେବିର) ପତି ତାକୁ ଏବେ ମାରିବ । କେବେ ପୁଣି ମା'କୁ ପଚାରେ, ବେବିର କ'ଣ ତିନୋଟି ମା' । ଯମୁନା ଭାଉଜ ତା' ପ୍ରଶ୍ନ ଶୁଣି ଡରି ଯାଏ । ଆଗକୁ ସେ ନ ପଚାରୁ, ବେବିର ଯଦି ତିନୋଟି ମା', ମୋର ମା' କାହିଁକି ଜଣେ ? ଏଭଳି ପ୍ରଶ୍ନ ଯଦି ପଚାରେ କିଏ ଉତ୍ତର ଦେବ ? ଆପୁ ପୁଣି ଘର ଭିତରୁ ଦୌଡ଼ି ଦୌଡ଼ି ଆସିଲା ଏବଂ ମା' କୋଳରେ ମୁହଁ ଲୁଚାଇ ଦେଲା । ମୁଁ ତାକୁ ଆଉ ଥରେ ନିଜ ପାଖକୁ ଟାଣି ଆଣିଲି । ତା' ହାତରେ ଚକୋଲେଟ ଦେଇ ତା'ର ଲାଜ ହଟେଇ ଦେଲି ।

ସଂଜୟ ଦା' ମନା କରୁଥାଏ । ତା' ସତ୍ତ୍ୱେ ମୁଁ ତା'ସହ ବଜାର ବାହାରିଲି । ଘର ଆଗରେ ତା'ର ଜଣେ ବନ୍ଧୁ ଦେଖାହେଲେ । ତାଙ୍କ ସହିତ ମୋର ପରିଚୟ କରେଇଲା ସେ । ଆମେ ତିନିହେଁ କଥା ଗପି ଗପି ବାଟ ଚାଲିବାକୁ ଲାଗିଲୁ । ଏପଟ ସେପଟ ଦେଖି ସାରି ମୁଁ କହିଲି, ଏ ଜାଗା ମତେ ଭାରି ଭଲ ଲାଗୁଛି । ବେଶି ଭିଡ଼ ଭାଡ଼ ନାହିଁ ।'' ମୁଁ ଆଉ ଦୁଇ ଚାରି ପଦ କଥା କହି ଚୁପ୍ ରହିଲି । ସଂଜୟଦା'ର ବନ୍ଧୁ ବୀରେନ କହିଲା, ''ବେବିକୁ ସେହି ଭଳିଆ ଜ୍ଞାନ ଆଜି ଯାଏଁ ହୋଇନଥିବ ।'' ସେ ଭାବିଲା, ମତେ ତା' କଥା ଶୁଣାଯାଇ ନଥିବ । ହେଲେ ଏହା କି ସଂଭବ ? ତିନିଜଣଙ୍କ ମଧ୍ୟରୁ ଜଣେ କହିବ ଏବଂ ଆଉ ଜଣେ ଶୁଣି ପାରିବ ନାହିଁ ? ତଥାପି ମୁଁ ତା' କଥା ଶୁଣି ନ ଥିବାର ବାହାନା କରି କହିଲି, ''ଏଁ କ'ଣ କହୁଥିଲେ କି ?'' ବୀରେନ କଥା ବଦଳେଇ ଉତ୍ତର ଦେଲା, ''ତୁମେ ତ ଖୁବ୍ ଭଲ ଲେଖୁଛ । ତୁମ ବହି ଏଠି ଅନେକ ଲୋକ ପଢ଼ିଲେଣି ।'' ଭଲ-ଖରାପ ଭିତରେ ପ୍ରଭେଦ ମୁଁ କରି ପାରେନି । ଯଦି ସିଧା ସିଧା ମତେ କିଏ କିଛି କହେ, ମୁଁ ଖରାପ ଭାବିବି ନାହିଁ । କାରଣ ଯେତେ ଅଧିକ ଜାଣିବ ମଣିଷ ସେତେ ଭଲ । ଜ୍ଞାନର ତ କୌଣସି ସୀମା ନାହିଁ । ମଣିଷ ଶିଖିବାକୁ ଚାହେଁ । ନା ଜାଣିବାର କୌଣସି ସୀମା ଅଛି, ନା ଶିଖିବାର । ମୁଁ ତାଙ୍କୁ କିଛି କହିଲି ନାହିଁ, ମାତ୍ର ତାଙ୍କ କଥା ଶୁଣି ଲଜ୍ଜିତ ଅନୁଭବ କଲି ।

ବଜାରରେ ସଂଜୟ ଦା' ପ୍ରଥମେ ଆଳୁ ପିଆଜ କିଣିଲା । ଦୋକାନୀଙ୍କ ମଧ୍ୟରେ କେହି ବିହାରୀ ତ ଆଉ କିଏ ସ୍ଥାନୀୟ ତ ପୁଣି କିଏ ବାଂଲାଦେଶୀ । ଆମେ ମାଛ ବଜାରକୁ ଗଲୁ । ସେଠି ଇଲିଶି ମାଛ ଥାଏ । ବିକିବା ଲୋକ ବାଂଲାଦେଶୀ । ସେ ତାଙ୍କ ବୋଲିରେ ନିଜର ସାଥୀକୁ କହିଲା, ''ଶୀଘ୍ର କର । ସାତଟା ବାଜିଲାଣି । ଡେରି ହେଲେ ଗାଡ଼ି ମିଳିବନି । ମାଛକୁ ବରଫରେ ରଖିଦେ ।'' ସେମାନଙ୍କ କଥାରୁ ଲାଗିଲା, ଆଖପାଖରେ କୋଉଠି ରହନ୍ତି । ସକାଳୁ ଆସନ୍ତି । ସନ୍ଧ୍ୟାରେ ବେପାର ସାରି ରାତି ଗାଡ଼ିରେ ଘରକୁ ଫେରିଯାନ୍ତି ।

ଆମେ ଘରକୁ ଫେରିଲା ପରେ ଯମୁନା ଭାଉଜ କହିଲେ, ''କିଛି ଲୋକ ଆସି ଫେରି ଗଲେଣି । କହିଛନ୍ତି, ବେବିର ଘରକୁ ଫେରିବା ପରେ ପୁଣି ଆସିବେ । ସଂଜୟ ଦା' ବଜାରର ବେଗ୍‌କୁ

କିଚେନ୍‌ରେ ରଖିଦେଲା । ମସିଣାଟିଏ ଆଣି ବାହାରେ ବିଛେଇ ଦେଲା । ଜାଗା କମ ହେଲେ ଲୋକ ମସିଣାରେ ବସିବେ । ଯମୁନା ଭାଉଜ କହିଲେ, ବେବି, ମାଛ ତୁ ରାନ୍ଧ । ଦେଖିବା କେମିତି ରାନ୍ଧୁ ଯେ ।'' ମୁଁ କହିଲି, ଠିକ୍ ଅଛି, ମୁଁ ରାନ୍ଧିବି । ହେଲେ ଇଲିଶି ମାଛ ତୁମେ କେମିତି ପସନ୍ଦ କର ? ବେସର ଝୋଳ, ନା ଆଉ କିଛି ? ମୁଁ ଇଲିଶିକୁ ବେଶି ଭାଜେ ନାହିଁ, ଝୋଳରେ କଞ୍ଚା ପକେଇ ଦିଏ । ତୁମେ କ'ଣ ପସନ୍ଦ କରିବ ଯେ ?'' ଯମୁନା ଭାଉଜ କହିଲେ, ''ତତେ ଯାହା ଭଲଲାଗେ, ସେମିତି ରାନ୍ଧ । ମାଛ ତ ତୋ' ଲାଗି ଅଣା ହେଇଛି ।'' ରନ୍ଧାବଢ଼ା ମତେ ଖୁବ୍ ଭଲ ଲାଗେ । ଲୋକଙ୍କୁ ଖୋଇଲେ ମତେ ଭାରି ଖୁସି ଲାଗେ ।

ସଂଜୟଦା' କହିଲା, ''ଏ ଯାଏଁ ତ କେହି ଆସିଲେନି । ଚାଲ ଯା' ଭିତରେ ଆମ ବହି ଦୋକାନରୁ ବୁଲି ଆସିବା ।'' ବହି ଦୋକାନ କଥା ଶୁଣି ମୁଁ ଭାରି ଖୁସୀ ହେଲି । ମତେ ଜଣା ନଥିଲା, ସଂଜୟଦା'ର ଗୋଟାଏ ବହି ଦୋକାନ ଅଛି । ସଂଜୟଦା' କହିଲା, ''ବେଳ ହେଲେ ଦେଖାଇବି, ଯେଉଁଠି ବସି ମୋର ଭାଇ ସେ ପାଣ୍ଡୁଲିପି ଟାଇପ କରିଥିଲା ।'' ମୁଁ ଯେମିତି ଥିଲି, ସେମିତି ତା' ସାଙ୍ଗରେ ବାହାରି ପଡିଲି । ଆମେ ଦୁହେଁ କଥା ଗପି ଗପି ଅଧାଦୂର ଚାଲି ଆସିଲୁ । ଦେଖିଲି ପଛରୁ କେହି ଜଣେ ସଂଜୟ ଦା' କଥାର ଉତ୍ତର ଦେଉଛି । ପଛକୁ ଓଲଟି ଦେଖିଲି, ଯମୁନା ଭାଉଜ । ସେ ବି ଆମ ସାଙ୍ଗରେ ଆସିଲା । ସଂଜୟ ଦା'ର ଦୋକାନରେ ସଜା ହୋଇଥିବା ବହିଗୁଡ଼ିକୁ ଦେଖି ମୋର ଲୋଭ ହେବାକୁ ବସିଲା । ସଂଜୟ ଦା' କହିଲା, ''ତୋର ଯେଉଁ ବହି ପସନ୍ଦ, ବାଛି ନେ ।'' ସେ ଦୁହେଁ ମୋ ଲାଗି କେତୋଟି ବହି ବାଛି ଗୋଟାଏ ଜାଗାରେ ଜମା କଲେ । ମୋତେ ବହୁତ ଖୁସି ଲାଗିଲା । ସମସ୍ତେ ମତେ ଭଲ ପାଉଛନ୍ତି ! କ'ଣ ଏଇଥିପାଇଁ ଯେ ମୁଁ ବହିଟିଏ ଲେଖିଛି ? ହେଲେ ବହି ତ କେତେ ଲୋକ ଲେଖୁଛନ୍ତି । ପୁଣି ତାତୁସଙ୍କ ବିନା ସହଯୋଗରେ ମୁଁ ବହି ଲେଖିବାକୁ କ'ଣ ସାହସ କରନ୍ତି ! ସେ ଓ ତାଙ୍କ ବନ୍ଧୁମାନେ ନିରନ୍ତର ମୋତେ ସାହସ ଦେଲେ । ନୋହିଲେ ବହି ଲେଖା କ'ଣ ସମ୍ଭବ ହୋଇଥାନ୍ତା ! ମୋ ବହିରେ ନୂଆ କ'ଣ ଅଛି ଯେ ? ଜଣେ ଝିଅର ଜୀବନୀ, ଯାହାର ବାଲି ଖେଳ ଖେଳିବା ବୟସରେ ବାହାଘର ହୋଇଗଲା; ପିଲା ଜନ୍ମ ହେଲେ; ପାରିବାରିକ ସୁଖ ଶାନ୍ତି ତା'ର ଭାଗ୍ୟରେ ନଥିଲା । ଏଭଳି କାହାଣୀର କ'ଣ ଅଭାବ ରହିଛି ? ତା'ପରେ ବି ମୋର ବହି ପ୍ରଶଂସା ପାଉଛି । ବୋଧହୁଏ ଏହା ପଛର କାରଣ ହେଲା ଯେ ନିଜ କଥା ଖୋଲି କି କହିଛି ମୁଁ । ଅନେକ ଲୋକ ସେମିତି ସବୁ କଥାକୁ ଖୋଲିପାରନ୍ତି ନାହିଁ । ଛାଡ଼ ।

କେତୋଟି ବହି ବାଛି ମୁଁ ସଂଜୟ ଦା' ହାତରେ ତା'ର ପଇସା ଦେବାକୁ ଚାହିଁଲି । ମାତ୍ର ସେ ନେଲା ନାହିଁ । କହିଲା, ''ପଇସା ରଖ । ଆଉ କିଛି ବହି ବି ନେଇ ଯା । ପଢ଼ିବୁ । ଏବେ ଉପର ଘରକୁ ଯିବା । ତୋ'ର ପାଣ୍ଡୁଲିପି ଯେଉଁଠି ଟାଇପ୍ ହୋଇଥିଲା, ସେହି ଜାଗା ତତେ ଦେଖାଇ ଦେବି ।'' ଉପର ଘରେ ସଂଜୟ ଦାଦାର ସାନ ଭାଇ ଟାଇପ୍ କରୁଥିଲା । ସେ ଆମକୁ ବସିବା ପାଇଁ କହୁଥିଲା । ସଂଜୟ ଦା' କହିଲା, ''ତୁ ତୋର କାମ କର । ଆମେ ଘରକୁ ଫେରିବୁ । ସେମାନେ ସବୁ ପହଞ୍ଚି ସାରିବେଣି ।''

ଆମେ ଘରକୁ ଫେରିଲୁ । ଘରେ ଲୋକ ଭର୍ତ୍ତି । ଅନେକ ବେଳ ଧରି ଆଲୋଚନା ଚାଲିଲା ପରେ ସଂଜୟ ଦା' କହିଲା, "ବେବି ସାଙ୍ଗରେ ଆପଣ ସମସ୍ତଙ୍କର ଫଟୋଟିଏ ନେବା । ଫଟୋ କଥା ଶୁଣି ଆପୁ ଭିତରୁ କ୍ୟାମେରା ଆଣି ଆସିଲା ଏବଂ କିଏ କେଉଁଠି ବସିଛି ହିସାବ ନକରି ଫଟୋ ଉଠାଇବାରେ ଲାଗିଲା । ମୁଁ ତାକୁ ମୋ କ୍ୟାମେରାରେ ଫଟୋ ନେବାକୁ କହିବାରୁ ତା'ର ବି ବାରମ୍ବାର ବଟନ ଚିପିଲା । ତା' ଠାରୁ କେହି କ୍ୟାମେରାଟିକୁ ଛଡ଼େଇ ନେବାକୁ ଚେଷ୍ଟା କଲେ, ସେ ବଡ଼ପାଟିରେ କାନ୍ଦିଲା ।

ଲୋକ ସବୁ ଯାଉ ଯାଉ ଖୁବ୍ ରାତି ହୋଇଯାଇଥିଲା । ଯମୁନା ଭାଉଜଙ୍କୁ ଛାଡ଼ି ଅନ୍ୟ ସମସ୍ତେ ଖାଇବାପାଇଁ ବସିଲେ । ଭାଉଜ ଆପୁକୁ ଖୁଆଉଥିଲେ । ଗୋଟିଏ ଜାଗାରେ ସ୍ଥିର ହୋଇ ବସି ଖାଇବ କ'ଣ, ଘର ସାରା ସେ ଦୌଡୁଥାଏ । କେବେ ଗର୍ଷାଟିଏ ଖାଇନିଏ ତ ପୁଣି କେବେ ବିଛଣା ବିଛାଇବାକୁ ଲାଗେ । ବିଛଣା ବିଛେଇଲା ବେଳେ ସେ ଦେଖିଲା ଯେ ସମସ୍ତଙ୍କ ଲାଗି ତକିଆ ନାହିଁ । ତେଣୁ ବାପାକୁ କହିଲା, "ବାପା, ସମସ୍ତଙ୍କ ଲାଗି ତକିଆ ନାହିଁ । ତୁମେ ଆଉ ବେବି ଗୋଟାଏ ତକିଆରେ ମୁଣ୍ଡ ଦେଇ ଶୋଇବ ।" ତା କଥା ଶୁଣି ତା' ମା ଓ ବାପା ଲାଜରେ ମୁଣ୍ଡ ତଳକୁ କରିଦେଲେ । ସେଇଥିପାଇଁ ପରା କହନ୍ତି, ପିଲା ଯାହା ଦେଖନ୍ତି, ତାହା ଶିଖନ୍ତି । ସେ ତା' ବାପା-ମା'କୁ ଗୋଟିଏ ତକିଆରେ ମୁଣ୍ଡ ଦେବାର ଦେଖିଥିବ । ସେଥିପାଇଁ ଭାବୁଛି, ଯେ କୌଣସି ପୁଅ-ଝିଅ ଏକ ସାଥିରେ ଶୋଇ ପାରିବେ ।

ଯମୁନା ଭାଉଜ ଆପୁକୁ ଖୋଉଥାନ୍ତି । ମାତ୍ର ତାଙ୍କର ଧ୍ୟାନ ଥାଏ ମୋ ଆଡ଼େ, ସଂଜୟ ଦା' ଆଉ ଉମା ଆଡ଼େ । ଉମାର ସେମାନେ କେତେ ଚିନ୍ତା କରନ୍ତି ! କେହି ଭାବି ପାରିବ ନାହିଁ, କେତେ ଭଲ ତାକୁ ପାଆନ୍ତି ସେ । କେହି କହିବନି ଯେ ସେ ଏ ଘରର ଝିଅ ନୁହେଁ । ଆପୁ ଆଉ ଉମା ବିଲକୁଲ ଭାଇ ଭଉଣୀ ଭଳି ରହନ୍ତି । ଜଣକ ବିନା ଅନ୍ୟ ଜଣେ ବେଶି ଡେରି ଯାଏ ରହି ପାରେନା ।

ଖାଇବା ବେଳେ ଯମୁନା ଭାଉଜ ପଚାରିଲେ, "ଆଜି ଶୋଇବା ତୋର ଡ଼େରି ହେଲାଣି । ନା ଉମା ? ଏବେ ଆଉ କିଛି କରିବା ଦରକାର ନାହିଁ । ଖାଇ ପିଇ ଶୋଇପଡ଼ । ଯାହା କାମଥିବ, ସକାଳୁ କରିବୁ । ଉମା ମାନିଲା ନାହିଁ । ଅଇଁଠା ବାସନ ସବୁ ଧୋଇବାରେ ଲାଗିଲା । ମୁଁ ଭାବିଲି, ତା' ସହିତ ମୋର କାମ କରିବା କଥା । ମାତ୍ର ସଂଜୟ ଦା' ଏବଂ ଯମୁନା ଭାଉଜ ମତେ ସେଠୁ ଭିତରକୁ ଡାକି ନେଲେ । ମୋ ବଦଳରେ ସଂଜୟ ଦା' ଉମାକୁ ସାହାଯ୍ୟ କରିବାକୁ ଲାଗିଲା । ବାଲେଶ୍ୱରଜୀ ହୁଅନ୍ତୁ ବା ଉମା ହେଉ କି ମୁଁ, ଆମମାନଙ୍କୁ ଯେଉଁ ସ୍ନେହ ଆଦର ମିଳିଛି, ତାକୁ ଦେଖିଲେ କିଏ କହିବ ଯେ ଆମେ ପରିବାରର ସଭ୍ୟ ନୋହୁଁ ? ଏହି କାରଣରୁ ତ ଆମେ କାମ କରୁଥିବା ଘରର ସୁଖ ଦୁଃଖକୁ ନିଜର ବୋଲି ଅନୁଭବ କରୁଁ । ପରଘରେ କାମ କରୁଥିବା ଅନେକ ଝିଅଙ୍କୁ ଏଭଳି ସ୍ନେହ ଆଦର କ'ଣ ମିଳେ ? ସକାଳୁ ନିଦରୁ ଉଠି ବିଚାରୀ କାମ କରି କରି ଏ ଘର ସେ ଘର ଦଉଡୁଥାଏ । ବାଟ ଚାଲି ଚାଲି ଚପଲ ଘୋରି ଯାଏ, ଅଧା ହେଇଯାଏ । ବାଥ ରୁମର ଶେଷ ହେଇ ଆସୁଥିବା ସାବୁନ ପରି ଘୋରି ହୋଇଥିବା ଚପଲକୁ ବି ସେ ପିନ୍ଧିନିଏ । ନିଘା ରହେନି, ଚପଲ ଦୁଇଟି ଭିନ୍ନ ରଙ୍ଗର ନା ଗୋଟାଏ ରଙ୍ଗର । ଦିନ ସାରା କାମ କରି ଯେତେବେଳେ

ସେ ଘରକୁ ଫେରେ ରାସ୍ତାରୁ ଝାଟିକୁଟି ଫଖୋଳି ଆଣିଥାଏ । ଘରେ ଚୁଲି ଜାଳିବ । ଦିନଟିଏ କଟିଗଲା, ବେଶ ସେତିକି ତା'ର ସନ୍ତୋଷ । ହେଲେ ତା'ର ଦୁରବସ୍ଥାପାଇଁ କ'ଣ ସେ ନିଜେ ଦୋଷୀ ? ତାକୁ ବୁଝାଇବାଲାଗି, ବଡେଇବାଲାଗି କେହି ଥିଲେ ସିନା ! ଉମାପାଇଁ ଯମୁନା ଭାଉଜ, ବାଲେଶ୍ୱରପାଇଁ ଜେଠୁ ବା ମୋ ପାଇଁ ତାତୁସ ଯେମିତି ଅଛନ୍ତି, ସେମିତି କେହି ଥିଲେ ସିନା !

ସଂଜୟ ଦା' ଓ ଉମା ବାସନ ମାଜୁଥିଲେ ଏବଂ ମୁଁ ପାଖରେ ଛିଡ଼ା ହୋଇ ଏସବୁ ଚିନ୍ତା କରୁଥିଲି । ଏହି ସମୟରେ ଆପୁ ଆସି କହିଲା, ''ଚାଲ, ମା' ଠାରୁ କାହାଣୀ ଶୁଣିବା ।'' ମତେ ସେ ଟାଣି ଟାଣି ନେଇଗଲା । ଯମୁନା ଭାଉଜ ମତେ କହିଲେ, ତୁ ସେଠି କ'ଣ କରୁଛୁ ? ଆସ୍ ଶୋଇପଡ଼ । ସେ ଦୁହେଁ କାମଟି କରିନେବେ ।'' ମୁଁ ଭାବିଲି, କହୁଛନ୍ତି ଶୋଇବା ଲାଗି ଯେ, କେଉଁଠି ଶୋଇବି କହିଲେ ସିନା ! କହିଲେ, ''କ'ଣ ହେଲା ବେବି ? କ'ଣ ଚିନ୍ତା କରୁଛୁ ? ଏବେ ଶୋଇଯା, ରାତି ବହୁତ ହେଲାଣି ।'' ମୁଁ କହିଲି, ''ଉମା କେଉଁଠି ଶୁଏ ?'' ପାଖରେ ଥିବା ଏକ ରୁମ୍‌ରେ ପଡିଥିବା ସଫା ସୁତୁରା ଖଟକୁ ଦେଖାଇ ଯମୁନା ଭାଉଜ କହିଲେ, ''କାହିଁକି ? ତା' ବିଛଣା ତ ପଡିଛି । ତୁ ମୋ ପାଖରେ ଶୋଇଯା ।'' ମୁଁ ଭାବୁଥିଲି, ସେହି ସଫା ସୁତୁରା ବିଛଣା ସଂଜୟ ଦାଦାର ଭାଇପାଇଁ ହେଇଥିବ । ଘରେ କାମ କରୁଥିବା ଜଣକୁ କିଏ ଏମିତି ବିଛଣା ଦେବ ଯେ ! ଯମୁନା ଭାଉଜ ଉମାକୁ କହିଲେ, ''ଆରେ ଏ ଉମା । ଶୋଇଯା । ଆଉ କେତେ ଡେରି ଯାଏଁ କାମ କରିବୁ ? ତତେ କହୁ ନ ଥିଲି, ସକାଳୁ ବାକି କାମ କରିବୁ ବୋଲି । ତୁ ତ କଥା ଶୁଣୁନା । ଏବେ ଯା, ଶୋଇପଡ଼ । ଆଛା ଶୁଣ୍, ଶୋଇଲା ବେଳେ ମଶାରି ଲଗେଇ ଦେବୁ । ରାତିରେ ମଶା କାମୁଡ଼ିବେ ।'' ସଂଜୟଦା' ମତେ ପଚାରିଲା, ''ତୋ'ର ଶୋଇବାରେ କିଛି ଅସୁବିଧା ହେବ ନି ତ ?'' ମୁଁ କହିଲି, ''ନା । ଏବେ ତୁମେ ଯାଅ ଶୋଇପଡ଼ ।'' ସେ କହିଲା, ''ଶୋଇବି ଯେ । ହେଲେ ମୋର କିଛି କାମ ଅଛି । ଗୋଟେ-ଦୁଇଟା ଚିଠି ଲେଖିବାର ଅଛି ।'' ତା'ର ଯିବା ପରେ ଯମୁନା ଭାଉଜ ପୁଣି ଆପୁ ଶୁଣିବ ବୋଲି ବଡ଼ ପାଟିରେ ଗପ ପଢ଼ିବାକୁ ଲାଗିଲେ ।

ସକାଳେ ମୋର ଉପନ୍ୟାସର ବଙ୍ଗଳା ପାଣ୍ଡୁଲିପି ଜଲଦି ଜଲଦି ଚେକ୍ କରି ସଂଜୟ ଦା' ତାକୁ ଭାଇକୁ ଦେଲା । ଫଟୋ କପି ହେବ । ଭାଇ ଯିବାକୁ ବାହାରିଲା ଯେମିତି ସଂଜୟ ଦା' କହିଲା, ''ବେବି, ତୁ ବହିରେ ଅର୍ଜୁନ କଥା ଲେଖିଛୁ ନା- କମ୍ କଥା କହେ ବୋଲି ? ସବୁ କଥାର ଉତ୍ତର ହଁ ନାହିଁରେ ଦିଏ ବୋଲି ? ମୋର ଭାଇ ବି ସେମିତି କରେ । କଥା କହିବାକୁ ସେ ଚାହେଁନା ।'' ଭାଇ ଫଟୋକପି ନେଇ ଫେରିଲା ପରେ ସଂଜୟ ଦା' କହିଲା, ''ବେବି, ସମୟ ହେଲାଣି । ତୁ ରେଡି ହେଇ ଯା ।'' ଏତିକି କହି ସେ ନିଜେ ପ୍ରସ୍ତୁତ ହେବାକୁ ଲାଗିଲା । କିଛି ସମୟ ଉତ୍ତାରୁ ଆମେ ସମସ୍ତେ ଜଳଖିଆ ଖାଇବାକୁ ବସିଲୁ । କିଚେନ୍‌ରେ ଭାଉଜ ଉମାକୁ କହୁଥାଏ, ''ଉମା, କାଲିର ତରକାରି ଖାଇବୁନି । ଦେହ ଖରାପ ହୋଇପାରେ ।'' ମୁଁ ତା' କଥା ଶୁଣି ଆଶ୍ଚର୍ଯ୍ୟ ଚକିତ ହୋଇ ପଡ଼ିଲି । ଘରେ କାମ କରୁଥିବା ଝିଅପାଇଁ ଏତେ ଚିନ୍ତା ? ପ୍ରାୟତଃ କାମବାଲୀ ଝିଅକୁ ଲୋକ ଏମିତି ଖାଦ୍ୟ ଦିଅନ୍ତି, ଜାଣି ସେ ମଣିଷ ନୁହେଁ । ଦିନକର କ'ଣ

ଦୁଇ ତିନି ଦିନର ପଚାସଢ଼ା ତାକୁ ସବୁ ଖାଇବାକୁ ପଡ଼େ । ପୁଣି ଏମିତି ଘର ବି ଅଛନ୍ତି, ଯେଉଁଠି ତା'ର ଦେହ ଖରାପ ହେବାର ଆଶଙ୍କା କରି ବାସି ଖାଇବାକୁ ବାରଣ କରାଯାଉଛି !

ଘରୁ ବାହାରିଲା ବେଳେ ଯମୁନା ଦିଦି ମତେ ଏକ ପ୍ୟାକେଟ୍ ଦେଇ କହିଲେ, ''ଏଇଟା ତୁମ ପାଇଁ ।'' ଖୁସିରେ ମୁଁ ତାଙ୍କ ଦିଆ ଉପହାରକୁ ରଖିନେଲି । ଯମୁନା ଭାଉଜ କହିଲେ, ''ବେବି ଆଉ ଦିନଟିଏ ରହିଥିଲେ ଭଲ ହୋଇଥାନ୍ତା ।'' ସଂଜୟକୁ ଶୁଣାଇ କହିଲେ, ''ଏଠି ତ ତାକୁ କିଛି ବୁଲେଇ ହେଲା ନାହିଁ ?'' ମୁଁ କହିଲି, ''ମୋର ବି ଇଚ୍ଛା ଥିଲା ଆଉ ଦିନେ ରହନ୍ତି । ହେଲେ କାଲି ଦୁର୍ଗାପୁରରୁ ମତେ ଦିଲ୍ଲୀ ଯିବାକୁ ହେବ । ପରେ କେବେ ଆସିବାକୁ ସୁଯୋଗ ମିଳେ ଯଦି ଦେଖିବା ।'' ଯମୁନା ଭାଉଜ କହିଲେ, ''ଠିକ୍ ଅଛି । ଆର ଥରକୁ ଯେବେ ଆସିବ, ହାତରେ ଟିକେ ବେଶି ସମୟ ରଖିଥିବ । କାଲି ପିଲାଙ୍କୁ ନେଇ ଗାଡିରେ ଗଲାବେଳେ ସାବଧାନ ହେଇ ଯିବ ।'' ସଂଜୟ ଦା' ମୋର ଜିନିଷ ବାହାରକୁ ନେଇ ଆସିଲା । ମୁଁ ଆପୁ କଥା ପଚାରିଲାରୁ ଯମୁନା ଭାଉଜ କହିଲେ, ''ସେ ରିକ୍ସା ଆଣିବାକୁ ଯାଇଛି ।'' ମୁଁ କହିଲି, ''ତାକୁ କାହିଁକି ପଠେଇଲ ?'' ଏହାର ଉତ୍ତରରେ ଯମୁନା ଭାଉଜ କହିଲେ, ''ଏହି ପାଖରେ ତ ?'' ଏହି ସମୟରେ ସାଇକଲ ନେଇ ବୀରେନ୍ ପହଞ୍ଚିଲା । ସଂଜୟ ଦା' ମୋର ଓଜନିଆ ବେଗଟିକୁ ତା' ସାଇକେଲରେ ଲଦି ଦେଲା । ଯମୁନା ଭାଉଜଠାରୁ ବିଦାୟ ନେଇ ମୁଁ ଚାଲି ଚାଲି ବାହାରକୁ ଆସିଲି । ଆମକୁ ଦେଖି ଆପୁ ରିକ୍ସାରୁ ଓହ୍ଲାଇ ଗଲା । ମୁଁ ତାକୁ ଚୁମା ଦେଲି । ଟାଟା- ବାଏ ବାଏ କରି ଘରକୁ ପଠାଇ ଦେଲି । ବୀରେନ୍ ସାଇକେଲରେ ଏବଂ ସଂଜୟଦା' ମୋ ସହିତ ରିକ୍ସାରେ ବସି ମୋ ସହ ଷ୍ଟେସନ ଯାଏ ଆସିଲେ । ମୁଁ ଯେଉଁ ପଡ଼ାରେ ରହୁଥିଲି ଦୁର୍ଗାପୁରରେ, ସେଠି ଏଭଳି ଜଣେ ସ୍ତ୍ରୀ ଲୋକ ସହ ଦୁଇ ଜଣ ପୁରୁଷ ଲୋକ ଥାନ୍ତେ ଯଦି, କେତେ ହୋ ହଲ୍ଲା ହୁଅନ୍ତାଣି । ଏମିତି ଗାଳି କରନ୍ତେ, କହିବା କଥା ନୁହେଁ ! ଏଥିରୁ ବୁଝାପଡ଼େ, କାହାକୁ ସାନ ଆଉ କାହାକୁ ବଡ଼ କାହିଁକି କୁହାଯାଏ ।

ଷ୍ଟେସନରେ ଜଣାପଡିଲା ଯେ, ଦୁର୍ଗାପୁର ଗାଡ଼ି ଲେଟ୍ ଅଛି । ଘରେ ପହଞ୍ଚୁ ପହଞ୍ଚୁ ରାତି ହେଇଯିବ । ତେଣୁ ନିଷ୍ପତ୍ତି ହେଲା, ମୁଁ ବର୍ଦ୍ଧମାନ ଯାଇ ସେଠୁ ଦୁର୍ଗାପୁର ଗାଡ଼ି ଚଢ଼ିବି । ବର୍ଦ୍ଧମାନରେ ମତେ ଗାଡିରେ ବସାଇ ସଂଜୟ ଦା' କହିଲା, ''ଓହ୍ଲାଇ ସାରି କୁଲି କରିନେବୁ । ନୋହିଲେ ଅସୁବିଧା ହେବ ।'' ପୁଣି କହିଲା, ''ଦୁର୍ଗାପୁରରେ ପହଞ୍ଚି ଫୋନ୍ କରିବୁ ।'' ଗାଡ଼ିରେ ମୋ ଆଗରେ ଶାଶୂ-ବୋହୂ ଭଳି ଦିଶୁଥିବା ଦୁଇଜଣ ସ୍ତ୍ରୀ ଲୋକ ବସିଥିଲେ । ଦୁହେଁ ଦେଖିବାକୁ ଆଲକାତରା ଭଳି କଳା । ଶାଢ଼ି ତଳେ ବ୍ଲାଉଜ ପିନ୍ଧି ନାହାନ୍ତି । ଶାଢ଼ିର ରଂଗରୁ ଲାଗିଲା, ଲାଲ ମାଟିର ରାସ୍ତାରେ ଚାଲନ୍ତି ସେମାନେ । ବୋହୂର ପଚିଶ-ଛବିଶ ବର୍ଷ ହେବ ବୟସ । କୋଳରେ ଛଅ ସାତ ମାସର ଛୁଆଟିଏ । ବୋହୂଟି ଦେଖିବାକୁ ସୁନ୍ଦର । ହାତରେ ତାର ଚୁଡ଼ି ଭର୍ତ୍ତି । ପାଦରେ ଚପଲ ଆଉ ତା ଉପରକୁ ପାଉଁଜି । ମୁଣ୍ଡରେ ମେଞ୍ଚାଏ ସିନ୍ଦୂର ପିନ୍ଧିଛି । କପାଳରେ ବଡ଼ ସିନ୍ଦୂର ଟୀକା । ଶାଶୂ ଭଳି ଦିଶୁଥିବା ସ୍ତ୍ରୀ ଲୋକଟି ମତେ ପଚାରିଲା, ମୁଁ ରହେଁ କେଉଁଠି ? ଯୁବକଟି (ସଂଜୟ ଦା') ମୋର କ'ଣ ହେବେ ? ମୁଁ କହିଲି, ''ମୋର, ଦାଦା ସେ । ମୁଁ ଦିଲ୍ଲୀରେ ରହେ ।'' ସେ ଅବାକ ହୋଇ କହିଲା, ''ମୋ ବୋପାଲୋ ! ଏତେ ଦୂରରେ !''

## ॥ ୪ ॥

ସଂଜୟ ଦା' କାଂଚରାପଡ଼ା ଷ୍ଟେସନରେ ମୋପାଇଁ ବଂଗଳା ସମ୍ବାଦପତ୍ରଟିଏ କିଣି ଦେଇଥିଲେ । ସେତେବେଳେ ତାକୁ ପଢ଼ିବାଲାଗି ଇଚ୍ଛା ହେଲାନି । ଦେଖୁଁ ଦେଖୁଁ ତାହା ଫରଦ ଫରଦ ହୋଇ କେତେ ହାତକୁ ଚାଲିଗଲା । ବାଟରେ ମୋର ପାଖ ସିଟ୍‌ଟି ଖାଲି ହେବାରୁ ସେଠି ଜଣେ ପ୍ରାୟ ଚାଳିଶ ବର୍ଷ ବୟସର କଳା, ମୋଟା ଲୋକ ଆସି ବସିଲା । କିଛି ସମୟ ଚୁପ୍ ଚାପ୍ ବସିବା ପରେ ସେ ମୋ ସହିତ ଅଭୁତ ବ୍ୟବହାର କରିବାକୁ ଚେଷ୍ଟା କଲା । ରାଗ, ଭୟ ଆଉ ଲାଜରେ ମୋର ଝାଳ ବାହାରିବାକୁ ଲାଗିଲା । ତା' ଆଡେ ମୁଁ ରାଗରେ ଅନାଇଲି । ସେ ଉଠି ଗଲା । ତା' ସିଟ୍‌ରେ ଜଣେ ଝିଅ ଆସି ବସିଲା । ମତେ ଆଶ୍ୱସ୍ତ ଲାଗିଲା । ପରବର୍ତ୍ତୀ ଷ୍ଟେସନରେ ଗାଉଁଲି ଶାଶୂ-ବୋହୂ ଯୋଡ଼ିକ ଓହ୍ଲାଇ ଗଲେ । ସେହି ବଦମାସ ଲୋକଟି ବି । ଅନାୟାସ ମୋର ନଜର ଓହ୍ଲାଉଥିବା ସେହି ଲୋକଟି ଉପରେ ପଡିବାରୁ ଦେଖିଲି ସେ ମୁରୁକି ମୁରୁକି ହସୁଛି । ମୁଁ ମୁହଁ ମୋଡ଼ି ଦେଲି ଏବଂ ପାଖରେ ବସିଥିବା ଝିଅଟି ସହ କଥାବାର୍ତ୍ତା କଲି । ସେ ବି ଦୁର୍ଗାପୁରରେ ଓହ୍ଲାଇବ । ତାକୁ ପଚାରିଲି, ଆଗ ଷ୍ଟେସନଟି ଦୁର୍ଗାପୁର ତ ? ସେ ହଁ କଲା । ଜିନିଷପତ୍ର ନେଇ ଗେଟ୍‌ରେ ପହଞ୍ଚିଲି । ଟ୍ରେନ୍ ଅଟକିଲାରୁ ଜିନିଷ ଓହ୍ଲାଇବାରେ ମୋର ଅସୁବିଧା ଦେଖି ଜଣେ ସହଯାତ୍ରୀ ମତେ ସାହାଯ୍ୟ କଲେ । କୁଲି ଜିନିଷତକ ବସଷ୍ଟାଣ୍ଡରେ ପହଞ୍ଚାଇ ଦେଲା । ସେଠୁ ରିକ୍ସା ନେଇ ମୁଁ ବଜାର ଯାଏ ଗଲି । ବଜାରରେ ରିକ୍ସା ଅଟକାଇ ସ୍କୁଲ ବେଗ୍‌ର ଏକ ଦୋକାନରେ ମୁଁ ବେଗ୍‌ର ଦାମ ପଚାରିଲି । ଦୋକାନୀ ରିକ୍ସାକୁ ଦେଖି ପଚାରିଲା, "ଦିଦି, ମନେ ହେଉଛି ଆପଣ ବହୁତ ଦୂରରୁ ଆସିଛନ୍ତି ?" ମୁଁ କଲିକତା ବୋଲି ଜବାବ ଦେବାରୁ ସେ ପୁଣି ପଚାରିଲା, "ଆପଣ କ'ଣ ସେଠି ରହନ୍ତି ?" ମୁଁ କହିଲି, "ନା, ମୁଁ ଦିଲ୍ଲୀରେ ରହେଁ ।" ଟିକେ ପରେ ସେ ପୁଣି ପଚାରିଲା, "ଆପଣ ସେଠି କ'ଣ ଚାକିରି ବାକିରି କିଛି କରନ୍ତି ?" ମୁଁ ହୁଁ ହାଁ କରି ଜବାବ ଦେବାରୁ ସେ ଆଉ କଥାକୁ ଆଗକୁ ବଢ଼ାଇଲାନି । ମୁଁ ତା'ଠାରୁ ମୋର ପିଲାଙ୍କ ଲାଗି ଦୁଇଟି ଓ ନିରୁଦା'ର ପୁଅ ଲାଗି ଗୋଟାଏ ସ୍କୁଲ ବେଗ କିଣିଲି ।

ରିକ୍ସା ଆଗକୁ ବଢ଼ିଲା । ଦେଖିଲି ନିରୁଦା' ଆସୁଛି । ମତେ ଦେଖି ସେ ସାଇକଲ ଛିଡ଼ା କଲା । ପଚାରିଲା, "ତୋର ତ ଗତକାଲି ଆସିବାର ଥିଲା ?" ସାମାନ୍ୟ ହସି ହସି ମୁଁ କହିଲି, "ମୋର ସେଠୁ ଆସିବାକୁ ଇଚ୍ଛା ନ ଥିଲା । ଆସନ୍ତା କାଲି ଟ୍ରେନ୍ ଧରିବାକୁ ହେବ । ସେଥିପାଇଁ ଆସିବାକୁ ପଡ଼ିଲା । ନିରୁଦା' ସାଇକଲ ମୋଡ଼ି ରିକ୍ସା ସହିତ ତାଳ ଦେଇ ଚାଲିଲା । କହିଲା, "ମୁଁ ତ ଗତକାଲିଠାରୁ ଥରକୁ ଥର ଷ୍ଟେସନ ଆସୁଛି । ଏହି କିଛି ବେଳ ଆଗରୁ ଥରେ ଆସିଥିଲି ।" ପୁଣି କହିଲା, "ଆଚ୍ଛା, ସେଠି ତୋର ସବୁ ଠିକ୍‌ଠାକ୍ କଟିଲା ତ ?" ମୁଁ କହିଲି, "ତାହା କି ଆଉ ପଚାରିବାର ଅଛି । ମୁଁ ତ ଭାବି ପାରୁନି ଯେ ମତେ ଏତେ ମାନ ସମ୍ମାନ ପୁଣି ମିଳିପାରେ । ସେଥିପାଇଁ ପରା କାଲି ଆସି ହେଲାନି ।" ପଚାରିଲି, "ମୋର ଛୁଆମାନେ ଭଲରେ ଅଛନ୍ତି ତ ? ବେଶି ହଇରାଣ ହରକତ କରି ନାହାନ୍ତି ତ ?" ସେ କହିଲା, "ନା ନା, ବିଲ୍‌କୁଲ ଠିକ୍‌ଠାକ୍ ଅଛନ୍ତି । ଖାଇ ପିଇ ବଢ଼ିଆ ଖେଳ କୁଦରେ ମାତିଛନ୍ତି । ଥରେ ବି ତତେ ମନେ ପକାଇ ନାହାନ୍ତି ! ତୋର ଛୁଆ କ'ଣ ମୋର ଛୁଆ ନୁହନ୍ତି ? ଛୁଆମାନେ ଛୁଆଙ୍କ ଭିତରେ ହିଁ ଖୁସୀ ରହନ୍ତି ।"

ମୁଁ ଭାବିଲି, ପିଲାଙ୍କଠାରୁ ଅଲଗା ମୁଁ କେବେ ରହିନି । ତୁମମାନଙ୍କ ଭରସାରେ ଛାଡ଼ି ଯାଇଥିଲି । ମୋର ବାପା-ମାଙ୍କ ଉପରେ କ'ଣ ଭରସା କରିହେବ ? ସେମାନଙ୍କର ତ ନିଜ ଖାଇବା ପିଇବାର ଠିକ୍ ଠିକଣା ନଥାଏ । ପିଲାଙ୍କ ଲାଗି ଚିନ୍ତା କରିବେ କେତେବେଳେ ? ପିଇବା ଆରମ୍ଭ ହେଲେ ସବୁ ଭୁଲି ଯିବେ । ପୁଣି ନିଜ ନିଜ ଭିତରେ ଝଗଡ଼ା କଲେ ଯଦି, ସେଦିନ ଖିଆ ପିଆ ବନ୍ଦ । ଏହାର ଅର୍ଥ ନୁହେଁ ଯେ ପିଲାଙ୍କ ପ୍ରତି ତାଙ୍କର ସ୍ନେହ ନାହିଁ । ମାତ୍ର ପିଇଲା ବେଳେ ନିଜ ଛଡ଼ା ଆଉ କାହାକୁ ସେମାନେ ଦେଖି ପାରନ୍ତି ନାହିଁ ।

ଘରେ ନ ପହଞ୍ଚୁଣୁ ମୋର ଝିଅ ହସି ହସି ମୋ ପାଖକୁ ଦୌଡ଼ି ଆସିଲା । ମୋତେ ଜାବୁଡ଼ି ଧରି କହିଲା, "ମା, ମା, ଆଜି ଆମେ ନଦୀକୁ ଗାଧୋଇବାକୁ ଯାଇଥିଲୁ ।" ଏତିକି କହି ସେ ପୁଣି ତା' ଖେଳ ଜାଗାକୁ ଦୌଡ଼ି ଚାଲିଗଲା । ନିରୁଦା'ର ସାନ ଝିଅ ସହିତ ସେମାନେ ରୋଷେଇ ରୋଷେଇ ଖେଳ ଖେଳୁଥିଲେ । ରିକ୍ସାବାଲାକୁ ପଇସା ଦେଲି । ଜିନିଷପତ୍ର ଓହ୍ଲାଇଲି । ତା' ପରେ ନିରୁଦା'ର ବାରଣ୍ଡାରେ ପଡିଥିବା ମସିଣାରେ ଯାଇ ବସିଲି । ପୁଅ କେଉଁଠି ଜାଣିବାପାଇଁ ଏପଟ ସେପଟ ଅନାଇଲି । ପୁଅ ବରକୋଳି ଗଛ ତଳେ ବନ୍ଧା ହୋଇଥିବା ବାଛୁରୀର ପଘା ଧରି ବସିଥାଏ । ମୁଁ ହସି ହସି କହିଲି, "ଭାଉଜ, ମୋର ପୁଅ ସେଠି ବସି କ'ଣ କରୁଛି ?" ଭାଉଜ କହିଲା, "ସେ ତ ଦୁଇ ଦିନ ହେଲା ବାଛୁରୀ ପାଖରେ ବସିଛି । ପଘା ଧରି ବାଛୁରୀର ଘାସ ଖାଇବା ଦେଖୁଛି । ସକାଳୁ କାହାକୁ କିଛି ନ କହି ବାଛୁରୀକୁ ଘରୁ ନେଇଯାଉଛି । ବାଛୁରୀର ଖାଇବା ମୁଁ ନେଇ ଆସିଲି ଯେ କହୁଛି, ମାଇଁ ମତେ ଦିଅ । ମୁଁ ତାକୁ ଖୋଇବି । ମଝିରେ ମଝିରେ ତାକୁ ପାଣି ଦେଉଛି । ସନ୍ଧ୍ୟାରେ ପୁଣି ବାଛୁରୀକୁ ଘରକୁ ନେଇ ଆସୁଛି । ଆଚ୍ଛା, କହିଲୁ ଦେଖି । କାଲି ସକାଳେ ସେ ଯେତେବେଳେ ଚାଲିଯିବ, ବାଛୁରୀକୁ କ'ଣ ଖରାପ ଲାଗିବନି ? ସେ କ'ଣ କାନ୍ଦିବନି ? ତୋ ପୁଅକୁ ହେଲେ ଭଲ ଲାଗିବ ?" ପଚାରିଲି, "ମୋ ପୁଅ, ମା' କୁଆଡ଼େ ? କେବେ ଆସିବ ? କିଛି ପଚାରୁନି ?" ନିରୁଦା'ର ବଡ଼ ଝିଅ ପାଖରେ ବସିଥିଲା । କହିଲା, "ନା, ତା' ମନ ଟିକେ

ଦୁଃଖିତ ଥିଲା । ଥରେ ମତେ ପଚାରିଲା, ମା' କେବେ ଆସିବ ? ମୁଁ କହିଲି ଆସିଯିବ ଏବେ । ହେଲେ ତା' ଭଉଣୀର ଆଦୌ ମନ ଦୁଃଖ ହୋଇନି । ସେ ଥରୁଟିଏ ବି ତୁମ କଥା ପଚାରିନି । ଖୁସିରେ ଖେଳୁଛି ।''

ପଡ଼ାର କିଛି ଲୋକ ନିରୁଦା'ର ଅଗଣାରେ ବସି ଗପ କରୁଥିଲେ । ମା' ସେଠି ଚୁପ୍‌ଚାପ ବସିଥାଏ । ତାକୁ ଦେଖିଲେ ଲାଗୁଥିଲା, ସେ ପିଇଛି । ଏପଟ ସେପଟ ଦେଖି ମୁଁ ନିରୁଦା'ର ସ୍ତ୍ରୀକୁ ପଚାରିଲି, ''ଭାଉଜ, ବାପା କୁଆଡ଼େ ?'' ନିରୁଦା'ର ବଡ଼ ଝିଅ କହିଲା, ''ଅଜା ଭିତରେ ଶୋଇଛନ୍ତି ।'' ମତେ ଦେଖି ସେମାନେ ଚୁପ୍ ହୋଇଗଲେ । ପଚାରିଲି, ''କ'ଣ ଏମିତି ସମସ୍ତେ ହଠାତ୍ ଚୁପ୍ ହୋଇପଡିଲ ଯେ ?'' ଜଣେ ସ୍ତ୍ରୀ କହିଲା, ''ତୁମ କଥା ହିଁ ପଡ଼ିଥିଲା ।'' ସେ ବୋଧେ ଆଗକୁ କିଛି କହିଥାନ୍ତା । ହେଲେ ନିରୁଦା'ର ସ୍ତ୍ରୀ ତାକୁ ଚୁପ ରହିବାକୁ ଇସାରା କରି ମତେ କହିଲା, ''ଆରେ କିଛି ନୁହଁ ମ ! ତୁ ହାତମୁହଁ ଧୋଇ ଆସ । ମୁଁ ଭାତ ବାଢୁଛି ।'' ମୁଁ କହିଲି, ''ଦେଖେଁ ବାପା ଶୋଇଛନ୍ତି ନା ଚେଇଁଛନ୍ତି ।'' ନିରୁଦା'ର ସ୍ତ୍ରୀ ମୋ ପଛରେ ଥାଏ, ''ତାକୁ କିଛି କୁହନା । ବିଚାରୀ କାଲି ଚାଲିଯିବ । ତାକୁ ଏସବୁ ଶୁଣିଲେ କ'ଣ ଭଲ ଲାଗିବ ?'' ଭାଉଜର କଥାକୁ ଅଣଶୁଣା କରି ମୁଁ ଭିତରକୁ ଗଲି ।

ଘରେ ପାଦ ରଖିବାକୁ ଜାଗା ନାହିଁ । ପଡାର ହୁଦାଏ ଛୁଆ ଚଟାଣରେ ବସି ଟିଭି ଦେଖୁଛନ୍ତି । ବାପା ଖଟରେ ଶୋଇଛନ୍ତି । ଖଟର ଗୋଟାଏ ପାଖରେ ସେହି ଯୁବ ହୋମିଓପାଥି ଡାକ୍ତର ବସିଥାଏ । ଚଟାଣରେ ତାକୁ ଲାଗି ଷୋହଳ-ସତର ବର୍ଷର ଝିଅଟିଏ ବସିଛି । ଦୁହେଁ ଭାରି ଖୁସ ଜଣାପଡୁଥାନ୍ତି । ମତେ ଦେଖି ଡାକ୍ତର 'ପିଉସୀ ଆସିଗଲ' କହି ଛିଡ଼ା ହୋଇପଡିଲା । ମୁଁ କହିଲି, ''ହେଲା ହେଲା ।''

ମୋ ବାପା ଶୋଇଛନ୍ତି, ନା ଚେଇଁଛନ୍ତି ?'' ବାପା ଚମକି ଯାଇ ବସି ପଡିଲେ । କହିଲେ, ''ତୋର ତ ଗତକାଲି ଆସିବାର ଥିଲା । ଏପଟେ ଚିନ୍ତାରେ ମୋର ପ୍ରାଣ ବାହାରି ଯାଉଥାଏ । ତୁ ଫୋନଟିଏ କରି ପାରିଲୁନି ?'' ମୁଁ ନିରୁତ୍ତର ରହିବାରୁ ପୁଣି କହିଲେ, ''ତୁ କିଛି ଖିଆ-ପିଆ କଲୁ ନା ନାହିଁ । ଆଗ ଖାଇ ପକା ।'' ଏତିକି କହି ସେ ଦୀର୍ଘ ନିଃଶ୍ୱାସ ନେଲେ ଓ ପୁଣି ଖଟରେ ଶୋଇଗଲେ । ଡାକ୍ତର କହିଲା, ''ଜେଜେଙ୍କ ମୁଣ୍ଡରେ ଭୂତ ପଶିଛି, ଏବେ ତ ଜେଜେମା' ସାଙ୍ଗରେ ପାଟି ତୁଣ୍ଡ କରୁଥିଲେ । ମୁଁ ପଚାରିଲି, ''ପାଟିତୁଣ୍ଡ ? କୋଉ କଥାକୁ ନେଇ ?'' ସେ କହିଲା, ''ଛାଡ଼ । ତୁମେ ତ ଏମାନଙ୍କ କଥା ଜାଣ । ଏବେ ଥଣ୍ଡା ଅଛି । ଶୁଣିବେ ତ ପୁଣି ଗରମ ହେଇଯିବେ ।'' ମୁଁ ଚିନ୍ତା କଲି, କେଉଁ କଥାକୁ ନେଇ ତାଙ୍କ ଭିତରେ ପାଟିତୁଣ୍ଡ ହେଇଥିବ ! ସେ ସ୍ତ୍ରୀ ଲୋକଟି ବି କହିଥିଲା, ମତେ ନେଇ କଥାବାର୍ତ୍ତା ଚାଲିଥିଲା । ନିରୁଦା'ର ସ୍ତ୍ରୀ କହିଲା, ତାକୁ ଶୁଣାଇ କିଛି ଲାଭ ନାହିଁ, କାରଣ ସେ ତ କାଲି ଚାଲିଯିବ । ଛିଡ଼ା ହେଇ ମୁଁ ଭାବୁଥାଏ; ଡାକ୍ତର କହିଲା, ''ଏ ପିଇସୀ । ଏତେ କ'ଣ ଭାବୁଛ ?'' ଚମକି ପଡ଼ି ମୁଁ କହିଲି, ''ନା ତ, କିଛି ନୁହେଁ ।'' ପୁଣି ଲାଜେଇ ଲାଜେଇ ସେ କହିଲା, ''ପିଇସୀ, ଗୋଟାଏ କାମ କରିଦେବ ?'' ମୁଁ କ'ଣ ବୋଲି ପଚାରିବାରୁ ସେ ଜଣକୁ ଦେଖାଇ କହିଲା, ''ବାହାରେ ସମସ୍ତଙ୍କ ମଝିରେ ସେ ଯେଉଁ ଲୁଙ୍ଗି ପିନ୍ଧି ଲୋକଟିଏ ନାହିଁ ?'' ମୁଁ କହିଲି, ''ହଁ କ'ଣ ହେଲା, ସେଇଠୁ ?'' ପାଖରେ ବସିଥିବା ହସକୁରୀ ଝିଅକୁ ଦେଖାଇ ସେ କହିଲା,

''ଯା କାକା ସେ । ଏହି ରୁମରେ ଏ ଝିଅ ଆଉ ମୁଁ ଅଛୁଁ- ଏକଥା ସେମାନେ ସମସ୍ତେ ଜାଣନ୍ତି । ଏବେ ଯା'କୁ ଘରକୁ ଯିବାକୁ ହେବ । ହେଲେ କାକାଙ୍କ ସାମନାରେ ଯିବାକୁ ସେ ଲାଜ କରୁଛି ।'' ଏତିକି କହି ଡାକ୍ତର ଲାଜେଇ ଗଲା । ମୁଁ ବି କହିଲି, ଲାଜ ମାଡୁଛି ? କାହିଁକି ? ନିଶ୍ଚୟ ତାଲ ମେଁ କୁଛ କାଲା ହୈ । ତାକୁ ପଚାରିଲି, ''ତାହେଲେ ମତେ କ'ଣ କରିବାକୁ ହେବ ?'' ଡାକ୍ତର ଆହୁରି ଆଦେଶ ଦେଇ କହିଲା, ''ତୁମେ ଦରଜା ପାଖରେ ଛିଡ଼ା ହୋଇ ତା' କାକାକୁ ଆଢୁଆଳ କରିଦିଅ । ସେ ପଛବାଟ ଦେଇ ଚାଲିଯିବ । ମୁଁ ବାପାଙ୍କ ଆଡ଼େ ଅନାଇଲି । ସେ ଘୁଂଗୁଡ଼ି ମାରୁଥାନ୍ତି । ତା' ସତ୍ତ୍ୱେ ମୁଁ ଡାକ୍ତର ସହିତ ଅତି ଧୀର ପାଟିରେ କଥା କହୁଥାଏଁ । ମତେ ସେ ଦ୍ୱିତୀୟ ଥରଲାଗି ସାହାଯ୍ୟ କରିବାକୁ ଅନୁରୋଧ କରିବାରୁ କହିଲି, ''ଶୁଣ, ଏଭଳି ସାହାଯ୍ୟ ତ ମୁଁ ଅନେକ କରିଛି । ଆଗ ଯେଉଁ ପଡାରେ ଆମେ ରହୁଥିଲୁ, ସେଠି ତାପସୀର ମା', ବିଭୁଦା ଆଉ ନିଶାର ମାମଲାରେ ମୁଁ ସେମାନଙ୍କୁ ସାହାଯ୍ୟ କରିଛି । ଆଉ ଜାଗା ନ ପାଇଲେ ସେମାନଙ୍କୁ ମୋ ନିଜ ଘର କିଛି ବେଳ ଲାଗି ଛାଡ଼ି ଦିଏଁ । ପଛରେ ପଡ଼ା ଲୋକ ମତେ କେତେ କ'ଣ ନ କହନ୍ତି । ହେଲେ ତହିଁରେ କ'ଣ ? ସେମାନଙ୍କ ଖୁସି ଦେଖି ମତେ ଖୁସି ଲାଗେ । ଏବେ ତ ସେମାନେ ଭଲରେ ଅଛନ୍ତି । ବେଲା ସେହି ଟୋକାକୁ ବାହା ହେଲା । ଏବେ ସେମାନେ ଖୁସିରେ ଅଛନ୍ତି । ସେମାନଙ୍କ ପାଇଁ ପ୍ରେମପତ୍ର ବି ମୁଁ ଲେଖିଦିଏଁ । ସେତେବେଳେ ଲେଖା-ଲେଖି କିଛି ମତେ ଜଣାନଥିଲା । ହେଲେ ମୋ ଉପରେ ସେମାନଙ୍କର ଅଗାଧ ବିଶ୍ୱାସ । ଚିଠି ଲେଖିଦେବାପାଇଁ ସେମାନେ ମତେ ଗୁହାରି ହୁଅନ୍ତି । ବଡ଼ ବଡ଼ ଅକ୍ଷରରେ ଯାତୁ ସ୍ୟାତୁ କହି ମୁଁ ଚିଠି ଲେଖିଦିଏ । ସେହି ଚିଠିକୁ ନେଇ ସେମାନେ ନିଜ ନିଜ କଳ୍ପନା ରାଜ୍ୟରେ ଉଡିବୁଲନ୍ତି । ସେହି ଅନୁପାତରେ ଦେଖିଲେ ଏ କାମ ତ ପୂରା ମାମୁଲି । ଚାଲ, ମୁଁ ଦରଜାକୁ ଘେରି ଛିଡ଼ା ହୋଇଯାଏ ଆଉ ତୁମେମାନେ ପଛ ବାଟ ଦେଇ ଚାଲିଯାଅ । ଡାକ୍ତର ପଚାରିଲା, ''ଏବେ ସେମାନେ ସବୁ କେମିତି ଅଛନ୍ତି ? ତୁମେ ଭେଟ ସେମାନଙ୍କୁ ?'' ମୁଁ କହିଲି- ''ନା, ପୁଣି ଭେଟିବାକୁ ସମୟ କାହିଁ ? ଶୁଣିଛି, ସବୁ ଠିକ୍ ଅଛି, କେବଳ ବିଭୁଦା'ର ମୃତ୍ୟୁ ହେଇଯାଇଛି ।'' ମୁଁ ସେହି ଝିଅକୁ କହିଲି, ''ତୁମେ ଦୁହେଁ ଯାଅ ଏବେ ।'' ଛୁଆମାନେ ଟିଭି ଦେଖୁଥିଲେ । ସେମାନଙ୍କୁ କହିଲି, ''କ'ଣ, ତୁମମାନଙ୍କର ଅଲଗା କାମ କିଛି ନାହିଁ? ଯେତେବେଳେ ଦେଖ ଟିଭି ଆଉ ଟିଭି । ଯାଅ ବାହାରେ ଖେଳ । ଛୁଆମାନଙ୍କୁ ଗାଳି କରି ମୁଁ ଦରଜା ପାଖରେ ଯାଇ ଛିଡ଼ା ହେଲି । ସେହି ଝିଅ ଆଡକୁ ଅନାଇ ନିରୁଦା'ର ସ୍ତ୍ରୀକୁ ପଚାରିଲି, ''ଭାଉଜ, ବାପା କେତେବେଳୁ ଶୋଇଲେଣି ।'' ମୁଁ ଝିଅର କାକା ଆଡ଼କୁ ଅନାଇଲି, ଝିଅଟି ଏ ଭିତରେ ଚାଲି ଯାଇଥାଏ । ତା'ର କାକା ଯେମିତି ଦେଖି ସୁଦ୍ଧା ଅଣ ଦେଖା କରିଦେଲା । ମତେ ଡର ମାଡିଲା, ସେ ଜାଣିଯିବ ଯଦି, ଜଣାନାହିଁ କ'ଣ ସେ କହିବ । ମତେ ହୁଏତ କିଛି କହି ନ ପାରେ । ହେଲେ ବାପାଙ୍କୁ କହିବ । ''ଟିଭି ଦେଖିବାର ବାହାନାରେ ପଡ଼ାର ଯୁବକ-ଯୁବତୀଙ୍କୁ ତୁମେ ନଷ୍ଟ କରି ଦେଲଣି ।'' ବାପାଙ୍କ ପାଖରେ ଜବାବ ଦେବାପାଇଁ କିଛି ନ ଥିବ ।

ନିରୁଦା'ର ସ୍ତ୍ରୀ ଖାଇବା ବାଢ଼ି ଦେଇ ମୋର ଅପେକ୍ଷାରେ ଥାଏ । ମା' ପରି । ଖାଇବାପାଇଁ ବସିଲି, ମାଛ ଝୋଳ ଆଉ ଭାତ । ପଚାରିଲା, ''ସେଠି ଖାଇବା ପିଇବାର କିଛି ଅସୁବିଧା ତ

ହୋଇନି ?'' ମୁଁ କହିଲି ଅସୁବିଧା କ'ଣ ହେବ ? ସେଠି ତ ସମସ୍ତେ ମତେ ମୁଣ୍ଡ ଉପରେ ବସେଇଥାନ୍ତି, କେତେ ଦେଖାଶୁଣା କରୁଥାନ୍ତି ! ଗଲା ରାତି ଇଲିଶି ମାଛର ଝୋଳରେ ଭାତ ଖାଇଥିଲି । ଏଠୁ ଯାଇ କଲିକତାରେ ଯାହା ଘରେ ରହିଲି, ସେ ହେଲେ ସେହି ଜେଠୁ । ତାଙ୍କ କଥା ମୁଁ କହେନି ? ମୁଁ ଆସୁଛି ବୋଲି ଜାଣି ଜେଠୁଙ୍କ ପୁତୁରାବୋହୂ କେତେ ଫଳ କାଟି ପଠେଇ ଦେଲେ । ଜେଠୁ ମୋ ସାଙ୍ଗରେ ଭେଟିବାଲାଗି ଗୁଡାଏ ଲୋକଙ୍କୁ ଡାକିଥାନ୍ତି । ମୋର ଯେଉଁ ଆଦର ସମ୍ମାନ ହେଲା କହି ହେବ ନାହିଁ ! କେତେ ବଡ଼ ବଡ଼ ଲୋକଙ୍କ ସାଙ୍ଗରେ ବସି ମୁଁ ଭୋଜନ କଲି !'' ନିରୁଦା'ର ସ୍ତ୍ରୀ ମୋ କଥା ଶୁଣି ଅକାବକା ହେଇଗଲା । ପୁଣି କହିଲି, ''ଜଣେ ଜଣେ ଲୋକ ଅଲଗା କିସମର ଥା'ନ୍ତି । ନା' ଭାଉଜ ?'' ସେ ପଚାରିଲା, ''କେମିତି ?'' ମୁଁ କହିଲି, ''କଲିକତାରେ ଜେଠୁଙ୍କ ପାଖରେ କ'ଣ ନାହିଁ ? ତା' ପରେ ତାଙ୍କ ରହଣି ସହଣି ପୂରା ସାଧାରଣ । ସତୁରୀ ଫଚସ୍ତରୀ ହେବ ବୟସ, ବାହା ହେଇ ନାହାନ୍ତି । ନିଜକୁ ଛାଡ଼ି ଅନ୍ୟ ସମସ୍ତଙ୍କର ଚିନ୍ତା ତାଙ୍କୁ ଘାରୁଛି ! ଏମିତି ଆହୁରି କେତେ ଜଣଙ୍କୁ ଜାଣେ ମୁଁ । ସେମାନେ ସର୍ବଦା ଅନ୍ୟକୁ ଭଲ କରି ଗଢ଼ିବା ପାଇଁ ଉଦ୍ୟମ କରୁଛନ୍ତି । ଆଚ୍ଛା ଭାବ ତ, ଆମେ ସବୁ ଭଗବାନ ଭଗବାନ କହି ବୁଲୁଥାନ୍ତି, ହେଲେ କହିପାରିବ ସେ ଭଗବାନଟି କେଉଁଠି ? ନିରୁଦା'ର ସ୍ତ୍ରୀ କହିଲା, ''ମତେ କ'ଣ ଜଣା ଭଗବାନ କେଉଁଠି । ଭଗବାନକୁ କ'ଣ ମନ୍ଦିର-ମସ୍‌ଜିଦ୍ ଗଲେ ପାଇ ପାରିବ ? ଖୋଜିଲେ ଲୋକଙ୍କ ଭିତରେ ଭଗବାନ ମିଳିଯିବେ । ସତ୍ୟବାନ ମଣିଷ ହିଁ ଭଗବାନ । ମୁଁ ଜାଣିନି, କେତେ ଲୋକ ଏହି କଥାକୁ ବୁଝିଥିବେ ?'' ମୁଁ କହିଲି, ''ଦେଖ, ମୋର ଜେଠୁ ଆଉ ତାଙ୍କ ବନ୍ଧୁମାନେ କେମିତି ରହନ୍ତି ! ମୋ ବାପା ସେମାନଙ୍କ ଭଳି ହେଇ ନାହାନ୍ତି କାହିଁକି ? ପଇସା କମ୍ ରୋଜଗାର କରି ନାହାନ୍ତି ! ଭଲ ଭଲ ଲୋକଙ୍କ ସଂପର୍କରେ ବି ଆସିଛନ୍ତି । ବାପାଙ୍କ ଭଳି ଲୋକ ବି ଅଛନ୍ତି । ହେଲେ ବାପା ତ ସେମାନଙ୍କଠାରୁ ଭିନ୍ନ ହୋଇ ପାରିଥାନ୍ତେ ! ଜାଣିଛ ଭାଉଜ, ଆମେ ତ ପିଲାଦିନୁ ଦେଖୁଛୁ, ବାପାଙ୍କ ବନ୍ଧୁବାନ୍ଧବ ବି ଏମିତି ନ ଥିଲେ । କେତେ ଭଲ ସେମାନେ ! ତା'ପରେ ବି ବାପା କାହିଁକି ଏମିତି ହେଇଗଲେ;'' ଖାଉଁ ଖାଉଁ ଟିକେ ଅଟକିଯାଇ ପଚାରିଲି, ''ବାପା କ'ଣ ଖାଇ ସାରିଲେଣି ?'' ଭାଉଜ କହିଲା, ''ଖାଇବେ କେତେବେଳେ ? ତାଙ୍କ ଝଗଡ଼ା ତ ସରୁନି । କାଲିଠାରୁ ପିଉଛନ୍ତି ଯେ ପିଉଛନ୍ତି । ଆଚ୍ଛା କହିଲ, ବାପା ପିଉଛନ୍ତି ଯଦି ପିଅନ୍ତୁ । ହେଲେ ମା' କାହିଁକି ପିଉଛି ? ସେ ପରା ସ୍ତ୍ରୀ ? ଘରର ସ୍ତ୍ରୀ ଲୋକ ସିନା ପୁରୁଷ ପିଲାଙ୍କୁ କଣ୍ଟ୍ରୋଲ କରନ୍ତି । ହେଲେ ଏଠି ତ ମା', ବାପାଙ୍କ ସହିତ ପ୍ରତିଯୋଗିତା କରି କାଲିଠାରୁ ପିଇ ଚାଲିଛି ।'' ମୁଁ କହିଲି, ''ଆଉ କିଛି କହନା ଭାଉଜ ! ଏ ସବୁ ଦେଖି ତତେ ଆଶ୍ଚର୍ଯ୍ୟ ଲାଗୁଥିବ । ହେଲେ ଆମପାଇଁ ଏ କିଛି ନୂଆ କଥା ନୁହେଁ । ମତେ ଏସବୁ କଥା ଆଜିକାଲି ନା ଆଉ ଦେଖିବାକୁ ଭଲ ଲାଗୁଛି, ନା ଶୁଣିବାକୁ ଇଚ୍ଛା ହେଉଛି । ବାପାଙ୍କ ମଦ ପିଇବା କଥା ତ ଆମକୁ ଆଗରୁ ଜଣା । କିନ୍ତୁ ମା' ଚାହିଁଥିଲେ, ମଦ ଛାଡ଼ି ପାରିଥାନ୍ତା । ସେ ଚାହିଁଲାନି । କାହିଁକି ବା ଚାହିଁବ ଯେ ? ନ ପିଇବ ଯଦି କ'ଣ କରିବ ସେ ? ମରନ୍ତୁ ସେମାନେ । ଭାଉଜ, ମତେ ଆଦୌ ଭଲ ଲାଗେନା ଏ ସବୁ ।'' ସେ ମୋ କଥା ଶୁଣି ହସି ପକାଇଲା । ମୁଁ ପୁଣି କହିଲି, ''ରାଗରେ, ଦୁଃଖରେ ଏମିତି ଅମଙ୍ଗଳ କଥା ପାଟିରୁ ବାହାରି ପଡ଼େ ।

ନୋହିଲେ କେଉଁ ଝିଅ ବା ବାପା-ମାଙ୍କୁ ମରିବାଲାଗି କହିବ ?'' ଏତିକି କହି ମୁଁ କାନ୍ଦି ପକାଇଲି । ନିରୁଦା'ର ସ୍ତ୍ରୀ କହିଲା, ''କାନ୍ଦନା । ଏସବୁ କଥା ଚିନ୍ତା କଲେ କ'ଣ କିଛି ହେବ ? ଖାଇପକା ।'' ମୁଁ କହିଲି, ''ଭାଉଜ, ମୁଁ ଆଉ ଏଠିକି କେବେ ଆସିବି ନାହିଁ । ସେଇଠି ମୁଁ ଠିକ୍ ଅଛି ।'' ସେ କହିଲା, ''ଆସିବୁନି କାହିଁକି ? ଆମେ କ'ଣ ନାହୁଁ ? ତୁ ଆମ ପାଖକୁ ଆସିବୁ ।'' ଆଖିରୁ ଲୁହ ପୋଛି ମୁଁ ଦରଖିଆ ହୋଇ ଉଠିଗଲି । ମା' ଏକାଏକା ଆସି ନିରୁଦାର ସ୍ତ୍ରୀକୁ ରାଗରେ କହିଲା, ''କ'ଣ ବୋହୂ ? ତୁ ନିଜ ଯାଏ କଥା ରଖି ପାରିଲୁନି ? ଘର ଭାଙ୍ଗିବା ହେଲା ତୋର ସ୍ୱଭାବ । ମୁଁ କହି ରଖୁଛି, ତୋ'ର କେବେ ମଙ୍ଗଳ ହେବ ନାହିଁ ?'' ଏତିକି କହି ସେ ଚାଲିଗଲା । ନିରୁଦା'ର ସ୍ତ୍ରୀ କହିଲା, ''ହେ ଭଗବାନ ! ମୁଁ ତ କିଛି କହିନି । ବେବି ପଚାରୁଛି, ବାପା-ମା' ଖାଇଲେଣି ନା ନାହିଁ ? ମୁଁ କ'ଣପାଇଁ ମିଛ କହିବି ? କାଲିଠାରୁ କେବଳ ତୁମର ପିଆ ଚାଲିଛି । ତୁମେ ତ ବାପାଙ୍କ ସାଙ୍ଗରେ ଖାଇବାପାଇଁ ବସି ପାରିଥାନ୍ତ ! ତୁମକୁ କ'ଣ ଜଣାନାହିଁ, ତୁମେ ଖାଇଲେ ବାପା ବି ଖାଇବେ । ତୁମେ ଖାଉନ ବୋଲି ସେ ଖାଉ ନାହାନ୍ତି ।'' ଅଗଣାରେ ବସିଥିବା ଜଣେ ସ୍ତ୍ରୀ ମା'କୁ ବ୍ୟଙ୍ଗ କରି କହିଲା, ଦାଦା-ଦାଦିଙ୍କର ପ୍ରେମ ଲୀଳା ଏ ଯାଏଁ ଚାଲିଛି ତା ହେଲେ ।'' ଆଉ ଜଣେ ସ୍ତ୍ରୀ କହିଲା, ''ଦୁହିଁଙ୍କର ଯେମିତି ପ୍ରେମଲୀଳା, ସେମିତି ଖଟପଟ ।'' ଡାକ୍ତର ଟୋକା ଆସି ପଚାରିଲା, ''କ'ଣ ହେଲା ପିଇସୀ ?'' ମୁଁ କହିଲି, ''କିଛି ନୁହଁ ।'' ପୁଣି ମନ ବଦଳେଇ କହିଲି, ''ଶୁଣ, ଟିକେ ଅପେକ୍ଷା କର । ତୋ'ଠାରେ କାମ ଥିଲା । ସନ୍ଧ୍ୟାରେ ତୋ' ଚେମ୍ବରକୁ ଆସିବି । ଏବେ ଯାଇ ସୋରିଷ କ୍ଷେତର ଫଟୋ ଉଠାଇବି । କଲିକତାରୁ ମୁଁ କେମରା କିଣି ଆଣିଛି ।'' କ୍ୟାମେରା ଧରି ମୁଁ କ୍ଷେତକୁ ବାହାରିଲି । ପିଲାଏ ଟିଭି ଦେଖା ଛାଡ଼ି ମୋ ପଛରେ ଧାଇଁଲେ ।

ସୂର୍ଯ୍ୟାସ୍ତ ହେବା ଉପରେ । ସୋରିଷ ଆଉ ଗେଣ୍ଡୁ ଫୁଲରେ କ୍ଷେତ ପୂରାପୂରି ହଳଦୀ ରଂଗର ହୋଇଯାଇଥାଏ । ଭାବିଲି, ଫଟୋରେ ଏ ସବୁ କେତେ ସୁନ୍ଦର ଦିଶିବ ! ସ୍ୱର୍ଗ ପରି । ପିଲାଙ୍କ ସାଙ୍ଗରେ ଖୁସିରେ ଦୌଡ଼ି ଦୌଡ଼ି ମୁଁ ଫଟୋ ନେଉଥାଏ । ମଝିରେ କ୍ଷେତର ହିଡରେ ଝୁଣ୍ଟି ପଡିଲି; କ୍ୟାମେରା ଦୂରରେ ଯାଇ ପଡିଲା । ବାଁ ହାତ ମୋଡ଼ି ହେଲା; ଦରଜ ଆରମ୍ଭ ହେଲା । ଭାବିଲି, କାଲି ମତେ ଯିବାର ଅଛି, ଆଉ ଆଜି ହାତ ଭାଙ୍ଗିଲାଣି । ଏତେ ସବୁ ଜିନିଷ ପତ୍ର; ସାଙ୍ଗରେ ଦି ଦି ଟା ସାନ ପିଲା; ଗାଡ଼ିରେ ଚଢ଼ିବି କେମିତି ? ପୁଣି ଭାବିଲି, କୌଣସି ପ୍ରକାରେ ଥରେ ଗାଡ଼ିରେ ଚଢ଼ିଗଲେ ବୋଧହୁଏ ଏତେ ଆଉ କଷ୍ଟ ହେବ ନାହିଁ । ଏବେ କ'ଣ କରିବି ? ଆଖପାଖରେ କେହି ଡାକ୍ତର ବି ନାହାନ୍ତି । ଦରଜ ବଢୁଥାଏ । କୌଣସି ପ୍ରକାରେ 'ଆଃ ଓଃ' କରି ବଡ଼ କଷ୍ଟରେ ଘରକୁ ଆସିଲି; ନିରୁଦାର ବାରଣ୍ଡାରେ ବସି ପଡ଼ିଲି । ଅଗଣାରେ ବସିଥିବା ଲୋକ ଏତେବେଳକୁ ଚାଲି ଗଲେଣି । ପିଲାଏ ମୋର ଦୁରବସ୍ଥା ଦେଖି ଉଦାସ ହୋଇପଡ଼ିଲେ । ନିରୁଦା'ର ବଡ଼ ଝିଅ ମା'ଙ୍କୁ ଯାଇ କହିଲା, ''ପିଇସୀ କ୍ଷେତର ହିଡ଼ରେ ପଡ଼ିଗଲା; ତା' ହାତ ଭାଙ୍ଗିଯାଇଛି ।'' ତା' ମା' ସବୁ କାମ ଛାଡ଼ି ଦୌଡ଼ି ଆସିଲା । କହିଲା , ''ହାତ ଭାଙ୍ଗିଲା କେମିତି ? ପଡ଼ିଲୁ କେମିତି ? କେତେ ଖୁସିରେ ହସି ହସି ଘରୁ ଗଲ, ଆଉ ଆସିଲ ଏହି ଅବସ୍ଥାରେ ?'' ମୋର ହାତକୁ ଆଉଁଶି ଆଉଁଶି କହିଲା, ''ହାଡ଼ ଫାଡ଼ ତ ଭାଙ୍ଗିନି ?'' ଏହି ସମୟରେ ପଡ଼ାର ଜଣେ ସ୍ତ୍ରୀ ଲୋକ ମୋର

ହାତ ଦେଖି କହିଲା, ''ଭାଙ୍ଗିଲା କେମିତି ? ମୁଁ ତ ତାକୁ କ୍ଷେତରେ ଖୁସିରେ ବୁଲୁଥିବାର ଦେଖିଲି । ପୁଣି ହାତ କେବେ ଆଉ କେମିତି ଭାଙ୍ଗିଲା ?'' ନିରୁଦା'ର ସ୍ତ୍ରୀକୁ ମୋର ହାତ ଆଉଁଶିବାର ଦେଖି କହିଲା, ''ନା, ଭାଙ୍ଗିନି । ଭାଙ୍ଗିଥିଲେ ଦରଜରେ ବସି ପାରୁ ନଥାନ୍ତା । ''ଟିକିଏ ପରେ ସେ ପରାମର୍ଶ ଦେଲା, ''ୟା'କୁ ସୋନାର ମା' ପାଖକୁ ନେଇଯାଅ । ସେ ଦେଖିଲା ପରେ କ'ଣ ହୋଇଛି କହିଦେବ । ହାଡ଼ ଭାଙ୍ଗିନଥିବ ଯଦି ମାଲିସ କରି ହାତ ଠିକ୍ କରିଦେବ ।''

ମୋର ହାତ ଫୁଲି ଯାଇଥିଲା । ଦରଜ ବି ବଢ଼ି ଯାଇଥିଲା । ନିରୁଦା'ର ସ୍ତ୍ରୀ ମତେ ସାଙ୍ଗେ ସାଙ୍ଗେ ସୋନାର ମା' ପାଖକୁ ନେଇଗଲା । ତା'ର ମାଟି ଘର ଦେଖିବାକୁ ଖୁବ୍ ସୁନ୍ଦର । ଘର ପାଖରେ ନଦୀ ତଟର କାଂଶବଣ । ସେହି କାଇଁଶରେ ଘର ଛପର ହେଇଥିଲା । ଦରଜା ପାଖରେ ଚାଳିଶ-ବୟାଳିଶ ବର୍ଷ ବୟସର ଜଣେ ସ୍ତ୍ରୀ ଲୋକ ବସିଥିଲା । ତାକୁ ଦେଖାଇ ନିରୁଦା'ର ସ୍ତ୍ରୀ କହିଲା, ''ଇଏ ହେଲେ ସୋନାର ମା ।'' ପଚାରିଲା, ''ଆଉ ସବୁ ଭଲ ତ କାକୀ ?'' ମତେ ଦେଖି ନିରୁଦା'ର ସ୍ତ୍ରୀକୁ ସେ ପଚାରିଲା, ''ଇଏ କିଏ ?'' ନିରୁଦା'ର ସ୍ତ୍ରୀ କହିଲା, ''ଆମ ଘରେ ଜଣେ ଚନ୍ଦା ହୋଇ କାକା ରହନ୍ତିନି, ତାଙ୍କ ଝିଅ ଇଏ । ଚାରି ଦିନ ତଳେ ଦିଲ୍ଲୀରୁ ଆସିଛି । ଦେଖୁନ କାଲି ତାକୁ ଦିଲ୍ଲୀ ଯିବାର ଅଛି ଆଉ ଆଜି କେମିତି କେଜାଣି ହାତ ଭାଙ୍ଗି ଦେଲା ଯେ ! ତାକୁ ଦେଖି କହ, ଡାକ୍ତର ପାଖକୁ ତ ନେବାକୁ ପଡ଼ିବ ନାହିଁ ?'' ନିରୁଦା'ର ସ୍ତ୍ରୀ ନିଜ ଘରୁ ଗିନାରେ ସୋରିଷ ତେଲ ନେଇ ଯାଇଥିଲା । ସୋନାର ମା' ହାତବୁଣା ଦୁଇଟି ଆସନି ଆଣି କହିଲା, ବସ । ମୋର ହାତକୁ ଧରି ଦେଖିଲା ଆଉ କହିଲା, ''ନା ହାଡ଼ ଭାଙ୍ଗିନି । ମକଚି ଯାଇଛି ।'' ନିଜ ବୋହୂକୁ ଡାକି କହିଲା, ''ବୋହୂ, କାମ ସରିଲା ? ହାତରେ ଟିକିଏ ଲୁଣ ଆଣିଲୁ ।'' ବୋହୂ ତା'ର ଗୋଲଗାଲ ସାନ ଛୁଆଟିକୁ କଂସା ଗିନାରେ କ୍ଷୀର ପେଉଥାଏ । ଛୁଆର ଗଳାରେ ସେ ଶୁଖା କପଡ଼ାଟିଏ ବାନ୍ଧି ଦେଇଥାଏ । ଉଦ୍ଦେଶ୍ୟ କ୍ଷୀର ମା' ଦେହକୁ ଓହଳିବ ନାହିଁ । ମାତ୍ର ଏହା ସତ୍ତ୍ୱେ କିଛି ଫରକ ପଡୁନଥାଏ । ଛୁଆ ହାତଗୋଡ଼ ଛାଟି କାନ୍ଦୁଥାଏ । କାନ୍ଦିବା ସକାଶେ ମୁହଁ ଖୋଲେ । ମା' ପୁଣି କ୍ଷୀର ଢ଼ାଳିଦିଏ । ଛୁଆଟି ମା'ର ଜଂଘକୁ ଲାତମାରି ଉଠିବାକୁ ବି ଚେଷ୍ଟା କରେ । ଥରେ ତ ସେ ରାଗରେ ମୂତି ଦେଲା । ମୂତଯାକ ମା'ର ମୁହଁରେ, କ୍ଷୀର ଗିନାରେ ଏବଂ ତା' ନିଜ ମୁହରେ ପଡ଼ିଲା । ସେସବୁ ସଫା କରି ମା' ଛୁଆଟିକୁ ବସେଇ ଦେଲା ଏବଂ ଲୁଣ ଆଣିବାପାଇଁ ଘର ଭିତରକୁ ଗଲା । ଏବେ ଛୁଆଟି କାନ୍ଦ ବନ୍ଦ କରି ଏପଟେ ସେପଟେ ଅନାଇଲା । ପିଲାର ମା' ଲୁଣ ଆଣି ଆସିଲା । ତା' ଦେହରୁ ନବଜାତ ଶିଶୁର ମା'ର ଗନ୍ଧ ସ୍ପଷ୍ଟ ବାରି ହେଉଥାଏ । ପିଲାକୁ ଦିନରେ ଅନେକ ଥର କୋଳରେ ରଖି ତେଲ ଲଗଇବାକୁ ପଡ଼େ, କ୍ଷୀର ଦେବାକୁ ପଡେ । ଗନ୍ଧ ବା ନ ଆସିବ କେମିତି ? ମାତୃତ୍ୱର ଏହି ଗନ୍ଧ ଟିକକପାଇଁ ସ୍ତ୍ରୀମାନେ କେତେ ବ୍ୟାକୁଳ ହୋଇ ପଡ଼ନ୍ତି ! ସହରରେ ପିଲାର ଲାଳନ ପାଳନ କଥା ମା'ମାନେ ବେଶି ଜାଣି ନଥାନ୍ତି । ପିଲାକୁ ଡବାକ୍ଷୀର ବୋତଲରେ ଦିଅନ୍ତି । ପିଲା ତାକୁ ମା' କ୍ଷୀର ମନେ କରି ପିଇଯାଏ । ଛୁଆକୁ ତେଲ ମାଲିସ କରିବାର କଷ୍ଟ ସେମାନେ ଜାଣନ୍ତି ନାହିଁ । ତା' ଜାଗାରେ କେତେ କିସମର ଔଷଧ ଦିଅନ୍ତି । ଭାବନ୍ତି, ଏଥିରେ ଛୁଆ ସ୍ୱଚ୍ଛ ରହିବ, ହାତ ମଜବୁତ୍ ହେବ ଏବଂ ନୀରୋଗ ହେବ । ଛୁଆର ଝାଡ଼ା, ପରିସ୍ରା ବି ତାଙ୍କ ପାଇଁ

ସମସ୍ୟା ନୁହେଁ । ଚଡ଼ି ପରି କ'ଣ ପିନ୍ଧାଇ ଦିଅନ୍ତି; ମଇଳା ହେଲେ ତାକୁ ଫିଙ୍ଗି ଆଉ ଖଣ୍ଡିଏ ପିନ୍ଧାଇ ଦିଅନ୍ତି । ଏଭଳି ସ୍ତ୍ରୀ ଲୋକଙ୍କ ଦେହରୁ ଶିଶୁର ଗନ୍ଧ ବା ଆସିବ କେମିତି ? କିସମ କିସମର ସେଣ୍ଟର ସୁଗନ୍ଧ ଆସେ ।

ସୋନାର ମା' ଲୁଣମିଶା ତେଲରେ ମୋର ହାତକୁ ମାଲିସ୍ କରିଦେଲା । ନିରୁଦା'ର ସ୍ତ୍ରୀକୁ କହିଲା, ''ରାତିରେ ଶୋଇବା ଆଗରୁ ତାକୁ ଆଉ ଥରେ ମୋ ପାଖକୁ ନେଇ ଆସିବୁ ।'' ସେଠୁ ଫେରିବା ବେଳେ ରାସ୍ତାରେ ନିରୁଦା'ର ସ୍ତ୍ରୀ ମତେ କହିଲା, ''ତୋ ବାପା ତ ସ୍ତ୍ରୀ ଲୋକଙ୍କ ପରି କାନ୍ଦନ୍ତି । କାଲି ତୋ' ପାଇଁ କେତେ କାନ୍ଦିଲେ ! କହୁଛନ୍ତି, ମୋର ଝିଅ ଆଉ ଫେରିବ ନାହିଁ । କେଉଁ ରାକ୍ଷସ ହାତରେ ପଡ଼ିଗଲାଣି ସେ । କେବେ କଲିକତା ଯାଇନି ସେ । ମତେ ଜଣା କ'ଣ ସେ ସହର ! ଝିଅର ଆଉ ଦେଖା ମିଳିବନି । ବାପାଙ୍କ କଥା ଶୁଣି, କାନ୍ଦ ଦେଖି, ମା' ବା କେମିତି ନିଜ ଉପରେ ନିୟନ୍ତ୍ରଣ ରଖିବ ? କେତେ ଈର୍ଷା ତା' ମନରେ । ଅଶ୍ଳୀଳ ଭାଷାରେ କେବଳ ବକି ଚାଲିଲା । ଛି, ଶୁଣିବୁ ଯଦି, ଜଣାନାହିଁ କ'ଣ ଭାବିବୁ ତୁ ? ମୁ କହିଲି, ''ଏସବୁ କେଉଁ ନୂଆ କଥା ଯେ ? ମା' ନିଜ ତୁଣ୍ଡ ଉପରେ କାବୁ ରଖି ପାରେନା । ଯାହା ଇଚ୍ଛା ତାହା କହିବ, ଯାହା ଇଚ୍ଛା ତାହା ଚିନ୍ତା କରିବ । ତା' ଉପସ୍ଥିତିରେ ତ ମୋତେ ବାପାଙ୍କ ସହିତ କଥା ହେବାକୁ ବି ଡରମାଡ଼େ । କିଏ ଜାଣେ କେଉଁ କଥାକୁ ସେ କ'ଣ ବୋଲି ଅର୍ଥ କରିବ ଯେ ! ସେ ଯେତେବେଳେ ବାପାଙ୍କ ଝିଅକୁ ଏଭଳି କଥା କହିପାରେ, ତାହେଲେ ଅନ୍ୟମାନଙ୍କୁ କ'ଣ ବା ନ କହିବ !'' ନିରୁଦା'ର ସ୍ତ୍ରୀ କହିଲା, ''ମୋ ଝିଅ ଉପରେ ବି ସେ ସନ୍ଦେହ କରିପାରେ । ନା କ'ଣ ? ମୋ ଝିଅକୁ ତାଙ୍କ ଘର ଆଡ଼େ ନ ଛାଡ଼ିଲେ ମୋର ଭଲ । ବାପାଙ୍କ ସହିତ ଅଧିକ କଥା ନ କହିବାକୁ ତାକୁ କହିବି । ଝିଅ ବୋଧହୁଏ ଏ ସବୁ ଅନୁମାନ କରି ସାରିଲାଣି । ତାଙ୍କ ଘରକୁ ସେଥିପାଇଁ ଯିବାକୁ ଚାହେଁନି । ସେଦିନ ତୁ ଦେଖିଲୁନି, ଝିଅ ତୁମ ଘର ଭିତରକୁ ଯାଉ ନଥିଲା । ଦରଜା ପାଖରେ ଛିଡ଼ା ହୋଇ ଚା' ପତି ମାଗିଲା ।'' ହସି ହସି ମୁଁ କହିଲି, ''ଓ ହୋରେ । ଆଜି ଯାଏଁ ମା' ତା' ନାଁରେ କିଛି କହିନାହିଁ । ଟିକିଏ ଅପେକ୍ଷା କର । ଜଲ୍‌ଦି ଆରମ୍ଭ କରିଦେବ ।'' ରାସ୍ତାରେ ଗୋଟିଏ ଜାଗାରେ ଛିଡ଼ା ହୋଇ ନିରୁଦା'ର ସ୍ତ୍ରୀ ହସି ହସି କହିଲା, ''ଏଇଠି ଛିଡ଼ା ହୋଇ ତୋ ମା' ବଡ଼ ପାଟିରେ ଅଶ୍ଳୀଳ ଗାଳି ବକୁଥିଲେ । ରାସ୍ତାରେ ଯାଉଥିବା ଲୋକେ ଆଶ୍ଚର୍ଯ୍ୟ ହୋଇ ତାକୁ ଦେଖୁଥାନ୍ତି । କି ଲାଜର କଥା । ଛି ।'' ମୁଁ କହିଲି, ''ଯିଏ ଏମିତି କଥା କହେ, ତାକୁ ଲାଜ ମାଡ଼େନା । ଯିଏ ଶୁଣେ, ତାକୁ ଲଜ୍ଜିତ ହେବାକୁ ପଡ଼େ ।'' କଥାବାର୍ତ୍ତା କରି କରି ଆମେ ଦୁହେଁ ଘରେ ପହଞ୍ଚିଗଲୁ । ମୁଁ ତାକୁ କହିଲି, ''ଚା' ଟିକେ କର ।'' ସେ କହିଲା, ''ଆମେ ଚା' ସାଧାରଣତଃ ପିଉନା । କେବେ ମନ ହେଲେ ଗୁଡର ଚା' ପିଉଁ । ପିଲାଙ୍କ ଲାଗି କ'ଣ ଘରେ ଚିନି ରଖି ହୁଏ ? ଆଚ୍ଛା ଶୁଣ । ତୋ' ମା' ପାଖରୁ ଚିନି ଟିକିଏ ଆଣ । ଚା' କରିଦେବି ।'' ମୁଁ କହିଲି, ''ନା, ଥାଉ । ପିଇବିନି । ନୋହିଲେ ଗୁଡର ଚା' ଟିକେ କର । ଆମେ ସାନ ଥିଲାବେଳେ ମା' ଖଜୁରି ଗୁଡର ଚା' ପିଏ । ସେ ଚା' ପିଏ ଆଉ ଆମେ ଗୁଡ଼ ଖାଉଁ । ଯଦି ଗୁଡ଼ ଅଛି, ଗୁଡ ଚା' କର ।'' ସେ ଖୁସିରେ ଚା' ତିଆରି କରିବାକୁ ଚାଲିଗଲା । ଏହି ସମୟରେ ନିରୁଦା' କୁଆଡୁ ଆସି ପହଞ୍ଚିଲା । ସେ ବାରଣ୍ଡାରେ ବସିଥାଏ ।

ନିରୁଦା'ର ସାନ ଝିଅ ମା'କୁ ଚା' ତିଆରି କରିବାର ଦେଖି ଖେଳ ଛାଡ଼ି ଘରକୁ ଦୌଡ଼ିଲା । ମା' ଆଗରେ ହାତ ଦେଖାଇ ସେ ଗୁଡ଼ ମାଗୁଥାଏ । ତା' ମୁହଁରୁ ଗୁଡ଼ ଜାଗାରେ 'ଗୁ' ବାହାରୁ ଥାଏ । ତା' କଥା ଶୁଣି ନିରୁଦା'ର ବଡ଼ ଝିଅ ତାକୁ ଗାଳି କଲା, ''ଗୁ ଗୁ କ'ଣ କହୁଛୁ ? ଗୁଡ଼ କହି ପାରୁନୁ ? 'ଗୁ' ପଡ଼ିଆରେ ଥାଏ । ଯା ଖା । ନୋହିଲେ ନିଜେ ହଗ ଆଉ ତାକୁ ଖା ।'' ତା'ପରେ ଆଉ କିଏ ଦେଖେ ! ଦୁଇ ଭଉଣୀଙ୍କ ମଧ୍ୟରେ ଆରମ୍ଭ ହେଲା ମହାଭାରତ । ଛୋଟ ଝିଅ କହୁଥାଏ, ''ତୁ ଚୁପ କର ମୋଟୀ ।'' ବଡ କହିଲା, ''ମତେ ମୋଟୀ କହିବୁନି । ତୋର ଦିଆ ଖାଇ ମୁଁ ମୋଟୀ ହୋଇନି । ମୋ ବାପାଙ୍କ ଦିଆ ଖାଇଛି । ମୁଁ ଯାହା ବି ହୁଏ, ତୁ ମତେ ମୋଟୀ କହିବୁନି ।'' ସାନ କହିଲା, ତୋ' ବାପା କ'ଣ ମୋ ବାପା ନୁହନ୍ତି ? ତୁ କାହିଁକି କହିଲୁ, ତୋ' ବାପା ? ସେ କ'ଣ ଏକା ତୋର ବାପା ?'' ବଡ଼ କହିଲା, ''ବହୁତ କଥା ଶିଖିଗଲାଣି ।'' ଏତିକି କହି ତା' ଗାଲରେ ଦୁଇ ଥାପଡ଼ ଦେଲା ସେ । ଏହା ପରେ ଆଉ କ'ଣ ? ଛୋଟ କାନ୍ଦି କାନ୍ଦି ତା'ର ଜଟକୁ ଟାଣି ତାକୁ ତଳେ ପକେଇ ଦେଲା । ତା' ପିଠିରେ ଦୁମ୍‌ଦାମ୍ ବଜୋଉଥାଏ ସେ । ତେଣିକି ସେ କ୍ଷେତଆଡକୁ ଦୌଡ଼ି ପଳାଇଲା । ବଡ଼ ତା' ପଛେ ପଛେ ଦୌଡ଼ିଲା । ପଛରୁ ମା' ବାପା ପାଟି କରୁଥାନ୍ତି, ''ଏ ଶୁଣ । ସେ ଆଡେ ଯା' ନା ।'' ହେଲେ କିଏ ଶୁଣୁଛି ତାଙ୍କ କଥା ! ପ୍ରତିଶୋଧ ନେବାପାଇଁ ସେ ଗଲା ତା' ପଛରେ । ଟମାଟୋ ବାଡିରେ ଦୁଇ ଭଉଣୀଙ୍କ ମଧ୍ୟରେ ଏତେ ମାଡ଼ ଝଗଡ଼ା ଚାଲିଲା ଯେ ଶେଷରେ ଛୋଟ ଝିଅ ଭେଁ ଭେଁ କରି କାନ୍ଦିଲା ।

ବଡ଼ ଭଉଣୀ ଘରକୁ ଫେରି ବାପାଙ୍କୁ ଶୁଣାଇ ସେ ମା'କୁ ଆକ୍ଷେପ କଲା । ''ତୁମେମାନେ ତାକୁ ମୁଣ୍ଡରେ ବସେଇ ରଖିଛ ! ତୁମମାନଙ୍କ ପାଟି ଖୋଲୁନି । ମତେ କାହିଁକି ସେ ମୋଟୀ କହିବ ?'' ତା' ମା' ତାକୁ ବୁଝାଇଲା, ''ତୁ ଏତେ ବଡ଼ ହେଲା ପରେ ବି ଏତେ ଅବୁଝା ହେଇଯାଉ କେମିତି ? ସେ କେତେ ସାନ । ତା'ର ଟିକିଏ କଥାରେ ତୁ ନିଆଁ ପରି ଗରମ ହୋଇଯାଉଛୁ । ସେ କିଛି କହିବ ଯଦି କହୁ । କେତେ ଦିନ ଧରି କହିବ ! କହି କହି ନିଜେ ଚୁପ୍ ପଡ଼ି ଯିବନି !'' ମା'ର କଥା ଶୁଣିଲା ପରେ ବି ତାକୁ ସନ୍ତୁଷ୍ଟି ମିଳିଲା ନାହିଁ । କାନ୍ଦି କାନ୍ଦି କହିଲା, ''ଆଜିଠାରୁ ମୁଁ ଖାଇବି ନାହିଁ । ନ ଖାଇଲେ ମୋଟା ବି ହେବିନି ? ମୁଁ ହସି ଦେଇ କହିଲି, ଧେତ୍ ପାଗଳି । ଯାହାର ମୋଟା ହେବାର ଥାଏ, ସେ ନ ଖାଇଲେ ବି ମୋଟା ହେବ । ବଡ଼ କଥା ହେଲା, ମନର ସୁଖ ସନ୍ତୋଷ । ମତେ ଦେଖୁନୁ । ଚାରି ପାଞ୍ଚ ବର୍ଷ ଆଗରୁ ମୁଁ କେତେ ପତଳା ଥିଲି ଯେ ପବନ ଉଡେଇ ନେବ । ଆଉ ଏବେ ? ସେଦିନ ଶୁଣିଲୁ ଗୌରୀ ମା' କ'ଣ କହୁଥିଲା ? ମତେ କହୁଥିଲା, 'ତୁ ଖୁବ୍ ମୋଟା ହୋଇଗଲୁଣି ।' ହେଲେ ମୋର ଖାଇବା ତ ଏଠି ଯେମିତି ଥିଲା ସେଠି ବି ସେମିତି । ଅବଶ୍ୟ ଏକଥା ସତ ଯେ, ଏଠିକା ଅପେକ୍ଷା ମୁଁ ସେଠି ଖୁବ୍ ଭଲରେ ଅଛି । ମୋ କଥା ଛାଡ଼ । ସେ ତୋର ସାନ ଭଉଣୀ । ଏତେ ସାନ ଛୁଆର କଥାକୁ ଧରି ବସନ୍ତି ? ଜାଣିଛୁ, ପିଲା ଦିନେ ଆମେ ବି ଏମିତି ଝଗଡ଼ା କରୁଥିଲୁ । ମୁଁ ଓ ମୋର ସାନ ଭାଇ ସଦାବେଳେ ଲଢୁଥିବୁ । ଖାସ କରି ପାଠ ପଢ଼ା ବେଳେ । ସେ ମତେ ଭାରି ବିରକ୍ତ କରେ । କେବେ ମୋର ପେନସିଲ ନେଇ ଯାଏ ତ, କେବେ ଆଉ କିଛି । ମୁଁ ଖାଲି କାନ୍ଦେ । ପୁଣି ମୁଁ କାନ୍ଦିଲେ ମୋ ପିଠିରେ ମାରେ । ଦୋଷ ତା'ର । ହେଲେ ବାପା-ମା'

ତାକୁ ଅଧିକ ଭଲ ପାଆନ୍ତି । ଜାଣିଛୁ କ'ଣପାଇଁ ? କାରଣ ସେ ସାନ । ମୋର ପିଲାଙ୍କର ବି ସେଇୟା । ସାରା ଦିନ ମତେ ହଇରାଣ କରନ୍ତି । ଏକା ସାଙ୍ଗରେ ଥିବେ ଯଦି, ଟିକିଏ ବି ଆରାମରେ ରଖେଇ ଦେବେନି । କେବେ ଇଏ ଆଜି ଅଭିଯୋଗ କଲାଣି ତ କେବେ ସିଏ । ଗାଳି କଲେ ବି ତା'ର ପ୍ରଭାବ ପଡେନା । ତେଣୁ ମୁଁ ଦୁହିଁକୁ ପିଟେ । ଜଣେ ମାଡ଼ ଖାଇଲେ, ଅନ୍ୟକୁ କହିବ ତୋ' ଲାଗି ମାଡ଼ ଖାଇଲି । ତେଣିକି ପୁଣି ଝଗଡ଼ା କରିବେ ଉଭୟେ । ମାତ୍ର ପରସ୍ପର ଏତେ ଝଗଡ଼ା କଲେ ବି ଜଣକ ବିନା ଆଉ ଜଣେ ରହି ପାରେନା । ଭଉଣୀ ଯଦି ନଥିବ, ଭାଇ ଆସି ତା କଥା ପଚାରିବ, ଭାଇ ନଥିଲେ ଭଉଣୀ । କେବେ ଜଣକୁ ବେଶି ମାଇଲେ, ଆର ଜଣକ କାନ୍ଦି କାନ୍ଦି କହିବ, ''ଆଉ ମାରନା ତାକୁ ।'' ସେହି ବେଳାରେ ମତେ ମୋ ନିଜ ଉପରେ ରାଗ ଚଢ଼େ । ଦୁହିଁଙ୍କୁ ପାଖରେ ବସାଇ କେବଳ କାନ୍ଦେ ମୁଁ ।''

ସେହି ଝିଅ ଉପରେ ମୋ କଥାର କିଛି ପ୍ରଭାବ ପଡ଼ିଲା ଭଳି ମତେ ଲାଗିଲାନି । ସେ କାନ୍ଦି କାନ୍ଦି ମତେ କହିଲା, ''ସେ ସବୁବେଳେ ମତେ ଅନ୍ୟମାନଙ୍କ ଆଗରେ ଚିଡାଏ । ମତେ ଭାରି ଖରାପ ଲାଗେ । ମା-ବାପା ସବୁ ଶୁଣି ତାକୁ ମନା ବି କରନ୍ତି ନାହିଁ ।'' ଲୁହ ପୋଛି ପୋଛି ପୁଣି କହିଲା, ''ମୁଁ ବି ରହିବି ନାହିଁ । ତୁମେ ସବୁ ଦେଖିବ, ତା'ଭଳି ମୁଁ ବି ଚାଲିଯିବି ।'' ଏତିକି କହି ସେ ସେଠାରୁ ବାହାରି ଗଲା । ତା' କଥା ଶୁଣି ମୁଁ ଅବାକ୍ ହୋଇ ପଚାରିଲି, ''ତା' ଭଳି ? କାହାଭଳି ?'' ମୋ କଥା ଶୁଣି, ନିରୁଦା'ର ସ୍ତ୍ରୀ ଆଉ ନିରୁଦା' ନୀରବରେ ପରସ୍ପରକୁ ଅନାଇଲେ । ତାଙ୍କ ହାବଭାବ ଦେଖି ଝିଅର ତା' ଭଳି କହିବା ପଛରେ କ'ଣ ଉଦ୍ଦେଶ୍ୟ ଥିଲା, ସେ କଥା ପଚାରିବାକୁ ଚାହିଁଲି ନାହିଁ ।

''ଭାଉଜ, ଚା' ଦିଅ ।'' ମୁଁ ନିରୁଦା'ର ସ୍ତ୍ରୀକୁ କହିଲି । ନିରୁଦା' ଚା' ଆଣି ମୋ ପାଖରେ ବସିଲା । ମୁଁ ଜାଣିଗଲି, ସେ କିଛି କହିବାକୁ ଚାହେଁ । ଚା' ପିଉ ପିଉ ସେ କହିଲା; ''ବାପ ହୋଇ ମୋର କହିବା କଥା ନୁହେଁ । ତଥାପି ତୋତେ କହିବାରେ କ୍ଷତି କ'ଣ ? ଏମିତିରେ ବି ଆଜି ତତେ କହିଥାନ୍ତି, କାରଣ ଆଜି ତା' ଖବର ମିଳିଛି ।'' ମୁଁ ତଥାପି ବୁଝି ପାରିଲିନି, ସେ କାହା କଥା କହୁଛି । ତୁ ଯାହାକୁ ମୋର ବଡ଼ ଝିଅ ମନେ କରୁଛୁ, ତା'ଠାରୁ ବଡ଼ ଆଉ ଏକ ଝିଅ ଅଛି । ଖରାପ ନୁହେଁ । ଆଜି ତା' ଖବର ମିଳିଛି । ତୁ ସେଦିନ ଯେଉଁ ଏସଟିଡ଼ି ବୁଥରୁ ଫୋନ କଲୁ, ସେଇଠିକି ସେ ଫୋନ୍ କରିଛି । ସେ କହିଛି, 'ମୁଁ ଠିକ୍ ଅଛି । ବାପା ମୋର ଚିନ୍ତା କରିବନି ।' ଗୋଟାଏ ଫୋନ୍ ନମ୍ବର ବି ଦେଇଛି । ସେଥିରେ କଥା ହେବାକୁ ମତେ ଖବର ପଠାଇଛି ।'' ମୁଁ ନିରୁଦା'ର କଥା ଧ୍ୟାନପୂର୍ବକ ଶୁଣୁଥିଲି । ନିରୁଦା'ର ସ୍ତ୍ରୀ ଶୁଣି ଚମକି ଗଲା । କହିଲା, ''ମୋର ମନା ଅଛି ? କେଉଁଠି ଅଛି ସେ ? ଭଲରେ ଅଛି ତ ?'' ନିରୁଦା' ତାକୁ ଚୁପ୍ ରହିବାକୁ କହିଲା । ମତେ ପୁଣି କହିଲା, ''ବହୁତ ଆଗରୁ ସେ ଯିବାପାଇଁ କହୁଥିଲା । ମୁଁ ତାକୁ ମନା କରୁଥିଲି । ଡର ମାଡୁଥିଲା, ଲୋକେ କ'ଣ କହିବେ ।'' ପଚାରିଲି, ''କ'ଣ କହିଲା ସେ ? କେଉଁଠି ଅଛି ? କାହା ପାଖରେ ରହୁଛି ?'' ନିରୁଦା କହିଲା, ''ହଁ, ଦିଲ୍ଲୀରେ କାହା ଘରେ ଛୁଆ ସମ୍ଭାଳୁଛି ।'' ତା' କଥା ଶୁଣି ଭାଉଜ ଆଶ୍ୱସ୍ତ ହେଲା । କେତେବେଳୁ ସେ ଏହି ଖବରର ପ୍ରତୀକ୍ଷା କରୁଥିଲା । ନିରୁଦା' ପୁଣି

କହିଲା, ''ସେ ଗଲା ତ ଗଲା । କିଛି କଥା ନାହିଁ । ଅନ୍ତତଃ ମା'କୁ ଜଣାଇବା କଥା ନୁହେଁ ? ତା' ମା' ତ ଖିଆ-ପିଆ ଛାଡ଼ି ଏତେ ବେମାର ପଡିଲା ଯେ ତା' ଚିକିତ୍ସାରେ ମୋର ପକେଟ ଖାଲି ହେଇଗଲା ।'' ମୁଁ କହିଲି, ''ଭଲ କରିଛି । ଗଲାବେଳେ ତୁମମାନଙ୍କୁ ଜଣେଇନି । ନୋହିଲେ କି ତୁମେମାନେ ତାକୁ ଯିବାକୁ ଦିଅନ୍ତେ ! ଏବେ ସେ ବଡ଼ ହେଲାଣି । ସେ କ'ଣ ଜାଣେନି ଯେ ବାପା ଗରିବ, ଘରେ ବଡ଼ ପୁଅ କେହି ନାହାନ୍ତି, କାହାରି ସାହାରା ବି ନାହିଁ । ଯାହା କିଛି ତାକୁ କରିବାକୁ ହେବ । ପଡ଼ାର ଲୋକଙ୍କୁ କେତେ ଖାତିର କରିବ ? ସେମାନେ ତ ଯାହା ମନକୁ ପାଇବ କହିବେ । ସେମାନଙ୍କ ସ୍ୱଭାବ ସେହିଭଳି । ଯେତେ ମୁହଁ, ସେତେ କଥା ! ସେମାନେ କ'ଣ ଜାଣନ୍ତି, ତମ ଘରେ ଆଜି ଚୁଲି ଜଳିଛି ନା ନାହିଁ ? ତୁମେ ଖାଇଛ ନା ନାହିଁ ? ଆଉ ଏପଟେ ତୁମେ ଡରି ଡରି ଦିନ କାଟ- ଲୋକେ କ'ଣ କହିବେ ! ସେମାନଙ୍କ କଥା ଅନୁସାରେ ଚଳିବ ଯଦି ବଂଚି ରହିବା ମୁସ୍କିଲ ହୋଇପଡ଼ିବ । ଜମି ଟିକକ ଛଡ଼ା ତୁମ ପାଖରେ ଅଛି କ'ଣ ? ଫସଲ ଠିକ୍‌ଠାକ୍ ହେଲେ ତହିଁରୁ କିଛି ମିଳିବ, ନୋହିଲେ ଗଲା ।'' ନିରୁଦା' ଦୀର୍ଘଶ୍ୱାସ ଛାଡ଼ି କହିଲା, ''କ'ଣ କହିବି, ଭଉଣୀ । ସେହି ଜମି ଟିକକ ଛଡ଼ା ମୋ ପାଖରେ ଆଉ କିଛି ନାହିଁ । ସେଥିରେ ବଢ଼ିର ପ୍ରକୋପ ରହିଛି । ତୁମେମାନେ ନଦୀ, ବାଲିଚର ଦେଖି କେତେ ଖୁସୀ ହୁଅ । ଆଉ ମୁଁ ଦେଖିଲେ କାନ୍ଦେ । ଏହି ନଦୀରେ ଯେତେବେଳେ ବଢ଼ି ଆସେ, ଫସଲ, ମଣିଷ, ଗାଈ ଗୋରୁ ସମସ୍ତେ ଏମିତି ଧ୍ୱଂସର ଶିକାର ହୁଅନ୍ତି ଯେ ତାକୁ କହିହେବ ନାହିଁ ।'' ମୁଁ ପଚାରିଲି, ''ସେତେବେଳେ ତୁମେମାନେ ପୁଣି କୁଆଡ଼େ ଯାଅ ? ଘର ବାଡ଼ ବି ତ ବୁଡ଼ି ଯାଉଥିବ ?'' ନିରୁଦା' କହିଲା, ''ଆଉ କ'ଣ ? ସବୁ କିଛି ଭାଙ୍ଗି-ଭୁଙ୍ଗି ଯାଏ । ଲୋକ ଉଚ୍ଚ ସ୍ଥାନ ଦେଖି ପଳାନ୍ତି । ବଢ଼ି ଉତୁରିଲେ ପୁଣି ନୂଆ କରି ସବୁ ତିଆରି କରିବାକୁ ପଡ଼େ । କ'ଣ କରାଯିବ ? ଏହା କେବଳ ମୋ କଥା ନୁହେଁ । ଏଠିକା ସମସ୍ତଙ୍କର । ନଦୀକୁ ଦେଖିଲେ ମୋର କଲିଜା ଥରିଯାଏ । ପଚାରିଲି, ''ବଢ଼ି ଆସିବ ବୋଲି କ'ଣ ଆଗତୁରା ଜଣାପଡେ ନା ?'' ସେ କହିଲା, ''ଜଣାପଡିଲେ ବା କ'ଣ ହେବ ? ସେତେବେଳେ ତ ଛୁଆଙ୍କ ଜୀବନ ରକ୍ଷାଲାଗି ପାଚିଲା ଫସଲକୁ ବି ଛାଡ଼ି ଚାଲିଯିବାକୁ ହୁଏ ।'' କହିଲି, ''ଝିଅ ଚାଲିଯାଇ ତାହେଲେ କ'ଣ ଭୁଲ କଲା ? ଏହି ସବୁ ଚିନ୍ତା କରି ଯଦି ଯାଇଥିବ, ତେବେ ତା'ର ଦୋଷ କେଉଁଠି ? ଲୋକେ କହନ୍ତି, ବାପର ପୁଅ ବାପର କାମରେ ଆସେ- ଆଉ ବଡ଼ ଝିଅ ମା'ର ! ତୁମର କେହି ବଡ଼ ପୁଅ ନାହାନ୍ତି । ଦେଖିବୁ, ସେହି ଝିଅ ବଡ଼ ପୁଅର କାମ କରିବ । ତା' ରୋଜଗାରରୁ କିଛି ଦେଲେ ତୁମେ କ'ଣ ଭାବିବନି ଯେ ବଡ଼ ପୁଅ ଥିଲେ ଏମିତି ଦେଇଥାନ୍ତା ନା ନାହିଁ ଜଣାନାହିଁ, ହେଲେ ବଡ଼ ଝିଅ ତ ସାହାଯ୍ୟ କରୁଛି ? ଏଥିରୁ ତୁମେ ଜାଣିଯିବ ଯେ, ପୁଅ ଜନ୍ମ ହେଉ କି ଝିଅ ତହିଁରେ କିଛି ଫରକ ନାହିଁ । ଅନ୍ୟମାନେ ବି ଏକଥା ବୁଝିବେ । ଝିଅ ଭଲରେ ଅଛି । ଆଶୀର୍ବାଦ କର ଯେ ସେ ତା' କାମରେ ସଫଳ ହେଉ ।''

କିଛି ସମୟ ଯାଏ ସମସ୍ତେ ଚୁପ ରହିଲେ । ପରେ ନୀରବତା ଭାଙ୍ଗି ନିରୁଦା' କହିଲା, ''ତୁ ଯାହା କହୁଛୁ, ଆମ ପଡ଼ାର ଲୋକେ କ'ଣ ତା' ବୁଝନ୍ତି !'' ତା' କଥା ଶୁଣି ମୋର ରାଗ ଚଢ଼ିଲା । କହିଲି, ''ତୁ ରହିଥା ସେହି ପଡ଼ାର ଲୋକଙ୍କୁ ନେଇ । ଝିଅଙ୍କ ପାଇଁ ଚିନ୍ତାର କୌଣସି ଦରକାର

ନାହିଁ ।'' ମୋ କଥା ଶୁଣି ସମସ୍ତେ ଚୁପ୍ । ନିରୁଦା' ମୋ ଆଡ଼କୁ ଏକ ଟୁକୁଡ଼ା କାଗଜ ବଢ଼େଇ ଦେଇ କହିଲା, ''ଏହା ତା'ର ଫୋନ୍ ନମ୍ବର । ତୋ' ଆଖପାଖରେ କେଉଁଠି ରହୁଥାଏ ଯଦି ମତେ ଫୋନ୍ କରିବାକୁ କହିବୁ ।'' ଟିକିଏ ପରେ ପ୍ରସଙ୍ଗ ବଦଳେଇ କହିଲା, ''ତୋର ତ କାଲି ଆସିବାର ଥିଲା କଲିକତାରୁ । ସେଠୁ ଆଉ କୁଆଡ଼େ ଯାଇଥିଲୁ କି ?'' ମୁଁ କହିଲି, ''କାଞ୍ଚରାପଡ଼ା ଯାଇଥିଲି ।'' ଶୁଣି ସେ ଖୁବ୍ ଖୁସୀ ହେଲା । କହିଲା, ''ଏଁ, କାଞ୍ଚରାପଡ଼ା ଯାଇଥିଲୁ । ମତେ ଆଗରୁ କହିଲୁନି ? ତୁ ତ ଆମ ଘରର ଦରଜା ଯାଏଁ ପହଁଚି ଯାଇଥିଲୁ ! ଆମ ଘର ତ ବାଂଲାଦେଶ ନା । ସେଠି ଆମର କେତେ ଲୋକ ଅଛନ୍ତି ! ମୋର ଭଉଣୀମାନେ, କାକା ଓ ବଡ଼ବାପାର ପିଲାମାନେ । ସେମାନେ ଜାଣିଥିଲେ ତତେ ଡାକି ନେଇ ଯାଇଥାନ୍ତେ, କେତେ ସ୍ୱାଗତ ସମ୍ବର୍ଦ୍ଧନା କରିଥାନ୍ତେ । ଆଜି ବି ତୁ ସେଠୁ ଆସି ପାରିନଥାନ୍ତୁ । ଆମ ଗାଁରୁ ରୋଜ ଲୋକ କାମ କରିବାକୁ କାଞ୍ଚରାପଡ଼ା ଆଉ କଲିକତା ଆସି ସନ୍ଧ୍ୟାରେ ଫେରି ଯାଆନ୍ତି ।'' ମତେ ଲାଗିଲା କାଞ୍ଚରାପଡ଼ାରୁ ବାଂଲାଦେଶ ଖୁବ୍ ପାଖ ହୋଇଥିବ । ସେଇଥିପାଇଁ ନିରୁଦା' କହୁଛି, ଆମ ଦରଜା ପାଖରୁ ତୁ ଫେରି ଆସିଛୁ ।

ହେ ଭାରତ, ମୋର ଦେଶ ! କି ବିଡମ୍ବନା ସତେ ! ତୋ'ର ଗୋଟାଏ ପଟେ ବାଂଲାଦେଶ, ଆଉ ଆର ପଟେ ପାକିସ୍ତାନ । ଜାଣି ତୋର ବାଁ ଓ ଡାହାଣ ହାତ । ସେମାନଙ୍କୁ ନିଜଠାରୁ ଅଲଗା ରଖି ତୁ' କେମିତି ରହିପାରୁ ଯେ ? ତତେ କ୍ଷତ ବିକ୍ଷତ କରି ଲୋକ ଚାଲିଗଲେ । ତୋ'ରି ଛାତିରେ ତୋ'ରି ସନ୍ତାନମାନେ କଳି ତକରାଳ କଲେ, ଲହୁଲୁହାଣ ହେଲେ ଆଉ ତୁ ସବୁ କିଛି ଚୁପ୍‌ଚାପ୍ ଦେଖିଲୁ କେବଳ ! କ'ଣ ଏବେ ବି ତୁ ଚୁପ୍ ! କାହିଁ କେଉଁଠି ପରିବର୍ତ୍ତନ ଆସିନି ? ତୋ' ପାଇଁ ମୋ ମନରେ ଅନେକ ଦରଦ । ଘରର ଗୋଟାଏ ଦରଜାରେ ବାଂଲାଦେଶ ଆଉ ଗୋଟାଏ ଦରଜାରେ ପାକିସ୍ତାନ । ତଥାପି ଦୁହେଁ ବିଦେଶ ଆମପାଇଁ ।

ଏହି ସବୁ ଚିନ୍ତା କରି କରି ମୁଁ ନିରୁଦା'କୁ ପଚାରିଲି, ''ଆଚ୍ଛା ଦାଦା, ନିଜ ଦେଶ, ନିଜ ଜନ୍ମଭୂମିକୁ ଦେଖିବାକୁ ତୁମର ଇଚ୍ଛା ହୁଏନି ?'' ନିରୁଦା' ଦୀର୍ଘଶ୍ୱାସ ନେଇ କହିଲା, ''ଇଚ୍ଛା କାହିଁକି ହେବନି ? ନିଜ ଦେଶକୁ ଯିବାପାଇଁ କା'ର ବା ମନ ନ ହେବ ? ହେଲେ ଯିବାକୁ ବାହାରିଲେ, ଶଳେ ପାସପୋର୍ଟ ମାଗନ୍ତି, ଭିସା ମାଗନ୍ତି । ଆଉ କ'ଣ କ'ଣ ସବୁ ମାଗନ୍ତି । ଆମେ ଗରିବ ଲୋକ । କେଉଁଠୁ ଯୋଗାଡ଼ କରିବୁ ଏତେ କଥା ! ସେଥିପାଇଁ ଯିବା ହୁଏନି । ଏବେ ପୁଣି ପଚାରିଲି, ''ଆଚ୍ଛା ଦାଦା, ଆମ ଭାରତ, ପାକିସ୍ତାନ ଆଉ ବାଂଲାଦେଶ ପୁଣି ଗୋଟାଏ ଦେଶ ହୋଇ ପାରିବେନି ?'' ସେ କହିଲା, ''ହେବେ କେମିତି ? ଏହି ଜନ୍ମରେ ତ ତାହା ଦେଖିବା ନୋହିବ । ଆଗ ତ ସମସ୍ତେ ଏକ ଥିଲେ । ଦେଖ, ଆମେ ଏଠି ଝଗଡ଼ା କରି କହନ୍ତି- ସେ ଦେଶର ଲୋକଙ୍କୁ ଏଠିକି ଆସିବାକୁ ଦେବାନି । ଏଠିକାର ଲୋକ ସେ ଦେଶକୁ ଯିବେନି । ହେଲେ ପଦ୍ମା ବି ଏ ଦେଶରେ, ଗଙ୍ଗା ବି ସେ ଦେଶରେ । ଦେଶ ଭାଗ ହେଲା । ସାଙ୍ଗରେ ନଦୀ ବି ଭାଗ ହେଲେ । କିନ୍ତୁ ପଦ୍ମା ଆଉ ଗଙ୍ଗା ପରସ୍ପର ସହିତ ମିଶିବାପାଇଁ କି ବ୍ୟାକୁଳ । ଏବେ ବି ନିଜ ନିଜର କୂଳ ଖାଇ ଖାଇ ଦୁହେଁ କେତେ ନିକଟ ହେଇଗଲେଣି ପରସ୍ପରର । କେବେ ଯଦି ଦୁଇ ଭଉଣୀ ମିଶି ଏକ ହୋଇଯା'ନ୍ତି, ଲୋକେ କ'ଣ କରିବେ ?'' ଏତିକି କହି ସେ ଚୁପ୍ ହୋଇ ପଡିଲା ।

ମୁଁ କଳନା କଲି, ପଦ୍ମା ଆଉ ଗଙ୍ଗା ମିଶି ଯାଇଛନ୍ତି । ଦୁହେଁ ଖେଳି ଖେଳି ବହି ଯାଉଛନ୍ତି । ଦୁହେଁ କେତେ ଖୁସୀ ! ଯେଉଁମାନେ ଦୁଇ ନଦୀ ଭିନ୍ନେ ହେବାଯୋଗୁଁ ଏ ପାରିରୁ ସେ ପାରିକୁ ଯାଆସ କରି ପାରୁ ନଥିଲେ, ସେମାନେ ବି ଅତିଶୟ ଖୁସ୍ । ଯେଉଁମାନେ ନିଜ ଜନ୍ମଭୂମିର ଗନ୍ଧ ଟିକିଏ ପାଇବାଲାଗି ବ୍ୟଗ୍ର ହୋଇ ପଡୁଥିଲେ, ଭାଇ ବନ୍ଧୁଙ୍କର ଖୋଜଖବର ନେଇ ପାରୁନଥିଲେ, ସେମାନେ ବି ଖୁସ୍ । ସମସ୍ତେ ଖୁବ୍ ଆନନ୍ଦିତ । ଲୋକେ କେବେ ଏ ପାରିର ଘାଟରେ ତ କେବେ ସେ ପାରିର ଘାଟରେ ଗାଧୁଆ ପାଧୁଆ କରୁଛନ୍ତି । ସମସ୍ତଙ୍କ ମଧ୍ୟରେ ଗାଧୁଆ ତୁଠରେ ବନ୍ଧୁତ୍ୱ ବଢୁଛି । ଏ ପାରିର ଜଣେ କେହି ଶୀଘ୍ର ଗାଧୋଇ ପଡି ଯିବାକୁ ବସିଲା ତ, ଆର ପାରିର ଆଉ ଜଣେ କହୁଛି, ''କ'ଣ ହେଲା ? ଏତେ ଶୀଘ୍ର ଚାଲି ଯାଉଛ ଯେ ?'' ପ୍ରଥମ ବ୍ୟକ୍ତି କହୁଛି, ''ଆଜି ତେଲ ସାବୁନ୍ ଆଣିବାକୁ ଭୁଲି ଗଲି ପରା ।'' ଦ୍ୱିତୀୟ ବ୍ୟକ୍ତି ଉତ୍ତର ଦିଏ, ''ତ କ'ଣ ହେଲା ସେଇଠୁ ? ମୁଁ ଆଣିଛି । ଟିକେ ରହ । ମୁଁ ଏବେ ସେ ପାରିକୁ ପହଁରି ଆସି ସାବୁନ୍ ଦେଇ ଆସିବି ।'' ନଦୀ ଦୁଇଟି ମିଶିଗଲେ ସତରେ କେତେ ଭଲ ନ ହେବ । ବାଂଲାଦେଶ ଆଉ ଭାରତର ପିଲାଏ ଏକା ସାଙ୍ଗରେ ହୋ ହଲ୍ଲା କରି ନଦୀରେ ପହଁରନ୍ତେ । ପାଣିକୁ ମାଟିମଇଳା କରିଦିଅନ୍ତେ । ବାଂଲାଦେଶର ଛୁଆଟିଏ ଗାଧୋଇ ସାରି ଭାରତର ତାର ସାଙ୍ଗକୁ କହନ୍ତା, ''ଆଜି ମୁଁ ଗାମୁଛା ଆଣିନି । ତୋ ଗାମୁଛା ଦେ, ପୋଛି ହେବି । ଦେହ ପୋଛି ନ ହୋଇ ଘରକୁ ଗଲେ ମା' ଗାଳି କରିବ । ସେତେବେଳେ ଭାରତର ଛୁଆ ତା' ଗାମୁଛା ଦେଇ କହିବ, ନେ ପୋଛି ହେଇପକା । ପୁଣି କହିବ, ''ତୋ ମା ଗାଳି କରିବ ? ମୋ ମା' ବି । କହିଲୁ, ମୋ ଆଖି କ'ଣ ଖୁବ୍ ନାଲି ଦିଶୁଛି କି ? ଡେରି ଯାଏଁ ଗାଧୋଇ ତୋ ଆଖି ତ ପୂରା ନାଲି ଦିଶୁଛି ।'' ଏମିତି କେତେ କଥା ପିଲାଏ କହିବେ । ଛୁଆଟିଏ ପଚାରିବ, ''ଆଜି ଉପରଓଳି ଆସିବୁ ? ସେ ଯେଉଁ ପଡିଆ ଦିଶୁନି, ଆମେ ସେଇଠିକି ଖେଳିବାକୁ ଯାଉ । ସେଠିକି ଆସିବୁ ।'' ସାଥୀ ଛୁଆଟି ସାମାନ୍ୟ ଉଦାସ ହୋଇ କହିବ, ''ନା ରେ ନା । ଖାକି କପଡ଼ା ପିନ୍ଧି ହାତରେ ଲାଠି ଧରିଥିବା ସେହି ଲୋକଟାକୁ ଦେଖୁନ । ସେ ପଟକୁ ଗଲେ ସେ ପରା ମନା କରେ । ନ ଦେଖୁଣୁ ଭଗେଇ ଦିଏ ! ହେଲେ କାହିଁକି ?'' ସାଙ୍ଗ କହେ, ତା'ର ପୁରୁଣା ଅଭ୍ୟାସ ରହି ଯାଇଛି ବୋଧେ ।'' ଦୁହେଁ ସାଙ୍ଗ ହୋଇ ଖେଳିବାକୁ ପୁଣି ଆର ଦିନକୁ ଅପେକ୍ଷା କରିବେ ।

ନଦୀ ଦୁଇଟି ଏକ ହେଲେ ଆହୁରି କେତେ କ'ଣ ହୋଇପାରିବ । ଦୁଇ ପଟର ମାଛ ଧରାଳିଙ୍କ ମଧ୍ୟରେ ଦେଖା ସାକ୍ଷାତ ହେଲେ କ୍ରମଶଃ ସେମାନଙ୍କ ମଧ୍ୟରେ ବନ୍ଧୁତା ହୋଇଯିବ । ତେଣିକି ପରସ୍ପର ମଧ୍ୟରେ ସେମାନେ କିଛି ଏଭଳିଆ ଗପସପ କରିବେ । ଜଣେ ପଚାରିବ ''ଦାଦା, ତୁମ ଘର କେଉଁଠି ?'' ଅନ୍ୟ ଜଣକ ଉତ୍ତର ଦେବ, ''ସେଇ ପଟେ ଯେଉଁ ବଡ଼ ବରଗଛଟିଏ ଦେଖାଯାଉନି, ମୋ ଘର ତା' ପଛରେ । ଆଉ ତୁମ ଘର ?'' ପ୍ରଥମ ଜଣକ ଉତ୍ତର ଦେବ, ''ମୁଁ ଏହି ସ୍କୁଲ ପାଖରେ ରୁହେଁ ।'' ପୁଣି କହିବ, ''ହେ ଭଗବାନ, ଆମେ ସମସ୍ତେ ଏକା ଜାଗାର ହୋଇ ସୁଦ୍ଧା ପରସ୍ପରକୁ ଚିହ୍ନନ୍ତି ନାହିଁ ।'' ଦ୍ୱିତୀୟ ଜଣକ କହିବ, ''ଆମର କପାଳକୁ ଦୁଇ ନଦୀ ମିଶିଗଲେ । ଦାଦା ତୁମେ ତାକୁ ଚିହ୍ନ ? ତାକୁ ପରା ଅନେକ ଲୋକ ଜାଣନ୍ତି ।'' ପ୍ରଥମ କହିବ,

''ଆରେ କି କଥା କହୁଛ ? ତାଙ୍କୁ ଚିହ୍ନିବି ନାହିଁ ? ତାଙ୍କ ଘରେ ପରା ମୁଁ ମାଛ ଦିଏ । ତୁମେ ତାଙ୍କୁ କେମିତି ଚିହ୍ନିଲ ?'' ଜବାବରେ ସେ କହେ, ''ଚିହ୍ନିବି ନାହିଁ ! ଅନେକ ଦିନ ହେଲା ଦେଖା ହେଇନି । ଝିଅ କେମିତି ଅଛି ଯେ ?'' ସାଙ୍ଗ କହେ, ''ଆଚ୍ଛା ଆଚ୍ଛା । ସେ ଲୋକ ତ, ଯାହାର ପାଟ କପଡ଼ା ବେଉସା ! ତାକୁ ବା କେମିତି ନ ଜାଣିବି ଯେ ! ତୁମ ଜୋଇଁର ସ୍ୱଭାବ ଭଲ । ହାଟରେ ଦେଖା ହୁଏ । ଜାକା ତାକେ ମତେ । ଏଥର ଦେଖା ହେଲେ ତୁମ କଥା ପଚାରିବି ।'' ଅନ୍ୟ ଜଣକ କହିବ, ''ଦାଦା, ଆଜି କ'ଣ ତାଙ୍କ ଆଡ଼େ ଯିବନି ? ମୋର ଜୋଇଁ ସାଥିରେ ଦେଖା କରନ୍ତ ଯଦି ମାଛ କିଛି ଦିଅନ୍ତି । ତୁମେ ଦେଇ ଦିଅନ୍ତ, ଜଣାନାହିଁ କେମିତି ଅଛି ଯେ ସେ !''

ମୁଁ ମୁଣ୍ଡ ତଳକୁ କରି ଭାବନାରେ ବୁଡ଼ି ଯାଇଥାଏ । ନିରୁଦା' କହିଲା, ''ଏ ବେବି, କୋଉ ଚିନ୍ତାରେ ବୁଡ଼ିଗଲୁ ?'' ମୋର ଧ୍ୟାନ ହଟିଲା । କହିଲି, ''କିଛି ନୁହଁ ।'' ପଚାରିଲି, ''ଭାଉଜ କ'ଣ କରୁଛି ?'' ନିରୁଦା' କହିଲା, ''ତୋ ଭାଉଜ ରନ୍ଧାବଢ଼ାରେ ଲାଗିଛି । ତୋ'ର ଗାଡ଼ି କାଲି କେତେବେଳେ ? କ'ଣ ଭାବୁଥିଲୁ ତୁ ?'' ମୁଁ କହିଲି, ''କିଛି ଭାବୁ ନ ଥିଲି । ହୁଏତ ଭାବୁଥିଲି କ'ଣ ସବୁ ।'' ସେ କହିଲା, ''ଏଇଟା କି କଥା ମ ? ଭାବୁଥିଲୁ, ପୁଣି ହୁଏତ ଭାବୁ ନଥିଲୁ ।'' ତାକୁ ଅନାଇଁ ମୁଁ ହସି ଦେଲି । କହିଲି, ''ତୁମେ କହୁ ନଥିଲ, ପଦ୍ମା ଆଉ ଗଙ୍ଗା ଦୁଇ ଭଉଣୀ ପରସ୍ପରକୁ ଭେଟିବାଲାଗି କେତେ ଆତୁର ହୁଅନ୍ତି । ମୁଁ ସେ କଥା ଭାବୁଥିଲି । ଦୁହେଁ ମିଶିଗଲେ ଭଲ ହୁଅନ୍ତାନି ?'' ସେ କହିଲା, ''ନିଶ୍ଚୟ । ହେଲେ କେବେ ସେମାନେ ମିଶିବେ ଯେ ? ହଉ ଛାଡ଼ ସେ କଥା । ତୁ ଏ ଯାଏଁ କହିଲୁ ନି, କାଲି ତୋ' ଗାଡ଼ି କେତେବେଳେ ?'' ମୁଁ କହିଲି, ''ଗାଡ଼ି ଏଗାରଟାରେ । ଘରୁ ନ'ଟାରେ ବାହାରିବାକୁ ହେବ । ନୋହିଲେ ପିଲାଂକ ସାଂଗରେ ଚାଲି ଚାଲି ଷ୍ଟେସନ ପହଂଚି ହେବ ନାହିଁ ।'' ନିରୁଦା କହିଲା, ''ତା' ପାଇଁ ଚିନ୍ତା କରନା । ମୁଁ ଠିକ୍ ସମୟରେ ତୁମ ସମସ୍ତଙ୍କୁ ଷ୍ଟେସନରେ ପହଞ୍ଚାଇ ଦେବି । ପୁଣି ତୁ କେବେ ଆସିବୁ ?'' ନିରୁଦା'କୁ ଉଦାସ ଦେଖି ମତେ ଭଲ ଲାଗିଲାନି । କହିଲି, ''କିଏ ଜାଣେ, ଦାଦା ! କେବେ ଆସିବି । ପୁଣି ଆସିଲେ ବା କ'ଣ ହେବ ଯେ ? ଏତେ ବର୍ଷ ପରେ ଆସି ଦେଖିଲି, ମୋ ବାପା-ମା'ଙ୍କର ସ୍ୱଭାବ ବଦଳିନି । ତେବେ ଆସିବା କି ଲାଭ ? ଦୁର୍ଗାପୁର ଆସିବାପାଇଁ ବାହାନା ହେଲା ଯେ ବାପାଙ୍କୁ ଭେଟିବି । ଆସି ଯଦି ଦେଖିବି ଯେ ସେ ଆଗ ଭଳି, ତେବେ କି ଭଲ ଲାଗିବ ? ମୁଁ ଆଉ ଆସିବିନି । ମୋର ଆସିବା ନ ଆସିବାରେ ଶଙ୍କରକୁ ତ କିଛି ଫରକ୍ ପଡିବ ନାହିଁ । ସେ ତ ଆସିଲାନି ନା ଦାଦା ?'' ନିରୁଦା' କହିଲା, ''ନା, ଆସିଲା କେଉଁଠି ? ଏତେ ସାନ ସାନ ଛୁଆଙ୍କୁ ଛାଡ଼ି ସେ କେମିତି ରହି ପାରୁଛି ଯେ ? କି ବାପ ଯେ, ଛି !'' ମୁଁ କହିଲି, ''ତାକୁ ଯଦି ଏକଥା କୁହାଯାଏ, ସେ କ'ଣ କହିବ ଜାଣିଛ ? କହିବ, ତା'ର ଛୁଆ ନୁହନ୍ତି । ତା'ର ଛୁଆ ହେଇଥିଲେ କି ତା' ମା' ନେଇ ଯାଇପାରନ୍ତା ? ତୁମେ କୁହ, ଏଭଳି କଥା ଶୁଣି କାହାକୁ ବା ଖରାପ ନ ଲାଗିବ ଯେ ? ନିରୁଦା' କହିଲା, ''ତୁ କାହିଁକି ଏତେ ଚିନ୍ତା କରୁ ଯେ ? ଯେତେବେଳେ ସେ ନିଜ ପିଲାଙ୍କୁ ମୋର ବୋଲି କହୁନି, ତୁ ତୋର ଯେମିତି ରହୁଛୁ, ରହ ।''

ଏମିତି କ'ଣ ହେଇପାରେ ? ଯାହା ବି ହେଉ ସେ ତ ବେବିର ପତି । ଏତେ ବର୍ଷ ଧରି ଯାହା ସହିତ ବିତିଛି, ତାକୁ ଭୁଲି ଯିବା କ'ଣ ଏତେ ସହଜ ? ପୁଣି, ସବୁ ଦୋଷ କ'ଣ ଏକା ଶଙ୍କରର ? ବେବିର କିଛି ଦୋଷ ନାହିଁ ? ଯଦି ବେବି ତା' କଥା ମାନି ଚଳିଥାନ୍ତା, ତାକୁ କ'ଣ ଘର ଛାଡ଼ିବାକୁ ପଡ଼ିଥାନ୍ତା ! ବେବି କେବଳ ନିଜ ପତିକୁ କାହିଁକି ଦୋଷ ଦେବ ? ଶଙ୍କର ପିଲାଦିନେ ନିଜ ବାପା ଆଉ ବଡ଼ ବାପାଙ୍କୁ ଯେମିତି ରହିବାର ଦେଖିଛି ସେ ସେମିତି ରହିବାକୁ ଚାହୁଁଛି । ସେ ଚାହେଁ, ପିଲା ବି ସେମିତି ରହନ୍ତୁ । ସେ କେବଳ ଏତିକି ଜାଣେ ଯେ ଭୋକ ହେଲେ ଖାଅ ଅଥବା ବାହାଘର ବୟସ ହେଲେ ବାହା ହୁଅ, ଛୁଆ ଜନ୍ମ କର । ଛୁଆ ଟିକିଏ ବଡ଼ ହେଲେ, ତାଙ୍କୁ କ୍ଷେତକୁ ପଠାଅ । ପୁଅକୁ ପିଟିବା କିମ୍ବା ପୁଅର ବାପ ଉପରକୁ ହାତ ଉଠାଇବାରେ କିଛି ଭୁଲ ନାହିଁ । ଲେଖାପଢ଼ା କଥା ତାକୁ କେହି କହି ନାହାନ୍ତି । ତେବେ ସେ ସବୁକଥା କେମିତି ବା ଜାଣିବ ! ଏହାର ବିପରୀତ ବେବିର ଧ୍ୟାନ ଥିଲା ପଢ଼ା ଲେଖାରେ । ତା'ର ଇଚ୍ଛା, ପିଲାଏ ବାକି ଜିନିଷ ଛାଡ଼ି ପଢ଼ାରେ ମନ ଲଗାନ୍ତୁ । ଏହି କଥାକୁ ନେଇ ପତି ପତ୍ନୀ ମଧ୍ୟରେ ପ୍ରାୟ ଝଗଡ଼ା ହୁଏ । ଯଦି ସେ ପତିର ସବୁ କଥାକୁ ମାନି ନେଇଥାନ୍ତା, ସମସ୍ତେ ତା'ର ପ୍ରଶଂସା କରିଥାନ୍ତେ ।

ମୁଁ କିଛିଟା ଉଦାସ ହୋଇ ଶଙ୍କର କଥା ଚିନ୍ତା କରୁଥିଲି । ନିରୁଦା' ଅନୁମାନ କରିନେଇ କହିଲା, ''କ'ଣ ହେଲା ? ମନ ଦୁଃଖ କାହିଁକି କରୁଛୁ ? ଆଉ ଥରେ ଯିବୁ କି ସେଠିକି ?'' ଟିକିଏ ଚୁପ୍ ରହି ପୁଣି କହିଲା, ''ହେଲେ ଯିବୁ ଯଦି ଫେରୁ ଫେରୁ ଖୁବ୍ ରାତି ହେଇଯିବ ।'' ମୁଁ ମୁଣ୍ଡ ଉପରକୁ କରି କହିଲି, ''ନା ଦାଦା, ମୋ ଯୋଗୁଁ ତୁମକୁ ପୁଣି ଅପମାନିତ ହେବାକୁ ପଡ଼ିପାରେ ! ଠିକ୍ ଅଛି, ଥାଉ । ପିଲାମାନେ ବଡ଼ ହେଲେ ତାକୁ ଆସି ଭେଟିବେ । ମୁଁ ଆଉ ଯିବିନି । ଲୋକେ କହନ୍ତି, ସେ ଭଲରେ ଅଛି । ସେ ସୁଖରେ ରହୁ । ମୋର ଏତିକି କାମନା ।''

ନିରୁଦା' ଦେଇଥିବା ଫୋନ୍ ନମ୍ବରବାଲା କାଗଜ ଟୁକୁଡ଼ାକୁ ରଖିବାଲାଗି ଘର ଭିତରକୁ ଯାଇ ଦେଖିଲି, ମା' ବସିଛି; ବାପା ଶୋଇଛନ୍ତି । ମା'କୁ କହିଲି, ''ସନ୍ଧ୍ୟା ହେବାକୁ ବସିଲାଣି । ବାପା ଏ ଯାଏଁ ଉଠି ନାହାନ୍ତି । ତାଙ୍କୁ ଉଠିବାକୁ କହ ।'' ସେ ସେଇଠି ବସି ବସି ବାହାରେ ଖେଳୁଥିବା ଛୁଆଙ୍କୁ ଡାକିଲା । ''କେହି ଜଣେ ଆସି ଦୀପ ଜଳେଇ ଦିଅ ।'' ନିରୁଦା' ଦେଇଥିବା କାଗଜକୁ ବେଗ୍‌ରେ ରଖିଲା ବେଳେ ଡାକ୍ତର ଟୋକାର ଡାଏରୀ ଆଖିରେ ପଡିଲା । ତାକୁ ଫେରାଇବା କଥା ମୋ ମନରୁ ଚାଲିଯାଇଥିଲା । ଡାଏରୀ ନେଲି । ବାପା-ମା'ଙ୍କୁ ନ ଜଣାଇ ଡାକ୍ତରକୁ ଭେଟିବାକୁ ବାହାରିଗଲି । ଗଲା ବେଳେ କେବଳ ନିରୁଦା'ର ସ୍ତ୍ରୀକୁ ଜଣେଇଲି । ରାସ୍ତାରେ ପ୍ରାୟ ପ୍ରତ୍ୟେକ ଘରେ ସନ୍ଧ୍ୟା ଦୀପ ଜଳିବା ଆରମ୍ଭ ହୋଇଗଲାଣି, ସ୍ତ୍ରୀମାନେ ହୁଳହୁଳି ଦେଉଥାନ୍ତି, ଘରେ ଘରେ ଶଂଖ ବାଜୁଥାଏ ।

ମତେ ଦେଖି ଡାକ୍ତର ଟୋକା କହିଲା, ''ଆସ, ପିଇସୀ । ବସ ! କଲିକତାରେ କେମିତି କଟିଲା । ମୁଁ ତ ତୁମ କଥା ଭାବୁଥିଲି ।'' ମୁଁ କହିଲି, କ'ଣ କହିବି ! ମୁଁ ତ କେବେ ଭାବି ନ ଥିଲି ଯେ ମତେ ଏତେ ସମ୍ମାନ ମିଳିବ ।'' ସେ କହିଲା, ''ବୁଝି ପାରିଲିନି ।'' ମୁଁ କହିଲି, ''ମୋ ବହିରେ କ'ଣ ଅଛି, ସେ କଥା ମୁଁ ବି ଜାଣିନି । ତାକୁ ପଢ଼ି ଏତେ ଲୋକ ପସନ୍ଦ କରିବେ, ଏହା କଳ୍ପନା

ସୁଦ୍ଧା କରି ନ ଥିଲି । ଜାଣୁ, ସ୍କୁଲ କଲେଜରେ ପାଠ ପଢୁଥିବା ତୋ'ଠାରୁ କମ୍ ବୟସର ପିଲା ବି ତାକୁ ପଢ଼ିଛନ୍ତି, ପସନ୍ଦ କରିଛନ୍ତି ? ମୁଁ ଯାହାଙ୍କୁ ଜେଠୁ କହେ, ତାଙ୍କ ଘରେ କଲିକତାରେ ରହିଲି । ସେ କେତେ ଲୋକଙ୍କ ସାଙ୍ଗରେ ମତେ ଭେଟାଇ ଦେଲେ, ଆଉ ଦିନ ଭିକ୍ଟୋରିଆ ମେମୋରିଆଲ୍ ମୈଦାନ ଆଉ ଆଖପାଖର କେତେ ଜିନିଷ ଦେଖି ସନ୍ଧ୍ୟାରେ ତାଙ୍କ ସହିତ ପୁସ୍ତକ ମେଳାକୁ ଯାଇଥିଲି । ମେଳାରେ ଭିଡ଼ ହୁଏ ଏହା ସତ । ମାତ୍ର ପୁସ୍ତକ ମେଳାରେ ଲୋକଙ୍କର ଏତେ ଭିଡ଼ ହେଉଥିବ, ଏହା କଳ୍ପନା କରି ହେବନି । କେତେ ବହି ସେଠି ! କିଣିବା ଦେଖିବାଲାଗି କେତେ ଲୋକ ! ଏମିତିରେ ବର୍ଷ ସାରା ଲୋକ କିଛି ନା କିଛି ବହି କିଣୁଥାନ୍ତି । ମାତ୍ର ପୁସ୍ତକ ମେଳା କଥା ଅଲଗା । ମେଳାର ସମୟ ଯଦି ପାଖେଇ ଆସିଲାଣି, ଲୋକ ବହି କିଣିବାକୁ ମେଳା ଯାଏ ଅପେକ୍ଷା କରନ୍ତି । ସାଙ୍ଗରେ ବଡ଼ ସାନ ଲେଖକମାନଙ୍କୁ ବି ମେଳାରେ ଭେଟି ହେବ । ପୁସ୍ତକ ମେଳାରୁ କେହି ଖାଲି ହାତରେ ଫେରୁ ନଥିଲେ । ଏହା ଦେଖି ଭାରି ଖୁସି ଲାଗିଲା । ସମସ୍ତଙ୍କ ହାତରେ ବହି ଭର୍ତ୍ତି ବେଗ । ପୁସ୍ତକ ମେଳା ଦେଖି ସାରି ମୁଁ କାଂଚରାପଡ଼ା ଚାଲିଗଲି । ସେଠୁ ଆଜି ଫେରିଲି ।''

ସେ କହିଲା, ''ଆରେ ସେଠୁ ଆମ ଘର ବେଶି ଦୂର ନୁହେଁ । ମାତ୍ର ଅଳ୍ପ କେତେ ଘଣ୍ଟାର ବାଟ ।''

ହଠାତ୍ ମୋର ଡାଏରୀ କଥା ମନେ ପଡିଲା । କହିଲି, ''ନେ ରଖ ତୋ ଡାଏରୀ । ମୁଁ ସେଠି କେତେ ଲୋକଙ୍କୁ ଏହା ଦେଖାଇଲି । କେହି ତୋ କବିତାକୁ ନାପସନ୍ଦ କରିନାହାନ୍ତି । ସମସ୍ତଙ୍କୁ ଭଲ ଲାଗିଛି । ହଁ ଏକଥା ସତ ଯେ, ସବୁ କବିତା ପ୍ରେମକୁ ନେଇ । ନା କ'ଣ ? ସମସ୍ତଙ୍କର ତ ଏଭଳି ଅନୁଭବ ନଥାଏ । ତୁ ତୋ ନିଜ ଦୁଃଖ ଦରଦ କଥା କବିତାରେ କହିଛୁ । ତତେ ତାହା ଭଲ ଲାଗିବ । ହୁଏତ ମତେ ବି ଭଲ ଲାଗିପାରେ । ମାତ୍ର ଅନ୍ୟ ସମସ୍ତଙ୍କୁ ସେସବୁ ଭଲ ଲାଗିବ ବୋଲି କିଛି ମାନେ ନାହିଁ । ଏହାର ଅର୍ଥ ନୁହେଁ ଯେ ତୁ କବିତା ଲେଖା ବନ୍ଦ କରି ଦେବୁ । ଛାପିବା ନ ଛାପିବା କଥା ଚିନ୍ତା କରନା । କେବଳ ଲେଖି ଯା ।'' ମୋ କଥା ଶୁଣି ତା' ମୁହଁ ଶୁଖି ଗଲା । ସାମାନ୍ୟ ଉତ୍ସାହ ଦେଇ କହିଲି, ''ତୋ' କବିତା ଯଦି ଛପୁନି, ତା'ର ଅର୍ଥ ନୁହେଁ ଯେ କବିତା ଭଲ ନୁହେଁ । ପରେ ପୁଣି ପ୍ରକାଶିତ ବି ହୋଇପାରେ । ତୁ କେତେ ବହି ପଢ଼ିଛୁ, ଦେଖିଛୁ । କହୁନୁ ତା' ଭିତରୁ କେତୋଟି କ'ଣ ଖରାପ ବହି ନୁହେଁ ? ସେମିତି ବହି ନ ଥିଲେ କ'ଣ ଭଲ ଖରାପ ମଧ୍ୟରେ ପାର୍ଥକ୍ୟ ଜାଣି ହୁଅନ୍ତା ? ଆଗରୁ ମୁଁ ଜାଣି ପାରୁନଥିଲି । ହେଲେ ଲେଖିବା ଲାଗି ସୁଖ-ଦୁଃଖ, ହସ-କାନ୍ଦ, ସବୁ ଦରକାର । ଏବେ ବୁଝୁଛି ମୁଁ ଏକଥା । ତୁ ତ କହୁଥିଲୁ ସେଦିନ, 'ପିଇସୀ ତମେ ବହୁତ କଷ୍ଟ ଭୋଗିଛ । ସେଥିପାଇଁ ଏ ସବୁ ଲେଖିପାରୁଛ ।' ମୁଁ ଦୁଃଖ ଭୋଗିଛି, ଏବେ ସୁଖ ଦେଖୁଛି । କ'ଣ ତା' ବୋଲି ମୋର ସେହି ଦୁଃଖର ଦିନକୁ ଭୁଲିଯିବି ? ପୁଣି ହୁଏତ ତାହା ଫେରି ଆସିପାରେ ! ଠିକ୍ କରି ମୁଁ କହି ପାରିବିନି । ହେଲେ ମୋ ବହିରେ ବୋଧହୁଏ ଏସବୁ କଥା ରହିଛି, ଯାହାଲାଗି ବହି ପାଠକଙ୍କୁ ଭଲ ଲାଗୁଛି । ଆଉ ଲେଖିବାଲାଗି ଏହା ମତେ ଉତ୍ସାହ ଦେଉଛି । ମତେ ଯେମିତି ଅନ୍ୟମାନେ କହନ୍ତି, ମୁଁ ତତେ କହୁଛି, ''ଛାପା କଥା ମନକୁ ଆଣନା । ଲେଖିଚାଲ । ନିଜ ମନ କଥା କାହାକୁ ଶୁଣାଇଲେ, କେତେ ଜଣ ମାତ୍ର ଲୋକଙ୍କ ପାଖରେ ତାହା ପହଞ୍ଚେ, ଅଥଚ ସେହି କଥାକୁ କାଗଜରେ ଲେଖିଦେଲେ ସଭିଙ୍କ ପାଖକୁ ପହଞ୍ଚିଯାଏ । ଛାଡ଼, କେତେ କଥା କହିଲିଣି

ମୁଁ ?'' ଡାକ୍ତର କହିଲା, ''ତୁମେ ଠିକ୍ କହୁଛ, ତୁମ କଥା ଓ ମୋ କଥା ଶୁଣିବାକୁ ଆମ ଭଳି ଲୋକ ଆଗ୍ରହ ରଖିବେ ଏବଂ ଏଭଳି ଲୋକଙ୍କ ସଂଖ୍ୟା କିଛି କମ୍ ନୁହେଁ ।

ଅନ୍ୟମାନଙ୍କୁ ନିଜ କଥା ଜଣାଇବାର କ'ଣ ବା ଦରକାର ? ପୁଣି ଆଉ କେହି କିଛି କରନ୍ତୁ ବା ନ କରନ୍ତୁ, ଆମେ ପରସ୍ପର ଭିତରେ ଏସବୁ ଚର୍ଚ୍ଚା ଜାରି ରଖିଲେ କ୍ଷତି କ'ଣ ?'' ସାମାନ୍ୟ ନୀରବତା ପରେ ସେ ପଚାରିଲା, ''ଆଚ୍ଛା, ପିଇସୀ, ଏ ତାତୁସଟା କିଏ ?'' ଭାବିଲି ଏବେ କହି ବସିବି ଯଦି କଥା ସରିବନି । ତେଣୁ କହିଲି, ତାତୁସ କିଏ ସେକଥା ମୋ ବହିରୁ ତତେ ଜଣା ପଡିଯିବ । ମୁଁ ଏବେ ଯାଏ, ଅନେକ ଡେରି ହେଲାଣି । ପିଲାମାନେ ମତେ ଖୋଜୁଥିବେ ।'' ସେ କହିଲା, ''ପୁଣି କେବେ ଆସିବ ?'' ମୁଁ କହିଲି, ''କେବେ ଆସିବି ତା' କହିହେବ ନାହିଁ । ଚାରି ବର୍ଷ ପରେ ଏଥର ଆସିଥିଲି । ଯାହାକୁ ଭେଟିବାକୁ ଇଚ୍ଛା ଥିଲା, ଦୂରତାଯୋଗୁଁ ଭେଟି ହେଲାନାହିଁ । ଆସନ୍ତା ଥରକୁ ଦେଖାଯିବ ।'' ସେ କହିଲା, ''ଏଠି ଏଭଳି ଗପସପ କରିବାକୁ ଲୋକ ମିଳନ୍ତି ନାହିଁ । ତୁମ ସହ ଦୁଇଦିନ କଥାବାର୍ତ୍ତା କରି ଖୁବ୍ ଭଲ ଲାଗିଲା ।'' ମୁଁ କହିଲି, ''ଏଭଳି ଲୋକ ମିଳିବେ କେମିତି ? ଯାହାକୁ ଦେଖ କ୍ଷେତ, ବାଡ଼ିରେ ଲାଗିଛନ୍ତି । ସେମାନଙ୍କ ପାଖରେ ସମୟ କାହିଁ ? ଅବଶ୍ୟ ଖୋଜିଲେ, ସେମାନଙ୍କ ମଧ୍ୟରେ ବି କିଛି ଲୋକ ମିଳି ଯାଇପାରନ୍ତି, ଯାହା ସାଙ୍ଗରେ ଏଭଳି ଗପସପ କରିହେବ । ଠିକ୍ ଅଛି । ମୁଁ ଆସୁଛି । କାଲି ସକାଳେ ଯିବି । ହୁଏତ ଭେଟ ହୋଇ ନପାରେ ।''

ମୁଁ ଘରକୁ ଫେରୁଛି, ରାସ୍ତାରେ ନିରୁଦା'ର ମଝିଆଁ ଝିଅ, ଯାହାକୁ ଆଗରୁ ମଁ ବଡ଼ ଝିଅ ବୋଲି କହୁଥିଲି, ଦୌଡ଼ି ଦୌଡ଼ି ଆସୁଥାଏ । ମୋ ପାଖରେ ପହଞ୍ଚି ସେ ଅଣନିଃଶ୍ୱାସୀ ହୋଇ କହିଲା, ''ପିଇସୀ, ତୁମେ ଏଠିକି ଆସିଛ ବୋଲି କ'ଣ କାହାକୁ କହିଥିଲ ? ମୁଁ କହିଲି, ''ହଁ, ତୋ ମା'କୁ କହିଥିଲି । କ'ଣ ହେଲା ?'' ସେ କହିଲା, ''ଚାଲ, ଦେଖିବ । ଦାଦା-ଦାଦୀ କେମିତି ତୁମକୁ ଘରେ ନ ପାଇ ଝଗଡ଼ା କରୁଛନ୍ତି ।'' ଅନ୍ଧାର ରାସ୍ତାରେ ଶୀଘ୍ର ଶୀଘ୍ର ପାଦ ବଢ଼ାଇ ଯେତେ ଜଲଦି ଘରେ ପହଞ୍ଚିବାକୁ ଚେଷ୍ଟା କଲି । ଭାବୁଥାଏ, ଏବେ କୋଉ ନୂଆ ବିପତ୍ତି ଆସି ପହଞ୍ଚିଲାଣି ! ଏମିତିରେ ମୁଁ ମଲି ହଜିଲି, କେହି ଖବର ରଖନ୍ତିନି । ଆଉ ଆଜି ଗୋଟାଏ ମିନିଟ୍ କୁଆଡ଼େ ନ ଯାଉଣୁ, ଆକାଶ ଫାଟି ପଡୁଛି ।

ଘରେ ପହଞ୍ଚି ଦେଖିଲି- ମା, ବାପା, ନିରୁଦା ଆଉ ପଡ଼ାର ଦୁଇଜଣ ଲୋକ ଅଗଣାରେ ବସି ଗପସପ କରୁଛନ୍ତି । ନିରୁଦା'ର ସ୍ତ୍ରୀ ରନ୍ଧାବଢ଼ାରେ ଲାଗିଥାଏ । ମୁଁ ତା' ପାଖରେ ଯାଇ ବସିଗଲି । ବାପା ଅଗଣାରେ ଥାଇ ମତେ ପଚାରିଲେ, ''କୁଆଡ଼େ ଯାଇଥିଲୁ ?'' ମୁଁ କହିଲି, ''ସେହି ଡାକ୍ତର ପାଖକୁ । କ'ଣ ହେଲା କି ?''

ବେବି ଏବେ ନିଡ଼ର ହୋଇ କାହାରି ସହ ବି କଥାବାର୍ତ୍ତା କରିପାରୁଛି । ଯେଉଁଠି ଇଚ୍ଛା ଯା-ଆସ କରି ପାରୁଛି । ତାକୁ ଜଣା ଭଲ କ'ଣ, ଖରାପ କେଉଁଠି ? ବାପାଙ୍କ ପ୍ରଶ୍ନର ସେ ସିଧାସିଧା ଜବାବ ଦେଇ ପାରୁଛି । ବାପା ବି ଜାଣନ୍ତି, ଆଗର ସେ ବେବି ଆଉ ନାହିଁ । ବାପାଙ୍କ ଆଖିରେ ଆଖି ମିଳାଇ ସେ କଥା କହି ପାରିବ । ତେଣୁ ବେବିର ଜବାବ ଶୁଣି ବାପା ନରମିଯାଇ କହିଲେ,

''ମୁଁ ବ୍ୟସ୍ତ ହେଉଥିଲି, କାରଣ ତୋ ପିଲାମାନେ ତୋ କଥା ପଚାରୁଥିଲେ ।'' ବାପାଙ୍କ କଥା ଶୁଣି ନିରୁଦାର ସ୍ତ୍ରୀ ମୋତେ ଅନାଇ ହସିଲା । ବାପା ସତ କହୁ ନଥିଲେ- ଏହା ଜଣାପଡ଼ି ଗଲା । ବାପା ଏମିତି କାହିଁକି କୁହନ୍ତି । କ'ଣ ତାଙ୍କର ଇଚ୍ଛା ଯେ ଅଧିକରୁ ଅଧିକ ସମୟ ମୁଁ ତାଙ୍କ ପାଖରେ ବସେଁ ? ମୋର ବି ଇଚ୍ଛା ଯେ ସେ ଦୁହିଁଙ୍କ ସହିତ କିଛି ବେଳ ବସି ଗପସପ କରିବି । ହେଲେ ତା' ହେଇ ପାରେନା । ପୁରୁଣା କଥାକୁ ନେଇ ମା' ତା'ର ରାଗ ଶୁଝେଇବା ଆରମ୍ଭ କରିଦିଏ । ତାର ପରିବାରକୁ କିଏ ଧ୍ୱଂସ କଲା- ତା'ର ନାଁ ନେଇ, ସେ ଅଭିଶାପ ଦେବା ଆରମ୍ଭ କରେ । ''ରକ୍ତ ବାନ୍ତି କରି ମରୁ ସେ ।'' ଏଥିରେ କ'ଣ ବା ଗପସପ କରି ହେବ ? ମୁଁ ଶୀଘ୍ରାତିଶୀଘ୍ର ତାଙ୍କ ପାଖରୁ ଉଠି ଚାଲି ଆସେ ।

ନିରୁଦା' ମଧ୍ୟ ମୋ ପାଖରେ ଆସି ବସିଲା । ନିରୁଦା'ର ସ୍ତ୍ରୀ ତା'ହାତରେ ଗିନାଏ ତରକାରି ଦେବାରୁ ମୁଁ କହିଲି, ''କ'ଣ ସେ କେବଳ ତରକାରି ଖାଇବ । ଦାଦା, ଭାତ ଖା ।'' ନିରୁଦା'ର ସ୍ତ୍ରୀ କହିଲା, ''ସେ ଭାତ ଖାଇବା ଆଗରୁ ତରକାରି ଖାଇବାକୁ ଭଲ ପାଏ ।'' ଭାବିଲି, ନିରୁଦା' ମୋ ଭଳି କେବଳ ତରକାରି ଖାଇବାକୁ ଖୁବ୍ ପସନ୍ଦ କରେ । ନିଜ କ୍ଷେତର ପରିବାକୁ ତା'ର ବେଶି ପସନ୍ଦ । ନିରୁଦା'ର ସ୍ତ୍ରୀ ମୋ ମନ କଥା ହୁଏତ ଅନୁମାନ କରିନେଲା । ମତେ ବି ଗିନାଏ ତରକାରି ଦେଲା ସେ । ଗିନାକୁ ହାତରେ ଧରି ମୁଁ ଚାମଚଟିଏ ଖୋଜିବାକୁ ଏପଟ ସେପଟ ହେଲି । ସେଠି ଚାମଚ ମିଳିବ କୁଆଡୁ ? ନିରୁଦା'ର ମଝିଆଁ ଝିଅ ମୋର ଦୁଃସ୍ଥିତି ଦେଖି ବୁଝିଗଲା । କହିଲା, ''ରହ, ମୁଁ ଦେଖେ । ଚାମଚ ଥାଇପାରେ !'' ସେ କେଉଁଠୁ ଚାମଚଟିଏ ଆଣି ତାକୁ ଧୋଇ ମୋ ହାତରେ ଦେଲା ।

ରାତିରେ ଖାଇବା ସମୟ ହେଲା । ମା' ଓ ବାପା ତାଙ୍କ ଲାଗି ମଦ ଆଣିବାକୁ ଚାହୁଁଥିଲେ । ବାପା ଯାଇନପାରିବେ ବୋଲି ନିରୁଦା' ସାଇକଲର ଚାବି କେଉଁଠି ଲୁଚେଇ ରଖିଥିଲା । ବାପା ଯା'କୁ ତାକୁ ଚାବି କଥା ପଚାରୁଥିଲେ । ମା' ତାଙ୍କୁ ମଝିରେ ମଝିରେ ବିଦ୍ରୂପ କରି କହୁଥାଏ । ସେ ଜାଣେ, ବାପା ତା' କଥା ଶୁଣି ରାଗିବେ । ତା'ପରେ ରାଗରେ ଯାଇ ବୋତଲ ଆଣିବେ । ଶେଷରେ ତାହା ହିଁ ହେଲା । ବାପା ରାଗି ଯାଇ କହିଲେ, ''ଚାବି ଦେ । ନୋହିଲେ ସାଇକଲକୁ ଭାଙ୍ଗି ଦେବି ।'' ନିରୁଦା' ତାଙ୍କୁ କହିଲା, ''ଏବେ କୁଆଡ଼େ ଯିବ, ରନ୍ଧା ସରିଲାଣି । ଖାଅ ଆଉ ଶୋଇପଡ଼ ।'' ବାପା ମାନିଲେ ନାହିଁ । ସାଇକଲକୁ ଉଠାଇ ତଳେ କଚାଡ଼ି ଦେଲେ । ନିରୁଦା'କୁ ଏହା ଦେଖି ବହୁତ ଖରାପ ଲାଗିଲା । ବାପାଙ୍କ ଆଗକୁ ଚାବି ଫିଙ୍ଗିଦେଇ କହିଲା, ''ନେ ଆଉ ମର । ଅନ୍ଧାରରେ କେଉଁଠି ପଡ଼ି ମରିବୁ । ଯାଆ, ପି' ଆଉ ମର ।'' ବାପା ଚାବି ନେଇ ବିରକ୍ତ ହୋଇ କହିଲେ, ''ମୋର ମରିବାରେ କାହାରି କିଛି ହେଉ ନ ହେଉ, ଜଣେ ଭାରି ଶାନ୍ତି ପାଇବ ।'' ଏହା କହି ସେ ସାଇକଲରେ ବାହାରକୁ ବାହାରି ଗଲେ । କାହାକୁ ଇଂଗିତ କରି ସେ ଏକଥା କହୁଥିଲେ, ତାହା ସମସ୍ତେ ବୁଝିପାରୁଥିଲେ । ନିରୁଦା'ର ସ୍ତ୍ରୀ ଇସାରାରେ ମତେ କହିଲା, ''ସେ ତାକୁ ପଠେଇଛି । ନୋହିଲେ ତୋ' ବାପା ଏବେ ଯାଇ ନଥାନ୍ତା ।'' ମୁଁ କହିଲି, ''ତା' କ'ଣ ମୁଁ ବୁଝୁନି । ହେଲେ କିଛି କହନା । ଶୁଣିବ ଯଦି ତୋ ଉପରେ ବର୍ଷି ଯିବ ।'' କହିଲା, ''ସତ କଥା । ତୁ ଦେଖିଲୁ ତ । ଦୁଇ

ପହରେ ମୁଁ କ'ଣ କହିଲି ଯେ ମତେ କେତେ ଅଭଦ୍ର ଭାଷାରେ ବୁଢ଼ୀ କ'ଣ ସବୁ କହିଗଲା । ମୁଁ ଦୁଷ୍ଟ, ଅନ୍ୟର ଘର ଭାଙ୍ଗେ, କେବେ ମୋର ସୁଖ ହେବନି । କେତେ କଥା ।'' ମୁଁ ପୁଣି କହିଲି, ''ଚୁପ୍ କର । ତା' କାନ ଆମ ଆଡ଼େ ।'' ମୁଁ ଏତିକି କହିଛି, ଘର ଭିତରୁ ମା' ପାଟି କଲା, ''ହଁ ହଁ, ଯାହା ଇଚ୍ଛା କହ ! ମୋର ନିନ୍ଦା କଲେ ଶାନ୍ତି ପାଇବ ଯଦି କର । ହେଲେ ଏତିକି ଜାଣିଥା, ଉପରେ ଭଗବାନ ଅଛି, ସବୁ ଦେଖୁଛି ସେ ।'' ତରରେ ସମସ୍ତେ ଚୁପ୍ ପଡିଗଲେ । ପୁଣି ମୋତେ ହସିବାର ଦେଖି ସମସ୍ତେ ଫେଁ କରି ହସି ପକାଇଲେ । ମା' ଆହୁରି ରାଗି ଯାଇ କହିଲା, ''ମୋର ମଜାକ ଉଡୋଉଛ ? ମୁଁ କ'ଣ ପାଗଳ ? ମୋ କଥାକୁ ନେଇ ସଦାବେଳେ ତୁମେ ଏତେ ହସି-ମଜାକ କର କାହିଁକି ?'' ମୁଁ ପିଲାଙ୍କୁ ଗାଳି କରି ଚୁପ୍ କରାଇଲି । ମା'କୁ କହିଲି, ''ଛୁଆମାନେ ତୋର ଟିକେ ମଜାକ କଲେ ତ କ'ଣ ହେଇଗଲା ? ତୁ ପରା ସେମାନଙ୍କ ଆଈ !'' ମା' କହିଲା, ''ତୁ ମତେ ଆଉ ସେ ପାଠ ପଢ଼ାନା । ମତେ ସବୁ ଜଣା ।'' ନିରୁଦା'ର ମଝିଆଁ ଝିଅ କହିଲା, ''ଆଈ, ତୁ ଏଠିକି ଆ । ଆମ ସାଙ୍ଗରେ ବସ୍ । ହସ ଖୁସି କର । ତୁ ଘର ଭିତରେ ରହିବୁ ଯଦି ସବୁ କଥା ଠିକ୍‌କରି ଶୁଣିବୁ କେମିତି ? ତୋ କଥା ପଡ଼ିଛି ନା ଆଉ କିଛି- ନ ବୁଝି ଅଯଥାରେ ରାଗୁଛୁ । ଆ, ବାହାରକୁ ଆ ।'' ମୁଁ ତାକୁ ବି ଚୁପ୍ ରହିବାକୁ କହିଲି ।

ନିରୁଦା'ର ସ୍ତ୍ରୀ ପିଲାଙ୍କୁ ଖାଇବାକୁ ପିଇବାକୁ ଦେଇ ସେମାନଙ୍କର ଶୋଇବାର ବ୍ୟବସ୍ଥା କରି ଦେଲା । ବାପା ଆସିଲେ ସମସ୍ତେ ଏକା ସାଙ୍ଗରେ ବସି ଖାଇବେ ବୋଲି ଆମେ ଅପେକ୍ଷା କଲୁ । ବାପାଙ୍କ ଆସିବାରେ ଡେରି ହେବାରୁ ମତେ ସେ କହିଲା, ''ଚାଲ । ତୋ' ହାତ ଥରେ ମାଲିସ କରେଇ ଆଣିବା ।'' ବାପାଙ୍କ ଅପେକ୍ଷାରେ ମା' ବସିଥାଏ; ନିରୁଦା ବାରଣ୍ଡାରେ ବସି ନିଦରେ ଝୁମୁରୁ ଥାଏ । ମୁଁ କହିଲି, ''ଦାଦାକୁ ଖାଇବାକୁ ଦେଇ ଦିଅ । ତା'ପରେ ଯିବା ।'' ନିରୁଦା କହିଲା, ''ତୁମେ ସେଠୁ ଆସ । କାକା ବି ଆସିଥିବ । ସମସ୍ତେ ଏକା ସାଙ୍ଗେ ବସି ଖାଇବା ।''

ମାଲିସପାଇଁ ଯାଇ ଦେଖିଲୁ,ସେଠି ସମସ୍ତେ ଶୋଇ ଗଲେଣି । ଦିନସାରା ପରିଶ୍ରମ । ସକାଳେ ବଡ଼ ଶୀଘ୍ର ଉଠିବାକୁ ହେବ । ଲୋକେ ଥକି ଯାଇ ସନ୍ଧ୍ୟା ନହେଉଣୁ ଶୋଇପଡ଼ନ୍ତି । ନିରୁଦା'ର ସ୍ତ୍ରୀ ବାହାରୁ ଡାକ ଦେଲା, ''ଖୁଡୀ ଏ ଖୁଡୀ । ଶୋଇ ପଡିଲ କି ?'' ସେ କହିଲା, ''ନା, ତୁମମାନଙ୍କ ଲାଗି ଅପେକ୍ଷା କରିଛି । ଏ ଯାଏ ବସିଥିଲି । ଡେରି ହେବାର ଦେଖି ଏବେ ଦୀପ ଲିଭେଇଲି । ଭାବିଲି, ତୁମେ ଆଉ ଆସିବନି । ମାଲିସ ନ କଲେ ଝିଅର ଦରଜ ବଢ଼ିଯିବ । ଭଲ ହେବାକୁ ସମୟ ଲାଗିବ । କାଲି ପୁଣି ସେ ଯିବ । ରହ, ଦୀପ ଜାଳୁଛି ।''

ଆଲୁଅ ହେଲାରୁ ନିରୁଦା'ର ସ୍ତ୍ରୀ ତେଲ ଗିନାକୁ ତା' ଆଗରେ ରଖି ଦେଲା । ହାତ ମାଲିସ କରୁ କରୁ ସେ କହିଲା, ''ତୁ ତୋର ବାପା ପାଖକୁ ଆସିଲୁ ଯେ ସେ ତତେ କ'ଣ କିଛି ଦେଲା ?'' ନିରୁଦାର ସ୍ତ୍ରୀ ମୋତେ ଅନାଇଲା । ମୁଁ କିଛି ନ କହିବାର ଦେଖି କହିଲା, ''ସେ ଆଉ କ'ଣ ଦେବ ! ଯାହା ଦେବା କଥା ଦେଲା, ଯାହା ନ ଦେବା କଥା ବି ଦେଲା ।'' ସୋନାର ମା' କହିଲା, ''ଇଏ କୋଉ କଥା ମ ! ଏତେ ଦିନ ପରେ ଝିଅ ଆସିଛି, ନାତି ନାତୁଣୀ ଆସିଛନ୍ତି, କିଛି କ'ଣ ଦେବା କଥା ନୁହେଁ ?'' ନିରୁଦା'ର ସ୍ତ୍ରୀ କହିଲା, ''ନ ଦେଲେ କ'ଣ ହେଇଯିବ ? ଯା' ପାଖରେ

କ'ଣ ବା ନାହିଁ ଯେ ?'' ମୋତେ ଡର ମାଡ଼ିଲା । କଥା କଥାରେ ତୁଣ୍ଡରୁ ଆଉ କ'ଣ ବାହାରି ନ ଯାଉ । ନିରୁଦା'ର ସ୍ତ୍ରୀକୁ କହିଲି, ''ଆମେ ଏବେ ଯିବା କଥା । ଅନେକ ଡେରି ହେଲାଣି । ପୁଣି, କାହାରି ଖିଆ-ପିଆ ବି ହୋଇନି ।'' ସୋନାର ମା' କହିଲେ, ''ଏଯାଏ ଖିଆପିଆ ସାରିନ । ତାହେଲେ ଯାଅ ।''

ଘରେ ଯାଇ ଦେଖିଲୁ, ନିରୁଦା' ବସିବା ଜାଗାରେ ଶୋଇ ପଡିଛି । ମା-ବାପା ଭିତରେ କଥାବାର୍ତ୍ତା କରୁଛନ୍ତି । ବାପା କହୁଥାନ୍ତି, ''ଲାଗୁଛି, ଆଜି ବି ଆମର ଖାଇବା ହେବନି ।'' ମା' କହିଲା, ''ଖାଇବା ବେଳେ ବି ସେମାନେ ମତେ ଡାକିଲେନି । ବେବି ମଧ୍ୟ କିଛି କହିଲାନି ।'' ତାଙ୍କ କଥା ଶୁଣି ଆମକୁ ହସ ମାଡୁଥାଏ । ନିରୁଦା'ର ସ୍ତ୍ରୀ ବାପାଙ୍କ ପାଖକୁ ଯାଇ କହିଲା, ''ଏକା ସାଂଗରେ ବସି ଖାଇବା ଭାବି କେହି ଏ ଯାଏ ଖାଇନାହାନ୍ତି, ଶୋଇ ନାହାନ୍ତି । ତୁମ ଆସିବାରେ ଡେରି ହେବାର ଦେଖି ତୁମ ପୁଅ ବସି ବସି ହାଇ ମାରୁଥିଲା ।'' ବାପା କହିଲେ, ''ଆରେ ସେମିତି କଥା ? ମୁଁ ଏସବୁ ଜାଣି ନଥିଲି । କାହାରି କଥାବାର୍ତ୍ତା ନ ଶୁଣିବାରୁ ଲାଗିଲା ସମସ୍ତେ ଶୋଇଗଲେଣି ।'' ନିରୁଦା'ର ସ୍ତ୍ରୀ କହିଲା, ''ଯେଉଁ ଦିନ ସମସ୍ତଙ୍କ ଲାଗି ଏକାଠି ରନ୍ଧା ହୋଇଛି କେବେ ଦେଖିଛ, ଆମ ଭିତରୁ କେହି ତୁମକୁ ଛାଡ଼ି ଭାତ ଖାଇଛି ?'' ବାପା କହିଲେ, ''ସତ କଥା । ଚାଲ, ଭାତ ବାଢ଼ ।''

ନିରୁଦା' ମଧ୍ୟ ଖାଇବାଲାଗି ଉଠିଲା । ବାପାଙ୍କ ଥାଳିରେ ସବୁ ଥିଲା, ମାଛ ନ ଥିଲା । ମାଛ ବିନା ତାଙ୍କର ଚଳେନା । ସେ ପଚାରିଲେ, ''ବୋହୂ, ସକାଳେ ମାଛ ଆଣିଥିଲି ନା ?'' ନିରୁଦା'ର ସ୍ତ୍ରୀ କହିଲା, ''ଏତେ ଛୁଆଙ୍କ ଭିତରେ ମାଛ କ'ଣ ଆଉ ରହିବ ? ସକାଳେ ପରା ସରିଗଲା ।'' ନିରୁଦା' କହିଲା, ''କାକାଙ୍କ ଲାଗି ଅଲଗା କରି ଟିକେ ରଖିପାରିଲୁନି ?'' ଭାଉଜ କହିଲା, ''ରଖିଥିଲି । ହେଲେ ଦୁଇ ପହରେ ବେବି ଆସିଲା । ତାକୁ ଦେଇଦେଲି ।'' ବାପା କହିଲେ, ''ପଚାରି ଦେଲି ବୋଲି କ'ଣ ଭୁଲ ହେଲା । ନାହିଁ ତ ନାହିଁ । ଛାଡ଼ । ଏତେ ସବୁ କାହାଣୀ କହିବାର କି ଦରକାର ? ଆଚ୍ଛା ନିରୁ, ତୁ ମତେ 'ତୁମେ' 'ତାଙ୍କର' ଆଦି ସଂବୋଧନ କରି କାହିଁକି କଥା କହୁ ? ମତେ କ'ଣ ତୁ ନିଜର ମନେ କରୁନା ? ସେମିତି ହେଇ ନଥିଲେ, ତୁ ସେଭଳି କହନ୍ତୁ ନାହିଁ ।'' ବାପାଙ୍କ ଦେଖା ଦେଖି ମା' ମଧ୍ୟ ମାଛ ଅପେକ୍ଷାରେ ଥିଲା । ଶେଷରେ ଯାହାହେଉ ଦୁହେଁ ଖାଇବା ସାରିଲେ । ନିରୁଦା'ର ସ୍ତ୍ରୀ ଖିରି ଆଣି ଆସିଲା । ଖିରି ଦେଖି ମା' ବିଦ୍ରୂପ କରି କହିଲା, ''ଏହା ଖିରିଟି ? ଇଏ କିଭଳି ଖିରି ମ ?'' ସେ ପ୍ଲେଟକୁ ଆଡ଼େଇ ଦେଲା । ଏସବୁ ଦେଖି ନିରୁଦା' ଆଉ ଭାଉଜ ବହୁତ ଖରାପ ଭାବିଲେ । ନିରୁଦା ଭାଉଜକୁ କହିଲା, ''ନ ଖାଇବେ ଯଦି ରଖିଦେ । ଆମ ପିଲାଏ ଖାଇବେ । ଏମାନେ ଭଲା ଏମିତି ଖିରି ଖାଇ ପାରିବେ ? ବଡ଼ ଲୋକ ସେମାନେ ! କିସମିସ୍ ନଡ଼ିଆ ପଡିଥିବ । ବାସୁମତୀ ଚାଉଳର ଖିରି ଖାଇବେ । ଆମେ ଗରିବ ଲୋକ । କୋଉଠୁ ପାଇବା ଏସବୁ ! ତାକୁ ଭଲ କରି କିଛି ଖାଇବାକୁ ଦେଇ ହେଲାନି । ତାପରେ ବି ଅଭିଯୋଗ ନ କରି ଲୋକ ଖାଇଲେ, ଭଲ ଲାଗେ ।'' ନିରୁଦା' ତା' ସ୍ତ୍ରୀକୁ କହିଲା, ''ବେବିକୁ ଖିରି ଦେଲୁନି ?'' ମୁଁ କହିଲି, ''ହଁ ଦାଦା, ମୁଁ ଖାଉଛି ପରା ।'' ଖିଆ-ପିଆ ସରିବା ପରେ ମତେ କହିଲା, ''ତୁ ଆମ

ଘରେ ଶୋଇ ଯା । ରାତି ସାରା ସେମାନେ କଚରକାଚର ହେବେ । ଶୋଇ ପାରିବୁନି । ଦେଖି, ତୋ ଗରିବ ଦାଦାର ବିଛଣାରେ ଶୋଇପାରିବୁ ନା ନାହିଁ ?''

ମୁଁ ତା' ବିଛଣାରେ ଶୋଇବାକୁ ଗଲି । ସତକୁ ସତ ବିଛଣାଟି ତେଲ ଚିକିଟା । ନିରୁଦା'ର ସ୍ତ୍ରୀ ତା' ଉପରେ ସଫା ଚାଦରଟିଏ ବିଛେଇ ଦେଲା । ମୋର ଛୁଆମାନେ ବାପା-ମା'ଙ୍କ ଖଟରେ ଶୋଇଗଲେଣି । ବାପା-ମା' ପାଟିତୁଣ୍ଡ କରି କରି ସେଠିକି ଗଲେ । ଭାଉଜ ଆଉ ମୁଁ ଶୋଇ ଶୋଇ ଗପସପ କରୁଥିଲୁ । ମୁଁ କହିଲି, ''ଆଚ୍ଛା ଭାଉଜ, ତୁମର ଏତେଗୁଡ଼ାଏ ପିଲା କେମିତି ହେଇଗଲେ ?'' ତୁମେମାନେ ଜାଣିନଥିଲ ପିଲାଙ୍କ ଭରଣ ପୋଷଣ କରିବା କଷ୍ଟକର ହେବ । ତା'ପୂର୍ବରୁ କିଛି ବ୍ୟବସ୍ଥା କଲନି ? ଆଜି କାଲି ତ କେତେ ବାଟ ବାହାରିଲାଣି । କିଛି ନ ହେଲେ ଅପରେସନ ହେଇଥାନ୍ତ ।'' ସେ କହିଲା, ''ଅପରେସନ ହେବାକୁ ମତେ ଭାରି ଡ଼ର । ପୁଣି, ଅପରେସନ୍ ପରେ ଘରର ଏତେ  କାମ ମୋ ଦ୍ୱାରା କ'ଣ ହେଇପାରିବ ? ତୋ ଦାଦା ଏତେ ପିଲାଙ୍କୁ ପୁଣି ଏକାଠି କ'ଣ ସମ୍ଭାଳି ପାରିବ ?'' ମୁଁ କହିଲି, ''ସେଇଟା କ'ଣ ଗୋଟେ ଚିନ୍ତାର ବିଷୟ ? ମୁଁ ବି ତ ଅପରେସନ ହେଇଛି ଆଉ ଏବେ ବିଲକୁଲ ଠିକ୍ ଅଛି ।'' ସେ କହିଲା, ''ଶୁଣିଛି, ଅପରେସନ ପରେ ଭଲ କରି ଖିଆପିଆ ହେବା କଥା, ନୋହିଲେ ଦେହ ଦୁର୍ବଳ ହୋଇପଡ଼େ ।'' ମୁଁ କହିଲି, ''ହଁ, ଆରମ୍ଭରେ କିଛି ଦିନ ଓଜନିଆ କାମ କରିବା କଥା ନୁହେଁ । ଆଉ ଖାଇବା କଥା ! ସମୟ ଅନୁସାରେ ଭୋଜନ ମିଳିଗଲେ ଦେହ ଶୀଘ୍ର ଭଲ ହୋଇଯାଏ । ପୁଣି, ସରକାରୀ ଡାକ୍ତରଖାନାରେ ଅପରେସନପାଇଁ ପଇସା ପଡ଼େନି । ବରଂ ଔଷଧ କିଣିବାଲାଗି କିଛି ପଇସା ମିଳେ । ମତେ ଡାକ୍ତରଖାନାରୁ ଯାହା ପଇସା ମିଳିଥିଲା, ସେତେବେଳେ ମତେ ଲାଗୁଥିଲା ଏହା ଖୁବ୍ ବେଶି । ଖୁସିରେ ତାକୁ ସମୟ ଅସମୟପାଇଁ ସାଇତି ରଖିବାକୁ ଚିନ୍ତା କରୁଥିଲି । ପିଲାଙ୍କ ପଢ଼ାରେ ଖର୍ଚ୍ଚ କରିହେବ । ତା'ପାଇଁ କିଛି କରିହେବ ।''

ଭାଉଜ ମୋ ପେଟରେ ହାତ ରଖି କହିଲା, ''ଆମର ଆଉ ପିଲାପିଲି ହେବେନି । କହିଲୁ କାହିଁକି ହେବେନି ? କେତେ ବର୍ଷ ହେଲା ଆମେ ପତିପତ୍ନୀ ଏକା ସାଂଗରେ ଶୋଇବା ବଂଦ କରି ଦେଲୁଣି । ପିଲାମାନେ ବଡ଼ ହେଲେଣି । କାଲି ସେମାନଙ୍କ ବାହାଘର ହେବ; ଆମର ନାତିନାତୁଣୀ ହେବେ । ଆମର ଏସବୁ କରିବା କ'ଣ ଭଲ ଲାଗିବ ? ଦଶବର୍ଷ ଆଗରୁ ତୋ ଭଳି କିଏ ବୁଦ୍ଧିବାଟ ଦେଇଥାନ୍ତା ଯଦି, ଏତେ ଗୁଡାଏ ଛୁଆ ଜନ୍ମ ହୋଇ ନଥାନ୍ତେ ।''

ନିରୁଦା'ର ସ୍ତ୍ରୀ କଥାବାର୍ତ୍ତା କରୁ କରୁ ଚୁପ୍ ହୋଇଗଲା । ଭାବିଲି, ଶୋଇଗଲା ବୋଧେ । କଡ଼ ବଦଳେଇ ମୁଁ ବି ଶୋଇବାକୁ ଚେଷ୍ଟା କଲି । ହେଲେ ଆଖିକୁ ନିଦ ଆସୁନଥାଏ । ତାକୁ ପଚାରିଲି, ''ଶୋଇଗଲ କି ଭାଉଜ ?'' ସେ କେବଳ 'ଉଁ ହୁଁ' କଲା । ମୁଁ କହିଲି, ''ଜାଣିଲ ଭାଉଜ, ଥରେ କ'ଣ ହେଲା ? ମୋ କୋଳରେ ସାନଛୁଆ । ତଥାପି ମୁଁ କାମ କରିବାକୁ ଘରୁ ବାହାରେ । କାମର ବୋଝରେ ମୋ ପେଟର ଅପରେସନ୍ ଜାଗା ପାଚିଗଲା । ମୁଁ ମୋର ପତିକୁ କହିଲି । ସେ ଡ଼ରି ଯାଇ ମତେ ଡାକ୍ତର ପାଖକୁ ଯିବାକୁ କହିଲା । ବୁଝିଲ ଭାଉଜ, ସେ ସର୍ବଦା ଖରାପ ନଥିଲା । ତା' କଥା ମନେ ପଡିଲେ, ଥରେ ଥରେ ମନ ଖୁବ୍ ବିଚଳିତ ହୁଏ । ପିଲାଙ୍କ ଉପରେ ମୁଁ ହାତ ଉଠେଇଲେ

ସେ କେତେ ରାଗେ ! ତା' ଆଗରେ ଯଦି କେବେ ମୁଁ ପିଲାଙ୍କୁ ମାରେ, ସେ ମତେ ପିଟିବାକୁ ଦଉଡ଼ି ଆସେ । ଏହି କଥାକୁ ନେଇ ଆମ ଦୁହିଁଙ୍କ ମଧ୍ୟରେ ଝଗଡ଼ା ହୁଏ । ଖୁବ୍ ସିଧାସାଧା ପ୍ରକୃତିର ସେ । ଶୁଣା କଥାରେ ବିଶ୍ୱାସ କରିଯାଏ । ଘରକୁ ଆସି ମୋ ସହିତ ଝଗଡ଼ା କରେ । ଆଚ୍ଛା ଭାଉଜ । ମୁଁ ତ' ଘରୁ ଚାଲିଆସିଲି । ରାଗରେ ହେଉ ବା ଆଉ କେମିତି ହେଉ । ତାହେଲେ, ମୋର ବା ପିଲାଙ୍କର କଥା ତା'ର ମନେ ପଡୁନଥିବ ?'' ମୁଁ ଦୁଇ ତିନି ଥର 'ଭାଉଜ' 'ଭାଉଜ' ଡାକିଲି, ହେଲେ କେତେବେଳୁ ସେ ଶୋଇଗଲେଣି । ଚିନ୍ତାଯୋଗୁଁ ମତେ ନିଦ ନଥାଏ । ହେଲେ ଯେତେବେଳେ ନିଦ ଆସିଲା, ଏମିତି ଶୋଇଲି ଯେ, ସକାଳୁ ବି ନିଦ ଭାଙ୍ଗିଲାନି । ମୋର ଝିଅ ସକାଳୁ ମତେ ଉଠାଇଲା, ''ମା, ଉଠ । ଆଈ ତତେ ଚା' ପିଇବାକୁ ଡାକୁଛି ।''

ଦିଲ୍ଲୀ ଯିବାଲାଗି ମତେ ରେଡି ହେବାକୁ ପଡ଼ିବ । ପିଲାଙ୍କ ଲୁଗା ବିଛାଡ଼ି ହେଇ ପଡ଼ିଛି । ସଂଖୋଳିବାରେ ସମୟ ଲାଗିବ । ଘଡ଼ି ଦେଖିଲି, ଛଅଟା ବାଜିଲାଣି । ବାପା-ମା ଚା' ପିଉଥିଲେ । ହାତ ମୁହଁ ଧୋଇ ତାଙ୍କ ପାଖରେ ଯାଇ ବସିଲି । ପିଲାଙ୍କୁ କହିଲି, ଯାହା ଯୋଉଠି ପଡ଼ିଛି, ନିଜ ନିଜର କପଡ଼ା ଆଣି ଗୋଟାଏ ଜାଗାରେ ରଖ । ନିରୁଦା'ର ମଝିଆଁ ଝିଅ ଆଗରୁ ସେ କାମ କରିଦେଇଥାଏ । ମୋର ଯିବା କଥା ଶୁଣି ବାପା-ମା ସାମାନ୍ୟ ଉଦାସ ଜଣାପଡୁଥିଲେ । ମା' କହିଲା, ''ତୋର କ'ଣ ଆଜି ଗଲେ ଯାଇଁ ।'' ମୋର କିଛି କହିବା ପୂର୍ବରୁ ବାପା କହିଲେ, ''ହଁ, ତା'ର ଟିକଟ ହେଇ ସାରିଛି । ତାକୁ ଯିବାକୁ ପଡ଼ିବ । ସେ ଆଉ କ'ଣ ଏଠି ରହିପାରିବ ? ହଉ, ଝିଅ, ତୁ ଯା । ତୁ ସେଠି ଖୁସିରେ ଅଛୁ । ତୋତେ ଆହୁରି ଖୁସି ମିଳୁ ।'' ବାପା କାନ୍ଦ କାନ୍ଦ ହୋଇ ସେଠୁ ଉଠି ବାହାରକୁ ବାହାରି ଗଲେ । ମା' କହିଲା, ''ତୋ ବାପା କାନ୍ଦୁଛନ୍ତି । ତୁମମାନଙ୍କର କଥା କହି ସେ କାନ୍ଦି କାନ୍ଦି କହନ୍ତି, ଏତେଗୁଡ଼ିଏ ପୁଅ ଝିଅ ଥାଇ ବି ସେ ଏକା ପଡ଼ିଯାଇଛନ୍ତି । ଭାବିଲି, କାନ୍ଦନ୍ତୁ ସେ । କାନ୍ଦି କାନ୍ଦି ସେ ନିଜ ମନକୁ ହାଲୁକା କରି ଦିଅନ୍ତୁ, ହେଲେ ଯିଏ କାନ୍ଦି ପାରେନା ସେ ତ ବାବାଙ୍କ ଠାରୁ ଅଧିକ କଷ୍ଟ ପାଏ । ଆମକୁ କଷ୍ଟ ହୁଏନା ?'' ମୁଁ ଉଠି ପ୍ରସ୍ତୁତି ଆରମ୍ଭ କଲି । କାହାକୁ କହିବି ବାପାଙ୍କୁ ଏହି ଅବସ୍ଥାରେ ଛାଡ଼ିଯିବାରେ ମତେ କେତେ କଷ୍ଟ ହେଉଛି; ଆବଶ୍ୟକ ପଡିଲେ ଦେଖାଶୁଣା କରିବାକୁ କେହି ତାଙ୍କ ପାଖରେ ନାହାନ୍ତି । ତାଙ୍କର କିଛି ହେଲେ ମତେ ସଂଗେ ସଂଗେ ଖବର ବି ମିଳିପାରିବ ନାହିଁ । ମା'ର ମୃତ୍ୟୁ ବେଳେ ସେମିତି ହେଇଥିଲା । ତିନି ମାସ ପରେ ବାପା ଯେତେବେଳେ ମତେ ଭେଟିବାକୁ ଆସିଥିଲେ, ମା'ର ମୃତ୍ୟୁ ଖବର ପାଇଥିଲି । ନୋହିଲେ ହୁଏତ ଜାଣି ବି ନଥାନ୍ତି । ଏସବୁ କହିଲେ, ତାତୁସକୁ ଛାଡ଼ି କିଏ ଶୁଣିବ ? କାହାକୁ ଶୁଣାଇ ବା ମୁଁ ମନ ହାଲୁକା କରିବି ?

ନିରୁଦା'ର ବାରଣ୍ଡାରେ ବସି ମୁଁ ଜେଠୁ ଆଉ ସଞ୍ଜୟଦା' ପାଖରୁ ଉପହାରରେ ମିଳିଥିବା ବହିଗୁଡ଼ିକୁ ବେଗ୍‌ରେ ସାଇତି ରଖୁଥିଲି । ବାପା ଅଗଣାରେ ବସି ମତେ ଦେଖୁଥାନ୍ତି । ନିରୁଦା'ର ସାନ ଝିଅ ବହିଗୁଡ଼ିକୁ ଦେଖି ଅବାକ୍ ହୋଇ ପଚାରିଲା, ''ଏତେ ଗୁଡ଼ିଏ ବହି ? କାହାର ଏସବୁ, ପିଇସୀ ?'' ମୁଁ ହସି ହସି କହିଲି, ଏ ବହି ? ସବୁ ମୋର । ପଢ଼ିବି ବସି ବସି ।'' ସେ ଆଶ୍ଚର୍ଯ୍ୟ ହୋଇ ପଚାରିଲା ! ଏତେ ଗୁଡ଼ାଏ ବହି ପଢ଼ିବ । ମୁଣ୍ଡବଥା ହେବନାହିଁ ?'' କହିଲି, ''ଧେତ

ପାଗଲି, ବହି ପଢ଼ିଲେ କ'ଣ ମୁଣ୍ଡ ବଥା ହୁଏ । ନ ପଢ଼ିଲେ ମୁଣ୍ଡ ବଥା ହୁଏ ।'' ମୋ କଥା ଶୁଣି ଖୁସିରେ ବାପା ବି ହସିଲେ ।

ନିରୁଦା'ର ସ୍ତ୍ରୀ ଆଳୁ, ଅମୃତଭଣ୍ଡା ଆଉ କଞ୍ଚା କଦଳୀର ତରକାରିରେ ଗରମ ଗରମ ଭାତ ପିଲାଙ୍କୁ ଖୁଆଇ ଦେଲା । ମୋ ପାଇଁ ବି ଭାତ ବାଢ଼ିଲା । ଦୋକାନରୁ ଅଟା କିଣି ଆଣିଛି ନିରୁଦା । ତା'ର ମଝିଆଁ ଝିଅକୁ କହିଲା, ଆଳୁ ତରକାରି ଆଉ ରୋଟି ତିଆରି କରି ଦେ । ପିଇସୀ ନେବ । ରାସ୍ତାରେ ଛୁଆମାନେ ଖାଇବେ ।'' ମୁଁ କହିଲି, ''ନା ଦାଦା । ଥାଉ, ପୁଣି ହାତରେ ସମୟ ବି ନାହିଁ ।'' ସେ ମୋ ଉପରେ ପାଟି କଲା, ''ତୁ ଚୁପ୍ କର । ସମୟ ଅଛି ।'' ଝିଅକୁ କହିଲା, ''ଯା, ଟିକେ ଜଲ୍‌ଦି କର ।'' ଝିଅ ଜଲଦି ଜଲଦି ଯାହା ପାରିଲା ଦରସିଝା କରି ରୋଟି ତରକାରି ତିଆରି କରି ଦେଲା ।

ମୁଁ ଉଦାସ ଥାଏ । ମନେ ହେଲା, ମୋର ଛୁଆମାନେ ବି ଉଦାସ । କିଛି ଦିନ ମଜାରେ କଟିବା ପରେ ତାଙ୍କର ଆଉ ଚାଲି ଯିବାକୁ ମନ କରୁ ନଥାଏ । ଷ୍ଟେସନ ଯିବାପାଇଁ ଆମେ ସବୁ ରେଡ଼ି । ହେଲେ ବାପାଙ୍କର ଦେଖା ନାହିଁ । ନିରୁଦା' ଆମ ଜିନିଷପତ୍ର ଗାଡ଼ିରେ ରଖିଦେଲା । ମା' ବି ଉଦାସ ହୋଇ ଛିଡ଼ା ହୋଇଥାଏ । ବାପାଙ୍କ କଥା ପଚାରିବାରୁ କହିଲା, ''ଏବେ ତ ଏଇଠି ଥିଲେ । କୁଆଡ଼େ ଯାଇଥିବେ !'' ମୁଁ କହିଲି, ''ତାଂକୁ ଜଣା ମୁଁ ଏବେ ଯିବି । ଦୁଇ ମିନିଟ୍ ଅଟକି ପାରିଲେନି ?'' ନିରୁଦା'ର ସ୍ତ୍ରୀ କହିଲା, ''ତୁମମାନଙ୍କ ଯିବା କଥା ଜାଣି ତାଙ୍କୁ ଖୁବ୍ ଖରାପ ଲାଗୁଛି । ସେଥିପାଇଁ ହୁଏତ ଇଆଡ଼େ ସେଆଡ଼େ ହେଉଛନ୍ତି; ତୁ କପଡ଼ା ବଦଳେଇବାକୁ ଯାଇନଥିଲୁ, ସେତେବେଳେ ସେ କାନ୍ଦୁଥିଲେ ।'' ତା' କଥା ଶୁଣି ମୁଁ କାନ୍ଦି ପକାଇଲି । ସେ କହିଲା, ''ମନ ଖରାପ କରନା । ବାପା ଆଖପାଖରେ କେଉଁଠି ଥିବେ । ଆସିଯିବେ । ଆମେ ସବୁ ଅଛୁଁ ତ । ତୁମେମାନେ ସବୁ ଭଲରେ ଯାଅ ।'' ନିରୁଦା' ମୋର ଛୁଆକୁ ରିକ୍ସାରେ ବସେଇ ଦେଲା । ମୁଁ ଚାଲି ଚାଲି ଗଲି । ଏପଟ ସେପଟ ଦେଖୁଥାଏଁ, ହୁଏତ ବାପାଙ୍କର ଦେଖା ହେଇଯିବ, ଅନ୍ୟ କେହି ପରିଚିତ ବି ମିଳିଯାଇ ପାରନ୍ତି । ଏହି ସମୟରେ ଦେଖିଲି, ରାସ୍ତା କଡ଼ରେ ଦୁଇଜଣ ଲୋକ ଛିଡ଼ା ହୋଇ କଥାବାର୍ତ୍ତା କରୁଛନ୍ତି । ତାଙ୍କ ମଧ୍ୟରୁ ଜଣେ ଶଙ୍କରର ସାଙ୍ଗ । ନିରୁଦା'କୁ କହିଲି, ''ଦାଦା ଟିକେ ରହ । ତାକୁ ମୁଁ ଭେଟି ଆସେ । ନିରୁଦା' କହିଲା, ''କାହାକୁ ? ସେହି ଟୋକାକୁ ? ତୋର ମୁଣ୍ଡ ଖରାପ ନା କ'ଣ ? ଯୋଉ ଦିନ ଶଂକର ସହିତ ଭେଟେଇବାକୁ ତତେ ନେଇ ଯାଇଥିଲି, ଇଏ ବି ସେଠି ଥିଲା ପରା । କିଛି କମ୍ କହୁନଥିଲା ସେ । କାହାକୁ କିଛି କହିବାର ତୋର ଦରକାର ନାହିଁ । ଶୀଘ୍ର ଚାଲ । ନୋହିଲେ ଡେରି ହେବ ।'' ନିରୁଦା ଠିକ୍ କହୁଥିଲା । ହେଲେ ମୋର ମନ ମାନୁ ନଥାଏ । ଭାବୁଥାଏ, ଶଙ୍କର ସାଙ୍ଗରେ ଭେଟ ହେଇ ଯାଆନ୍ତା କି !

ଷ୍ଟେସନ ଆସିଗଲା । ରାସ୍ତାରେ କାହିଁ କେଉଁଠି ଶଂକରର ଦେଖା ହେଲାନି । ନିରୁଦା' ପିଲାଙ୍କୁ ରିକ୍ସାରୁ ଓହ୍ଲାଇଲା, ଜିନିଷପତ୍ର ତଳେ ରଖି ଜଣେ କୁଲିକୁ ଡାକିଲା । ପିଲାଙ୍କୁ ନେଇ ମୁଁ ପ୍ଲାଟଫର୍ମକୁ ଗଲି । ଆମକୁ ଗାଡିରେ ବସାଇଦେବ ଭାବି ନିରୁଦା' ପ୍ଲାଟଫର୍ମ ଟିକଟଟିଏ ଆଣିଲା । ଗ୍ରୀନ୍ ଲାଇଟ୍ ହେଇ ସାରିଥାଏ । ଗାଡ଼ି ଦେଖା ଯାଉଥାଏ । ଏହି ସମୟରେ ପୁଅ କହିଲା, ''ମା', ଦେଖ । ଅଜା

ଆସୁଛନ୍ତି ।'' ମୁଁ ଦେଖିଲି, ବାପା ସ୍ତ୍ରୀ ଲୋକଙ୍କ ପରି କାନ୍ଦି କାନ୍ଦି ଆମକୁ ଖୋଜୁଛନ୍ତି । ପୁଅକୁ କହିଲି, ତାଙ୍କ ହାତଧରି ନେଇ ଆ । ତାଙ୍କ କାନ୍ଦ ଦେଖି ମତେ ବି କାନ୍ଦ ମାଡ଼ିଲା । ମତେ ଛାତିରେ ରଖି ବାପା କହିଲେ, ''ଯାଉଛୁ ? ଯା, ତତେ ଆଉ କେବେ କଷ୍ଟ ହେବନି । ସୁଖ ଶାନ୍ତିରେ ରହ ।'' ବାପାଙ୍କୁ ଦେଖି କୁଲି ପୁଅକୁ ପଚାରିଲା, ''କିଏ ସେ ? ତୋ' ଅଜା ବୋଧେ ?'' ପୁଅ ହଁ କରିବାରୁ ସହାନୁଭୂତି ଜଣାଇ ସେ ବାପାଙ୍କୁ କହିଲା, ''କାନ୍ଦନା । ପିଲାଏ, ଅଜାଙ୍କର ପାଦ ଛୁଇଁ ପ୍ରଣାମ କର ।'' ମୁଁ ନିରୁଦା'କୁ କହିଲି, ''ଦାଦା, ତୁମମାନଙ୍କ ଛଡ଼ା କେହି ପାଖରେ ନାହାନ୍ତି । ଏମାନଙ୍କର କଥା ବୁଝୁଥିବ ।''

ଗାଡ଼ି ଆସିଗଲା । କୁଲି ଜିନିଷପତ୍ର ନେଇ ଗାଡ଼ିରେ ରଖିଦେଲା । ମୁଁ ବାପାଙ୍କ ପାଦ ଛୁଇଁ ମୁଣ୍ଡିଆ ମାରିଲି ଆଉ ପିଲାଙ୍କ ସାଙ୍ଗରେ ଝରକା ପାଖରେ ଯାଇ ବସିଲି । ବାପା ମୋର ମୁଣ୍ଡରେ ହାତ ରଖି କାନ୍ଦୁଥାନ୍ତି । ନିରୁଦା' କାନ୍ଦି କାନ୍ଦି କହିଲା, ''ମୋର ନିଜ ଭଉଣୀ ଯାଏ, ଆସେ । ମନ ଏତେ ଖରାପ ଲାଗେନା । ଆଜି ବହୁତ ଖରାପ ଲାଗୁଛି ।'' ଗାଡ଼ି ଚାଲିଲା; ମୁଁ କୁଲିକୁ ପଇସା ଦେଲି । କିଛି ଦୂର ଯାଏଁ ବାପା ଆଉ ନିରୁଦା' ଗାଡ଼ି ସହିତ ତାଳ ଦେଇ ଆଗକୁ ଚାଲିଲେ । ନିରୁଦା'କୁ ମୁଁ କହିଲି, ''ଦାଦା, ବାପାଙ୍କୁ ଘରକୁ ନେଇ ଯା ।'' ସେ କହିଲା, ''ହଁ ନେଇଯିବି । ତୁ ବିଲକୁଲ୍ ଚିନ୍ତା କରିବୁନି । ପିଲାଙ୍କୁ ନେଇ ସାବଧାନ ହୋଇ ଯିବୁ । ପହଁଞ୍ଚିଲା ପରେ ଫୋନ୍ କରିବୁ ।

ମନେ ପଡ଼ିଲା, ଚାରି ବର୍ଷ ତଳେ ପିଲାଙ୍କୁ ନେଇ ଯେଉଁଦିନ ମୁଁ ଦୁର୍ଗାପୁରରୁ ଦିଲ୍ଲୀ ଗଲି, ସେଦିନ ବି ଆମକୁ ଛାଡ଼ିବାକୁ ବାପା ଷ୍ଟେସନ ଆସିଥିଲେ । ହେଲେ, ଆଜି ତାଙ୍କ ମନର ଭାବ ଯାହା ଥିଲା, ସେଦିନ ସେମିତି ନ ଥିଲା । ତା'ର କାରଣ କ'ଣ ହୋଇପାରେ ? କ'ଣ ଏଇଥିପାଇଁ ଯେ, ସେଦିନ ସାଙ୍ଗରେ ମା' ଥିଲା । ଝିଅପାଇଁ ଯଦି କାନ୍ଦିବେ, ଝିଅକୁ ଛାତିରେ ନେଇ ଆଶୀର୍ବାଦ କରିବେ । ମା' ସହ୍ୟ କରି ପାରିବ ନାହିଁ । ସମସ୍ତଙ୍କ ଆଗରେ ସେ ବାପାଙ୍କୁ କ'ଣ ନା କ'ଣ କହିଯିବ ! ବାପାଙ୍କ ଲାଗି ତାହା ବେଶି ଅପମାନଜନକ ହେବ ?

ଟ୍ରେନ୍‌ର ଯେଉଁ ସିଟ୍‌ରେ ବସି ମୁଁ ବାହାରେ ଠିଆ ହୋଇଥିବା ବାପାଙ୍କ ସାଙ୍ଗରେ କଥାବାର୍ତ୍ତା କରୁଥିଲି, ତାହା ଆଉ କାହାର ସିଟ୍ । ଆମ ବେଗପତ୍ର ବି ଠିକ୍ କରି ରଖା ହେଇ ନଥିଲା । କୁଲି ଯେଉଁଠି ରଖିଥିଲା, ବେଗ୍ ସବୁ ସେଇଠି ପଡ଼ିଥିଲା । ପିଲା ଉଦାସ ଜଣାପଡୁଥାନ୍ତି । ବେଗ୍‌ପତ୍ର ଭଲ ଭାବେ ସାଇତି ରଖିଲି । ପିଲାଙ୍କୁ ସେମାନଙ୍କ ନିଜ ନିଜ ସିଟ୍‌ରେ ବସାଇଲି । ମୁଁ ବି ନିଜ ସିଟ୍‌କୁ ଗଲି । ବାପାଙ୍କ କଥା ମନେ କରି ଦୁଃଖିତ ଥାଏ । ଭୁଲ କଲା ପରେ ଯାଇ ବ୍ୟକ୍ତି ଭୁଲ କ'ଣ ଚିହ୍ନିପାରେ । ତା' ପାଇଁ ପଶ୍ଚାତ୍ତାପ କରେ । ମୋର ଦ୍ୱିତୀୟ ମା' ସାଙ୍ଗରେ ବାପା ରହିଥିଲେ ଖୁବ୍ ଖୁସିରେ ଆଜି ଥାଆନ୍ତେ । ସେହି ମା'ର ଘର ପ୍ରତି ଖୁବ୍ ଆକର୍ଷଣ ରହିଥିଲା । ଖୁବ୍ ଭାବି ବିଚାରି ସେ ପଇସା ଖର୍ଚ୍ଚ କରେ; ଅନ୍ନର ଦାନାଟିଏ ବି ବରବାଦ ହେବାକୁ ଦିଏନା । ତାକୁ ତ୍ୟାଗ କରି ବାପା ଯେଉଁ ଦୁଃଖ ଦେଲେ, ତା'ର ଦଣ୍ଡ ତାଙ୍କୁ ଆଜି ମିଳୁଛି । ବାପାଙ୍କ ପକ୍ଷରୁ ଆମମାନଙ୍କୁ ସେହି ମା' ପାଖରେ ଯାଇ କ୍ଷମା ମାଗିବା କଥା ।

ମୋର ସାମନା ସିଟ୍ ଦୁର୍ଗାପୁରରେ ଖାଲି ଥିଲା । ମୋର ପିଲାମାନେ ସେଠି ଭାଗ ଦୌଡ଼ କରୁଥାନ୍ତି । ହେଲେ ଆସାନସୋଲରେ ସିଟ୍ ଭର୍ତ୍ତି ହେଇଗଲା । ପତି-ପତ୍ନୀ ଭଳି ଦିଶୁଥିବା ଯୋଡ଼ିଟିଏ ଆସି ସେଠି ବସିଲେ । ତାଙ୍କ ଓଜନିଆ ବେଗ୍‌ପତ୍ରରୁ ଲାଗିଲା, ସେମାନେ ବି ଦୂରକୁ ଯାଉଛନ୍ତି । ଝିଅଟି କମ୍ ବୟସର ମନେ ହେଲା । ବାହାଘର ବେଶି ଦିନ ହେଇ ନଥିବ । ଦେଖିବାକୁ ଝିଅଟି ଗହମ ରଂଗର । ଖୁବ୍ କମନୀୟ । ପିଲାଟିର ବୟସ ୨୨-୨୩ ବର୍ଷ ହେବ । ରଂଗ ଶ୍ୟାମଳ । ଦୁହେଁ ରାଧା-କୃଷ୍ଣ ଭଳି ଦିଶୁଥାନ୍ତି । ଟ୍ରେନ୍‌ରେ ତାଙ୍କୁ ଛାଡ଼ିବାକୁ ଝିଅର ବାପା ଆସିଥାନ୍ତି । ଗାଡ଼ି ଯେତେବେଳ ଯାଏ ଷ୍ଟେସନରେ ରହିଲା, ବାପା ଝିଅକୁ ଭଲ ଭାବେ ରହିବାକୁ ପରାମର୍ଶ ଦେଉଥାନ୍ତି ଆଉ ଝିଅ ବାପାଙ୍କୁ ମିଠା ଆଦିରୁ ଦୂରରେ ରହିବାକୁ କହୁଥାଏ । ଗାଡ଼ି ଛାଡ଼ିବାକୁ ବସିଲାରୁ ତା'ବାପା ଶୀଘ୍ର ଓହ୍ଲାଇଗଲେ । ଝିଅଟି ଗେଟ୍ ପାଖକୁ ଗଲା । ଆଖିରୁ ଅନ୍ତର୍ହିତ ହେବା ଯାଏଁ ବାପାଙ୍କୁ ସେ ଚାହିଁ ରହିଥାଏ । ପିଲାଟି ପତ୍ନୀର ଗୋଟିଏ ହାତକୁ ଜୋର କରି ଧରିଥାଏ, କାହିଁ ଟ୍ରେନରୁ ସେ ଖସି ନଯାଉ । ଆଖିରୁ ଲୁହ ପୋଛି ପୋଛି ଝିଅ ଆସି ସିଟ୍‌ରେ ବସିଲା । ସେ ପତିକୁ ବେଗ୍‌ପତ୍ର ରଖିବାରେ ସାହାଯ୍ୟ କରିବାକୁ ଚାହୁଁଥାଏ । ହେଲେ ପୁଅଟି ତାକୁ ''ତୁ ଛାଡ଼ । ମୁଁ କହୁଛି, ତୁ କିଛି କରନା । ବହୁତ ଓଜନିଆ ଏ ବେଗ । ତୁ ବସିଲୁ ଯାଇ '' କହି ବାରଣ କରୁଥାଏ । ଝିଅଟି କହିଲା, ''ମୁଁ ଟିକେ ହାତ ଲଗେଇ ଦେଲେ କ'ଣ ଖରାପ ହେଇଯିବ !'' ପୁଅ କହିଲା, ''ତୋର ହୁଏତ କିଛି ହେବନି । ଭଗବାନ କରନ୍ତୁ କିଛି ଖରାପ ନ ହେଉ । ହେଲେ ମୋର ତ ହେବ । ତୋର କିଛି କ'ଣ ହେଲେ, ମୁଁ କ'ଣ ରହିପାରବି ? ମୋର କିଏ ଦେଖିବ ?'' ଏତିକି କହି ଜଣେ ଅନ୍ୟକୁ ଦେଖି ମୁରୁକି ମୁରୁକି ହସିଲେ । କିଛିବେଳ ପରେ ଝିଅ ଧୀରେ ଧୀରେ କହିଲା, ''ମତେ ନିଦ ମାଡ଼ିଲାଣି ।'' ପୁଅଟି ତା' କୋଳରେ ଝିଅର ମୁଣ୍ଡକୁ ରଖି ଶୋଇ ଯିବାକୁ କହିଲା । ତା' କୋଟକୁ ସେ ଝିଅ ଉପରେ ଘୋଡେଇ ଦେଲା ।

ଦିନ ଦୁଇଟା ହେବ ସମୟ । ଉପର ସିଟ୍‌ରେ ମୁଁ ଛୁଆଙ୍କୁ ଖାଇବା ପରଷି ଦେଲି । ଖାଇବା ଦେଖି ସେ ଦୁହେଁ ନାକ ଟେକିଲେ । ରୋଟି-ତରକାରି କଞ୍ଚା ଦେଖି ଥରେ ଦୁଇଥର ମୁହଁକୁ ନେଇ ରଖିଦେଲେ । ଖାଇବା କିଣି ତାଙ୍କୁ ଦେଲି । ପୁଅ ମତେ ଖାଇବାକୁ କହିଲା । ମୁଁ ମନା କଲି । ମୋର ସମସ୍ତେ ମନେ ପଡୁଥାନ୍ତି । ଜେଠୁ ଆଉ ସଂଜୟ ଦା' ମତେ ଦୁର୍ଗାପୁର ପହଞ୍ଚି ଫୋନ କରିବାକୁ କହିଥିଲେ । ସମୟ ପାଇଲି ନାହିଁ । ସେମାନେ ଚିନ୍ତା କରୁଥିବେ । ମୋ ପାଖରେ ବସିଥିବା ଭଦ୍ରଲୋକ ମୋବାଇଲରେ କଥା ହେଉଥିଲେ । ମୁଁ ତାଙ୍କଠାରୁ ମୋବାଇଲ୍ ମାଗି ଫୋନ୍ କରିବାକୁ ଚାହୁଁଥିଲି । ମାତ୍ର ସାହସ କରି ପାରୁ ନଥିଲି । ଶେଷରେ ପଚାରି ବସିଲି, ''ଦାଦା, ମତେ ଫୋନ୍ ଟିକେ ଦେବେ କି ? ପିଲାଙ୍କୁ ନେଇ ମୁଁ ଟ୍ରେନ୍ ଧରି ପାରିଲି ନା ନାହିଁ ଜାଣିବାକୁ ସେଠି ଚିନ୍ତିତ ଥିବେ । ସେ କହିଲେ, ''ହଁ, ହଁ, ନେଉନାହାନ୍ତି । କାହାକୁ ଫୋନ୍ କରିବାର ଅଛି କରନ୍ତୁ । ମୁଁ ନମ୍ବର ଡାଏଲ କରି ଦେଉଛି । ପାଟନାରେ ଗାଡ଼ି ଛିଡ଼ା ହେବ, ସେତେବେଳେ କଥା ହେଇଯିବେ ।'' ମୁଁ ତାଙ୍କୁ ନମ୍ବର ଦେଲି । ଭାବିଲି, ତାତୁସ କିମ୍ବା ଜେଠୁ ଯେତେବେଳେ ଜାଣିବେ ଯେ ଅନ୍ୟର ମୋବାଇଲରୁ

ମୁଁ ସଞ୍ଜୟ ଦା' ସହିତ ଫୋନ୍ କରିଛି, ଦୁହେଁ ଆଶ୍ଚର୍ଯ୍ୟ ହୋଇ କହିବେ, ''ବେବି ତ ବିଲକୁଲ ଆଜିକାଲିକା ଝିଅ ଭଳି ସ୍ମାର୍ଟ ହେଇ ଗଲାଣି ।''

ଝରକା ପାଖରେ ବସି ମୁଁ ବାହାରକୁ ଅନାଇଥାଏ । କେଉଁଠି କେଉଁଠି ଗୋବରର ଘଷି ଶୁଖୁଥାଏ । ଜାଳେଣି ହେବ । ମୋଟା ମୋଟା ଲୋକମାନେ ବଡ଼ ବଡ଼ ଗାଈ-ମଇଁଷିକୁ ଦୁହୁଁଛନ୍ତି । କେହି କେହି ଗାଈ ବଳଦଙ୍କୁ ଚାରା ଦେଉଥାନ୍ତି । କାହିଁ କେଉଁଠି ଗାଈ ବା ମଇଁଷିର ପଛ ଗୋଡ଼ ବନ୍ଧା ଥାଏ; ବାଛୁରୀ ମା' ପାଖରେ ଠିଆ ହୋଇଥାଏ । ପୁଅ କହିଲା, ''ବାଛୁରୀମାନେ କ'ଣ କହୁଛନ୍ତି ?'' ମୁଁ କହିଲି, ''କ୍ଷୀର ଦୁହିଁବାବାଲାକୁ କହୁଛନ୍ତି, ''ତୁମେ ସବୁ କ୍ଷୀର ଦୁହିଁ ନିଅ । ଆମକୁ ପେଟ ପୂରା କ୍ଷୀର ମିଳେନା ।'' ପୁଅ କହିଲା, ''କ୍ଷୀର କାହିଁ ସବୁ ଦୁହିଁ ନିଅନ୍ତି ?'' ମୁଁ କହିଲି, ବିନା କ୍ଷୀରରେ ଆମର ବି ତ କାମ ଚଳେନା । ଅନେକ ପିଲା ଏହି ପଶୁକ୍ଷୀର ପିଇ ବଡ଼ ହୁଅନ୍ତି । କ୍ଷୀରରୁ ପୁଣି ଘିଅ, ଛେନା, ଲହୁଣୀ ଏବଂ ଆହୁରି କେତେ ଜିନିଷ ହୁଏ ।'' ସେ କହିଲା, ''ହଁ, ଆମ ବହିରେ ଏସବୁ ଲେଖାଅଛି ।'' ମୋ ଝିଅ ବା କିଛି ନ ପଚାରି ରହିବ କେମିତି ? ସେ ପଚାରିଲା, ''କିଛି ଗାଈ-ମଇଁଷିର ପଛ ଗୋଡ଼ କାହିଁକି ବନ୍ଧା ହୋଇଛି ?'' ମୁଁ ବାଧ୍ୟ ହୋଇ କହିଲି, ''ତା'ର କାରଣ ହେଲା ଯେ କିଛି ଗାଈ ମଇଁଷି ନିଜ କ୍ଷୀର ଦେବାକୁ ଚାହାନ୍ତି ନାହିଁ । ପାଖକୁ ଗଲେ ଲାତ ମାରନ୍ତି । କ୍ଷୀର ବାଲଟିକୁ ଢ଼ାଳିଦେବାକୁ ଚେଷ୍ଟା କରନ୍ତି । ହେଲେ, ଆମକୁ କ୍ଷୀର ଦରକାର । ତେଣୁ ତାଙ୍କର ଗୋଡ଼ ନ ବାନ୍ଧି ଆଉ ବାଟ ଅଛି ?'' ଝିଅ କହିଲା, ''ଆମେ ତ ତୋ କ୍ଷୀର ପିଇ ବଡ଼ ହୋଇଛୁ ।'' ଭାବିଲି, ଏବେ ନ ପଚାରୁ, ସେ ଗାଈ ପରି ତୋ କ୍ଷୀର କାହିଁକି ଅନ୍ୟମାନେ ନେଇ ଯାଆନ୍ତି ନାହିଁ ? ସାତ ବର୍ଷର ଗପୁଡ଼ି ଝିଅ ସେ । କିଛି ବି ପଚାରିପାରେ ।

ଗାଡ଼ି ଏବେ ଛୋଟ ଛୋଟ ଷ୍ଟେସନରେ ବି ରହୁ ଥାଏ । ଭିତରେ ଖୁବ୍ ଭିଡ଼ । ସିଟ୍‌ରେ ଆଗରୁ ବସିଥିବା ଯାତ୍ରୀମାନଙ୍କୁ ନବାଗତ ଯାତ୍ରୀଙ୍କ ପାଇଁ ଜାଗା ଦେବାକୁ ପଡୁଥାଏ । ନୂଆ ଯାତ୍ରୀ ପରସ୍ପର ମଧ୍ୟରେ ବଡ଼ ପାଟିରେ କଥାବାର୍ତ୍ତା କରୁଥିଲେ; ହସୁଥିଲେ । ପାଟିତୁଣ୍ଡ ସେମାନଙ୍କର ଖୁବ୍ ବେଶି । ଦୁର୍ଗାପୁରରୁ କଲିକତା ଗଲାବେଳେ ଲୋକାଲ୍ ଟ୍ରେନ୍‌ରେ ମୁଁ ସେଦିନ ଏଭଳି ଦୃଶ୍ୟ ଦେଖିଥିଲି । ରାତି ଦଶଟା ଯାଏଁ ଭିଡ଼ ରହିଲା । ତା'ପରେ ଭିଡ଼ ଊଣା ହେବାକୁ ଲାଗିଲା । ଆରାମରେ ବସିଥିବା ଯାତ୍ରୀ ଖାଇପିଇ ସାରି ଏବେ ଶୋଇବାର ଉପକ୍ରମ କରୁଥାନ୍ତି । ପିଲାଙ୍କୁ ଖାଇବା ପିଇବା ଦେଇ ମୁଁ ଶୋଇବାକୁ କହିଲି । କିଛି ସମୟ ନିଜ ନିଜ ଭିତରେ ବକର ବକର ହେଇ ସେମାନେ ଶୋଇପଡିଲେ । ମୋ ଆଗରେ ବସିଥିବା ଦମ୍ପତି ଝରକାରୁ ବାହାରକୁ ଅନାଇଁ ପରସ୍ପର ମଧ୍ୟରେ ଗପସପ କରୁଥାନ୍ତି । ଅଳ୍ପ ସମୟ ପରେ ଘରୁ ଆଣିଥିବା ଖାଇବା ଜିନିଷ ବାହାର କରି ଖାଇଲେ । ମଝି ବର୍ଥରେ ଝିଅକୁ ଶୁଏଇ ପିଲାଟି ତଳ ବର୍ଥରେ ଶୋଇଲା । ଭଲକରି ଘୋଡେଇ ଦେଇଥାଏ ପତ୍ନୀକୁ । ମୁଁ ଶରତଚନ୍ଦ୍ରଙ୍କ 'ଦତ୍ତା' କାହାଣୀ ପଢୁଥାଏ । ମଝିରେ ମଝିରେ ଚୋରା ଆଖିରେ ସେମାନଙ୍କୁ ଦେଖେ । ପିଲାଟି ଥରକୁ ଥର ଉଠି ଝିଅଟିର ମୁହଁରେ ମୁହଁ ଦେଇ କିଛି କହେ ଏବଂ ଝିଅ ସ୍ନେହଭରା ଉତ୍ତର ଦିଏ । ରାତି ସାରା ସେମାନଙ୍କ ଏହି ଆଦର ସମ୍ଭାଷଣ ଚାଲିଲା । ଝିଅଟିର କି ସୌଭାଗ୍ୟ ! ପତିର ପ୍ରେମ କେତେ ଜଣଙ୍କ ଭାଗ୍ୟରେ ଥାଏ ? ମାତ୍ର ମଫସଲ ଜାଗାରେ ଯଦି

ପତି-ପତ୍ନୀ ଏଭଳି ବ୍ୟବହାର କରନ୍ତି, ଗାଁ ଲୋକ ସେମାନଙ୍କୁ ଅଭଦ୍ରରୁ ଅଭଦ୍ର ଗାଳି କରିବେ। ପିଲାଟି ତ ତା' ବିବାହିତା ସ୍ତ୍ରୀ ସାଙ୍ଗରେ ଏଭଳି ବ୍ୟବହାର କରୁଛି । ଅନ୍ୟ କାହା ସାଙ୍ଗରେ କରୁନି । ଏଥିରେ ଖରାପ କ'ଣ ? ତା' ସ୍ତ୍ରୀ ଦେଖିବାକୁ ସୁନ୍ଦର, ବୟସ କମ୍ । ପତି ଏହି ବୟସରେ ସ୍ତ୍ରୀକୁ ଏମିତି ଭଲ ନପାଇବ ଯଦି କେବେ ପାଇବ ? ଯେତେବେଳେ ବୟସ ବଢ଼ିବ, ପତ୍ନୀ କେତୋଟି ଛୁଆର ମା' ହେଇଯାଇଥିବ, ସେତେବେଳେ କ'ଣ ତାକୁ ପତି ଏମିତି ଭଲ ପାଇବ ? ସେତେବେଳେ ହୁଏତ ଯେଉଁ ମୁହଁକୁ ସେ ଅନେକ ଥର ଚୁମା ଦେଉଛି, ସେହି ମୁହଁରେ ଜୋତା ମାରିବ । କହିବ, ''ମୋ ସ୍ତ୍ରୀ । ତାକୁ ମୁଁ ଯାହା କରିପାରେ । ତହିଁରେ ଅନ୍ୟମାନଙ୍କର କ'ଣ କରିବାର ଅଛି ?'' ପୁରୁଷମାନେ ବୁଝି ପାରନ୍ତି ନାହିଁ ଯେ ସେମାନଙ୍କ ବୟସ ସାଂଗରେ ଆମ ସ୍ତ୍ରୀମାନଙ୍କର ବୟସ ବି ବଢ଼େ । ସେମାନେ ନିଜକୁ ସୁନାମୁଦି ମନେ କରନ୍ତି । ଭଙ୍ଗାରୁଜା ହେଲେ, ଅଙ୍କାବଙ୍କା ହେଲେ ବି ସୁନା ତ ସୁନା !

ରାତିସାରା ମୋର ଚା' ପିଆରେ ଆଉ ଚିନ୍ତା କରିବାରେ ବିତିଲା । ସକାଳ ହେବା ବେଳକୁ ମୋ ଝିଅ ଉଠି ଟୟଲେଟ୍ ଗଲା ଆଉ ମୋ' ପାଖରେ ଆସି ବସିଲା । ତାକୁ କହିଲି, ''ମୁଁ ବି ହାତ ମୁହଁ ଧୋଇ ଆସେ । ନୋହିଲେ ପରେ ଭିଡ଼ ହୋଇଯିବ ।'' ମୁଁ ଉଠି ଟୟଲେଟ୍ ଗଲି ।

ଝରକା ପାଖରେ ବସି ମୋର ଝିଅ କେତେ କଥା କହୁଥାଏ । ତାକୁ କହିଲି, ''ତୁ ଚୁପ କଲୁ ଆଗ । ଲୋକ ଶୋଇଛନ୍ତି ।'' ହେଲେ ସେ କ'ଣ ମାନିବ ? ପଚାରିଲା, ''ମା' ଝରକା ଖୋଲିବି ?'' ଝରକା ଖୋଲିବାରୁ ଥଣ୍ଡା ପବନ ଭିତରକୁ ପଶିଲା । ପାଖରେ ଶୋଇଥିବା ଜଣେ ଯାତ୍ରୀ ପାଟି କଲେ ଏ ଦିଦି, ଝରକା ବନ୍ଦ କର । ଥଣ୍ଡା ପବନ ଆସୁଛି ।'' ତାଙ୍କ ପାଟିରେ ମୋ ପୁଅ ଏବଂ ପାଖର ଆହୁରି ଅନେକ ଯାତ୍ରୀ ଉଠି ପଡିଲେ । ମୁଁ ଝିଅକୁ ପାଟି କରି ସେ ଜାଗାରୁ ଉଠେଇ ଦେଲି । ଏବେ ଝରକା ବନ୍ଦ କରି ନିଜେ ସେଠି ବସିଲି । ଭାବିଲି, ଥଣ୍ଡା ପବନ ତ କେବଳ ଏକ ବାହାନା । ଚା' ବାଲାର ପାଟିରେ ଲୋକଙ୍କର ନିଦ ଭାଙ୍ଗି ସାରିଲାଣି । ''ଏତେ ପାଟି କାହିଁକି କରୁଛ '' ବୋଲି କେତେଜଣ ଯାତ୍ରୀ ଚା' ବାଲାକୁ ମନା ମଧ୍ୟ କରିସାରିଥିଲେ । ମୋ ପିଲାଙ୍କ କଥାବାର୍ତ୍ତା ଯୋଗୁଁ ଲୋକଙ୍କ ନିଦ ଭାଙ୍ଗିଥାଏ ଯଦି, ପିଲାଙ୍କୁ କ'ଣ ଟ୍ରେନ୍‌ରୁ ଓହ୍ଲାଇଦେବେ ! ଗାଡ଼ି କେଉଁ ଏକ ଷ୍ଟେସନରେ ରହିଲାରୁ କୁର୍ତ୍ତା-ପାଇଜାମା ପିନ୍ଧା ଜଣେ ଲୋକ ଡବାକୁ ଚଢ଼ିଲା ଏବଂ ସମସ୍ତଙ୍କୁ ଏକ ହଳଦିଆ ରଂଗର କାଗଜ ଦେଇଗଲା । ପଇଁତ୍ରିଶ ବର୍ଷ ପ୍ରାୟ ହେବ ତା'ର ବୟସ । କାଗଜରେ ଲେଖା ଥାଏ, ''ମୁଁ ଘରର ବଡ଼ ପୁଅ । କହିପାରେନା । ଘରେ ରୋଜଗାର କରିବାପାଇଁ ମୁଁ ଏକା । ମୋ ଉପରେ ତିନି ଭଉଣୀଙ୍କର ବୋଝ । ସେମାନେ ବି କଥା କହି ପାରନ୍ତି ନାହିଁ । ପନ୍ଦର ବର୍ଷର ମୋର ସାନଭାଇ ପୋଲିଓଗ୍ରସ୍ତ । ସେ ଚାଲି ପାରେନା । ମୋର ମା' ନାହାନ୍ତି । ବାପା ବି ନାହାନ୍ତି । ସବୁ ଦାୟିତ୍ୱ ମୋ ଉପରେ । ଆପଣଙ୍କୁ ନିବେଦନ, ନିଜ ଇଚ୍ଛାମତେ ଦୁଇ ଚାରି ଟଙ୍କା ସହାୟତା କରନ୍ତୁ । ଭଗବାନ ଆପଣଙ୍କର ମଙ୍ଗଳ କରିବେ ।'' ପାଞ୍ଚ ମିନିଟ ପରେ ସେ ପୁଣି ଆସିଲା ଏବଂ ତା' କାଗଜ ଫେରାଇନେଲା । ଯିଏ କିଛି ଦେଲା, ତାକୁ ନେଲା । ଯିଏ କିଛି ଦେଲାନି ତାକୁ ଅନାଇଲା ସୁଦ୍ଧା ନାହିଁ । ଛିଡ଼ା ହେବାପାଇଁ ତା'ପାଖରେ ଆଦୌ ସମୟ ନଥାଏ । ଗାଡ଼ିର ପ୍ରତି ଡବାକୁ ଯାଇ

ଏମିତି ପଇସା ସଂଗ୍ରହ କରିବ ଆଉ ପରବର୍ତ୍ତୀ ଷ୍ଟେସନରେ ଓହ୍ଲାଇ ଯିବ । କିଏ ହୁଏତ କହିବ, ଲୋକଙ୍କଠାରୁ ପଇସା ଠକିବାର ଏକ ନୂଆ ବାଟ । ଆଉ କିଏ ତା' କଥାକୁ ହୁଏତ ବିଶ୍ୱାସ କରିବ । ତା' କଥା ସତ ହେଉ ବା ମିଛ, ମୁଁ ତାକୁ ସତ ମଣି କିଛି ପଇସା ଦେଲି । ଏତିକିରେ ମୋର କ'ଣ ବା କ୍ଷତି ହେବ ଯେ !

ଆଉ ଏକ ଷ୍ଟେସନରେ ଗାଡ଼ି ରହିଲା । ଗଲାଥର ପରି ଏଥର ବି ଚାରିପାଞ୍ଚ ଜଣ ହିଞ୍ଜଡ଼ା ଆମ ଡବାକୁ ପଶିଲେ ଏବଂ ଯାତ୍ରୀଙ୍କ ପାଖରୁ ତାଳି ବଜେଇ ବଜେଇ ପଇସା ମାଗିଲେ । କାଳେ ସେମାନେ ଅଶ୍ଳୀଳ କିଛି ନ କହନ୍ତୁ ଏହି ଭୟରେ ଲୋକ କିଛି ନା କିଛି ସେମାନଙ୍କୁ ଦିଅନ୍ତି । ଦାତାର ମୁଣ୍ଡ ଉପରେ ସେମାନେ ହାତ ବୁଲାଇ ଆଣନ୍ତି । ସେମାନଙ୍କୁ ଦେଖି ମୋ ଆଗରେ ବସିଥିବା ଝିଅଟି ଆଣ୍ଟୁ ଉପରକୁ କଲା । ତା'ର ତର ତା' ପେଟ ଦେଖାନଯାଉ । ପ୍ରଥମେ ମୋର ସାମାନ୍ୟ ସଂଦେହ ରହିଥିଲା । ଏବେ ନିଶ୍ଚିତ ହେଲି ଯେ ସେ ଗର୍ଭବତୀ । ଜଣେ ହିଂଜଡ଼ା ତାକୁ ପେଟ ଲୁଚାଇବାର ଦେଖି ପକାଇଲା । ହସି ହସି ସେ ତା' ଆଗରେ ଯାଇ ତା' ପାଖରେ ଛିଡ଼ାହେଲା । ଝିଅଟି ତା' ବରକୁ କହୁଣି ମାରି କହୁଥାଏ, ଦିଅ ତାକୁ କିଛି । ଯାଉ ସେ ଜଲଦି । ପିଲାଟି ଖୁସିରେ ପଚାଶ ଟଙ୍କାର ଏକ ନୋଟ ଦେବାରୁ ହିଂଜଡ଼ା ତା' ମୁଣ୍ଡରେ ହାତ ରଖି ଆଶୀର୍ବାଦ କଲା । କହିଲା, ''ପୁଅ ଜନ୍ମ ହେବ ।'' ଏହା ଶୁଣି ପିଲାଟି ଖୁସିରେ କୁରୁଳି ଉଠିଲା । ବେବି ଭାବୁଥାଏ, ଯେ କୌଣସି ଗର୍ଭବତୀ ମହିଳାକୁ ଲୋକ ପୁତ୍ର ଜନ୍ମ ହେଉ ବୋଲି କାହିଁକି ଆଶୀର୍ବାଦ ଦିଅନ୍ତି ? ଝିଅପାଇଁ କାହିଁକି ଦିଅନ୍ତି ନାହିଁ ? ପୁଅ ବଦଳରେ ଯଦି ଝିଅ ଜନ୍ମ ହୁଏ ? ତାକୁ ହତ୍ୟା ତ କରିପାରିବେ ନାହିଁ । ହେବ ଏମିତି ଯେ, ପୁଅ ଜନ୍ମ ହେଲେ ତାକୁ ସ୍ୱର୍ଗର ଚାନ୍ଦ ମନେକରି ସ୍ନେହ ଆଦର କରାଯିବ ଆଉ ଝିଅକୁ ତା' ଭାଗ୍ୟ ଉପରେ ଛାଡି ଦିଆଯିବ । ସତରେ କେମିତି ଏ ସମାଜ ! ଝିଅ ସାନ ଥିଲେ, ତାକୁ ପର୍ବ-ପର୍ବାଣିରେ ଘର ଘରକୁ ଡାକି ପୂଜା କରାଯାଏ । ଜାଣି, ଦେବୀ ସେ ! ତା' ପାଦ ଛୁଇଁ ପ୍ରଣାମ କରାଯାଏ । ସେହି ଝିଅ ଯେତେବେଳେ ବଡ଼ ହେଇଯାଏ, ତାକୁ କେତେ ଲାଂଛନା ସହ୍ୟ କରିବାକୁ ପଡ଼େ, କେତେ ମାଡ଼ ଖାଇବାକୁ ପଡ଼େ, ଟିକେ ଟିକକର ଭୁଲପାଇଁ କେତେ ଅଭଦ୍ର ଗାଳି ଶୁଣିବାକୁ ପଡ଼େ ! ମୋ ସାମନାରେ ବସିଥିବା ଝିଅଟି କଥା ମୁଁ ଚିନ୍ତା କରୁଥିଲି । ଆଜି ତା'ବର ଯେତେ ଭଲ ତାକୁ ପାଉଛି, ଝିଅଟି ଯଦି ଝିଅ ଜନ୍ମ କରେ ତାକୁ କ'ଣ ସେତିକି ଭଲ ପାଇବ !

ଝିଅଟି ସାନ ଛୁଆଙ୍କ ଭଳି ଗେଲ ହେଇ ତା'ପତିକୁ କିଛି କହିଲା । ସେ ବୋଧହୁଏ ଶୁଣିପାରିଲା ନାହିଁ । ତେଣୁ ଶୁଣିବାଲାଗି ଝିଅଟିର ମୁହଁରେ ତା'କାନକୁ ଲଗେଇ ଦେଲା । ଝିଅଟି ଏପଟ ସେପଟ ଦେଖି କହିଲା, ''ଏବେ ଥାଉ । ଘରେ ପହଞ୍ଚିଲେ କହିବି ।''

ରାତିରେ ନା ମୁଁ ଶୋଇପାରିଲି, ନା ଶରତଚନ୍ଦ୍ରଙ୍କ 'ଦତ୍ତା' କାହାଣୀଟିକୁ ପଢ଼ିପାରିଲି । କାହାଣୀ ପଢ଼ୁଁ ପଢ଼ୁଁ ଆପେ ଆପେ ଆଖି ସେହି ଆଡକୁ ଚାଲିଯାଏ ଯେଉଁଠି ସେହି ଦଂପତିଙ୍କର ପ୍ରେମଲୀଳା ଚାଲିଥାଏ । ମତେ ଉନ୍ନିଦ୍ରା ଲାଗୁଥାଏ । ଭାବିଲି ଶୋଇ ଶୋଇ କାହାଣୀ ପଢ଼ିବି । ମଝିରେ ଛାଇ ନିଦ ଆସିଗଲା । ମୋର ମନ ଅଟକି ଯାଇଥାଏ କାହାଣୀର ମୁଖ୍ୟ ପାତ୍ର ବିଜୟା

ଓ ନରେନ ମଧ୍ୟରେ ଚାଲିଥିବା ମିଠା ମିଠା ବାର୍ତ୍ତାଳାପରେ । ଛାଇ ନିଦ ଭାଙ୍ଗିଲାରୁ ଦେଖିଲି ସାମନାରେ ଦଂପତି । କାହାଣୀର ଆଗକୁ ପଢ଼ିବାକୁ ମନ ଡାକିଲା । ମୁଁ କାହାଣୀ ପଢ଼ିଲି ! ପାଞ୍ଚ ଛଅ ମିନିଟ୍‌ର ବ୍ୟବଧାନ ପରେ ପ୍ରଥମେ ବିଜୟା କଥା ଆରମ୍ଭ କଲା । ସେ ଆଉ ଚୁପ୍ ରହି ପାରିଲା ନାହିଁ । ହସି ହସି କହିଲା, ''କ'ଣ, ସେହି ପାଗଳ ଭୂତ କଥା ତ ତୁମେ ଶେଷ କଲନି । ନରେନ ବୋଧହୁଏ ଆଉ କିଛି ଚିନ୍ତା କରୁଥିଲା । ମୁଣ୍ଡ ଉପରକୁ କରି କହିଲା, 'କାହା କଥା କହୁଛ ।' ବିଜୟ କହିଲା, ''ସେହି ପାଗଳ ଭୂତର କଥା, ଯିଏ କିଛି ଦିନ ଧରି ତୁମ ମୁଣ୍ଡକୁ ଚଢ଼ିଥିଲା । ସେ ଏବେ ଓହ୍ଲାଇ ଗଲାଣି ତ ?''

ଗପ ପଢୁପଢୁ ମୁଁ ଚିନ୍ତାରେ ପଡ଼ିଗଲି । ଭୂତ କୁଆଡୁ ଆସିଲା ? ଧେତ୍ ତେରିକା ! ଆଖପାଖର ଲୋକଙ୍କ କଥାରେ ବୁଡ଼ି ରହି ମୁଁ ଏତେ ସୁନ୍ଦର ଗପଟିକୁ ସୁଦ୍ଧା ମନ ଦେଇ ପଢ଼ି ପାରୁନି । ଭୂତ ଆସିଲା ଯଦି କେଉଁଠୁ ଆସିଲା ? ଗପବହିର କିଛି ପୃଷ୍ଠା ଏପଟ ସେପଟ ଓଲଟାଇ ଦେଖିଲି, ଭୂତ କଥା ରହିଛି । ନରେନ କହିଲା, ତୁମକୁ ମୁଁ ସତ କଥାଟି କହିଦିଏ ।'' ସେହିଦିନଠାରୁ ମୁଁ ଆଠଦଶ ଦିନ ଯାଏ ଦିନର ଚବିଶରୁ ହୁଏତ ଦୀର୍ଘ ତେଇଶ ଘଣ୍ଟା, ତୁମ କଥା କେବଳ ଚିନ୍ତା କରୁଥିଲି । ମୋ ମନରେ କେବଳ ତୁମ ଅସୁସ୍ଥତା କଥା ଆସେ । ସେଥିପାଇଁ ତ ମୁଁ କହିଥିଲି, କେତେ ଭୟଙ୍କର ଛୁଆଁ ରୋଗ ଇଏ । କାମ-କାର୍ଯ୍ୟ ତ ସବୁ ଚୁଲିକୁ ଗଲା, ଦିନରାତି କେବଳ ତୁମ କଥା ମନରେ ଘାରି ହେଉଥାଏ । ଏବେ ତୁମେ କୁହ, ଏ ସବୁ କରିବା କ'ଣ ଜରୁରୀ ଥିଲା ? କେବଳ ସେତିକି କ'ଣ ? ଦୁଇ ତିନି ଦିନ କେବଳ ତୁମକୁ ଦେଖିବାଲାଗି ଏହି ରାସ୍ତାରେ ନିରର୍ଥକ ବୁଲୁଥାଏ ।'' ସେହି ଭଳି ଭୂତ ଅନେକ ଦିନ ଯାଏଁ ମୋ ମୁଣ୍ଡରେ ବସା ବାନ୍ଧି ରହିଲା । ଏତିକି କହି ସେ ହସିବାକୁ ଲାଗିଲା । ପୁଣି କହିଲା, ''ହଁ, ଓହ୍ଲାଇଗଲା । ସେହି ପାଗଳ ଭୂତଟି ମୋ ମୁଣ୍ଡରୁ ଓହ୍ଲାଇ ଗଲା ।'' ବିଜୟା କହିଲା, ''ଯାହା ହେଉ, ତୁମେ କହୁନ, ବଂଚିଗଲ ବୋଲି । ନୋହିଲେ କେତେ ଦିନ ଧରି ସେ ତୁମର ପିଛା କରିଥାନ୍ତା !'' ନରେନ୍ ଚା' ପ୍ଲେଟ୍ ରଖି କେବଳ କହିଲା, ହଁ ।

ବେବିକୁ ନିଦ ଆସିଗଲା । କୁଆଡୁ କୁଆଡୁ ସବୁ ସ୍ୱପ୍ନ ଦେଖିବାକୁ ଲାଗିଲା ସେ ? ଗୋଟାଏ ବଡ଼ ରୁମ୍ । ଚାରିଆଡ଼େ ତା'ର ଝରକା । ରୁମ୍‌ଟି ବହି ଆଉ ଆଲମିରାରେ ଭର୍ତ୍ତି । ବହିର ପୃଷ୍ଠା ସବୁ ନିଜେ ନିଜେ ଓଲଟୁଛନ୍ତି । ଦୂରରୁ ବି ଯେ କେହି ଚାହିଁଲେ ପ୍ରତି ଅକ୍ଷରକୁ ପଢ଼ିପାରିବ । ଏ ସବୁ ଦେଖି ବେବି ଖୁସିରେ ନାଚି ନାଚି ରୁମ ଭିତରେ ବୁଲୁଛି । ସେ ଯେତେବେଳେ ଝରକାରୁ ବାହାରକୁ ଅନାଇବାକୁ ଚାହୁଁଛି, ଝରକା ଆପେ ଆପେ ଖୋଲିଯାଉଛି । ଗୋଟାଏ ଝରକାରୁ ପୁସ୍ତକ ମେଳା ଦିଶୁଛି । ମେଳାରେ ଅନେକ ପରିଚିତ ଲୋକ । ଗୋଟାଏ ବହି ଦୋକାନରେ ରମେଶଜୀ, ତାତୁସ ଆଉ ଜେଠୁ ଛିଡ଼ା ହୋଇଛନ୍ତି । ଦୋକାନର ଅନ୍ୟ କଡ଼େ, ସଂଜୟ ଦା', ଯମୁନା ଭାଉଜ, ଉମା, ଆପୁ ଏବଂ ଅଶୋକ ପ୍ରସୂନ ବାବୁ । ସେ ବୁଝି ପାରୁନି, ଏତେ ଲୋକଙ୍କ ଭିତରେ ମା', ବାପା ଆଉ ଶଙ୍କର କାହିଁକି ଦେଖାଯାଉ ନାହାନ୍ତି ।

ମେଳାରେ ହଠାତ୍ ବେବି ଗୋଟାଏ ବହି ଦୋକାନରେ ନରେନକୁ ଦେଖିଲା । ନରେନ ସାଙ୍ଗରେ ସେଇ ଝିଅଟି କିଏ ? ବିଜୟା ? ନା ବେବି ? ବିଜୟା ଭଳି ତ ଜଣାପଡୁନି । ତାହେଲେ

ସେ କ'ଣ ବେବି ? ସାମନାରେ ମାଇକ୍ରୋସ୍କୋପ୍ । ତାକୁ ନେଇ ଉଭୟେ ଲଢୁଛନ୍ତି । ନରେନ୍ କହୁଥାଏ, ''ଏହା ତୁମ କାମ ନୁହେଁ । ଏତେ ମୋଟା ସ୍ଥୂଳ ବୁଦ୍ଧି ତ ଏ ଜନ୍ମରେ ମୁଁ କାହାରି ଦେଖିନାହିଁ ।'' ବେବି କହିଲା, ''ମୋର ବୁଦ୍ଧି ସ୍ଥୂଳ ? ନା ତୁମେ ବୁଝେଇ ପାରୁନ ?'' ନରେନ ସାମାନ୍ୟ ଲଜ୍ଜିତ ହୋଇ କହିଲା, ''ଆଉ କେମିତି ଭଲ ବୁଝେଇବି, କହ । ତୁମ ବୁଦ୍ଧି ସ୍ଥୂଳ ନୁହେଁ ଯଦି, ତୁମେ ବୁଝିବାଲାଗି ମନ ଦଉନ । ମୁଁ କହୁଛି ।'' ବେବି କହିଲା, ''ଏହା ତୁମର ଭୁଲ ।'' ନରେନ କହିଲା, ''ମୋର ଭୁଲ ? ହୋଇପାରେ । ହେଲେ 'ମାଇକ୍ରୋସ୍କୋପ' ତ ଭୁଲ କରିବନି । ତଥାପି ତୁମେ ଦେଖିପାରୁନ କେମିତି ?'' ବେବି କହିଲା, ''ଏଇଥିପାଇଁ ଯେ, ତୁମ ମାଇକ୍ରୋସ୍କୋପ୍ ଖରାପ ।'' ନରେନ ଅବାକ୍ ହେଇଗଲା, ବେବିକଥା ଶୁଣି । ''ଖରାପ ! ତୁମେ ବୋଧହୁଏ ଜାଣିନ ଯେ ଏତେ ଶକ୍ତିଶାଳୀ ମାଇକ୍ରୋସ୍କୋପ୍ ଏଠି ଅତି କମ୍ ଲୋକଙ୍କ ପାଖରେ ଅଛି । ଏଥିରେ ସବୁ ଜିନିଷ କେତେ ସଫା ଦିଶେ ।'' ନରେନର କଥା ନ ସରୁଣୁ ଦୁହେଁ ମାଇକ୍ରୋସ୍କୋପ୍‌ରେ ଦେଖିବାକୁ ମୁଣ୍ଡ ତଳକୁ କଲେ । ଫଳରେ ଜୋର୍‌ରେ ମୁଣ୍ଡ ବାଜିଲା । ବେବି 'ଓଃ' କହି ମୁଣ୍ଡ ଆଉଁଶିବାକୁ ଲାଗିଲା । ନରେନ୍ କିଛି କହିବା ପୂର୍ବରୁ ବେବି ହସି ହସି କହିଲା, ''ଜାଣିଛ, ମୁଣ୍ଡକୁ ମୁଣ୍ଡ ବାଜିଲେ କ'ଣ ହୁଏ ? ମୁଣ୍ଡରେ ଶିଙ୍ଗ ବାହାରି ଆସେ ।'' ନରେନ ହସି ଦେଲା, ''ଶିଙ୍ଗ ବାହାରିବ ତୁମର, କାରଣ ତୁମ ମୁଣ୍ଡ ହେଲା ଶିଙ୍ଗ ବାହାରିବା ଭଳି ଜନ୍ତୁର ।'' ବେବି କହିଲା, ''କ'ଣ ସତରେ ମୋ ମୁଣ୍ଡ ଶିଙ୍ଗ ବାହାରିବା ଭଳି ହେଇଛି ? ହେଲେ ଆଜି ଯାଏଁ ବାହାରି ନାହିଁ ଯେ ।'' ମୁଣ୍ଡରେ କାଳେ ଶିଙ୍ଗ ବାହାରିଥିବ ଜାଣିବାପାଇଁ ବେବି ହାତରେ ମୁଣ୍ଡକୁ ଆଉଁଶିଲା । ଫଳରେ ବହିଟି ତା' ହାତରୁ ତଳକୁ ପଡିଗଲା । ବହି ତଳେ ପଡ଼ିବାରୁ ବେବିର ନିଦ ଭାଙ୍ଗିଗଲା । ସମସ୍ତେ ନିଜ ନିଜ ସାମାନ ସାଉଁଟିବାର ଦେଖି ମୋର ଝିଅ କହିଲା, ''ମା', ଦିଲ୍ଲୀ ଆସିଗଲା । ଉଠ । ସାମାନ ସାଉଁଟ ।''

-=O=-

**ବେବି ହାଲ୍‌ଦାର** କେବଳ ବଙ୍ଗଳା ବା ହିନ୍ଦୀ ନୁହେଁ, ଭାରତର ସାହିତ୍ୟ ଜଗତରେ ଏକ ସୁପରିଚିତ ନାମ । ପ୍ରଥମ ଉପନ୍ୟାସ 'ଆଲୋ ଆନ୍ଧାରି' ତାଙ୍କୁ ଲେଖିକା ଭାବରେ ଦେଇଥିଲା ଅନେକ ଆଦୃତି । ଜଣେ ସାଧାରଣ ମହିଳା ସେ; ଶିକ୍ଷିତା ନୁହନ୍ତି; ତିନିଟି ପିଲାଙ୍କର ମା'; ଆର୍ଥିକ ଦୃଷ୍ଟିରୁ ନିମ୍ନବର୍ଗର; ପରଘରେ ବାସନ ମାଜି ଗୁଜୁରାଣ ମେଣ୍ଟାଉଥିବା ସ୍ତରର ମଣିଷ । ଏଭଳି ଜଣେ ସାଧାରଣ ମହିଳା ଯେତେବେଳେ ନିଜର ଜୀବନ କାହାଣୀ ଲେଖନ୍ତି, ତାହା ଅନ୍ୟମାନଙ୍କଠାରୁ ନିଶ୍ଚିତ ଭାବରେ ଭିନ୍ନ ହୋଇଯାଏ । ବେବି ହାଲ୍‌ଦାରଙ୍କ ଆତ୍ମକଥା କ୍ଷେତ୍ରରେ ତାହା ହିଁ ହୋଇଛି । ତାଙ୍କ ଲେଖାକୁ ଖୁବ୍ ଆଦର ମିଳିଛି ।

'ଈଷତ୍ ରୂପାନ୍ତର' ବେବି ହାଲ୍‌ଦାରଙ୍କର ଦ୍ୱିତୀୟ ଉପନ୍ୟାସ । ଜଣେ ଲେଖିକା ହେବା ପରେ, ଜନାଦୃତି ପାଇବା ପରେ, ତାଙ୍କର ସାଧାରଣ ସ୍ଥିତିରେ ଯେଉଁ 'ଈଷତ୍ ରୂପାନ୍ତର' ଘଟିଛି, ତାହାର ଅନ୍ତରଙ୍ଗ ବର୍ଣ୍ଣନା ଅଛି ଏହି ଉପନ୍ୟାସରେ । ଜଣେ ସାଧାରଣ ମଣିଷ ଭିତରେ ଯେଉଁ ଅସାଧାରଣ ସଂଭାବନା ସନ୍ନିହିତ, ଏହା ତା'ର ଏକ ସଫଳ କଥାଯାତ୍ରା ।

**ଅଞ୍ଜଳି ଆଚାର୍ଯ୍ୟ** ଜଣେ ଗୃହିଣୀ । ବେବି ହାଲ୍‌ଦାରଙ୍କ ଲେଖାକୁ ଭଲପାଇ ଏହି ଅନୁବାଦ କରିଛନ୍ତି । ସାଧାରଣ ମହିଳା ବେବିଙ୍କ ଅସାଧାରଣ ଜୀବନ କାହାଣୀକୁ ଓଡ଼ିଆ ପାଠକଙ୍କ ନିକଟରେ ପରଷିଦେବାକୁ ଚାହିଁଛନ୍ତି ।

**ପ୍ରୀତୀଶ ଆଚାର୍ଯ୍ୟ** ଜଣେ ସ୍ତମ୍ଭକାର ଓ ଗାଳ୍ପିକ ରୂପେ ଓଡ଼ିଆ ସାହିତ୍ୟରେ ସୁପରିଚିତ । ବୃତ୍ତି ଇତିହାସ ଅଧ୍ୟାପନା ଓ ଗବେଷଣା । ସଂପ୍ରତି ଭୁବନେଶ୍ୱରସ୍ଥିତ ଆଞ୍ଚଳିକ ଶିକ୍ଷା ପ୍ରତିଷ୍ଠାନରେ ପ୍ରଫେସର ପଦରେ ଅବସ୍ଥାପିତ ।



ଆମ ଓଡ଼ିଶା
ĀMA ODISHĀ


ISBN 81-89436-74-0
9788189436742